ନୈବେଦ୍ୟ
ଲେଖିକା :
ସୁସ୍ମିତା ବାଗ୍‌ଚୀ
ପ୍ରକାଶକ :
ସୁଚରିତା ପବ୍ଲିକେଶନ୍ସ
୪୩୧, ଶହୀଦ ନଗର
ଭୁବନେଶ୍ୱର ୭୫୧୦୦୭
ପ୍ରଚ୍ଛଦ :
ଅସୀମ ବସୁ
ମୁଦ୍ରଣ :
ଜଗନ୍ନାଥ ପ୍ରସେସ୍
କଟକ-୨
ପ୍ରଥମ ପ୍ରକାଶ :
ଡ଼ିସେମ୍ବର ୧୯୯୬
ମୂଲ୍ୟ :
ପଞ୍ଚସ୍ତରି ଟଙ୍କା ମାତ୍ର

**NAIBEDYA**
Written by:
**Susmita Bagchi**
Published by:
**Sucharita Publications**
First Edition: 1996
Printers:
**Jagannath Process**
Cuttack-2
Price:
**Rupees Seventy five only**

# ସୂଚୀ

# ବିଚାର

ତମେ ଗୀତାରେ ହାତ ଦେଇ ସତ୍ୟ କରିବାକୁ କହୁଛ, ବାବୁ ? କି ଦରକାର ? ଏତେ ସବୁ ପରେ ଆଉ ମିଛ ! କ'ଣ ପାଇଁ, କାହା ପାଇଁ ମିଛ କହିବି ମୁଁ ?

ଓ, ଅଦାଲତର ନିୟମ ଏଇଟା ? ସତ୍ୟ କରିବାକୁ ପଡ଼ିବ ? ହଉ ତେବେ... ଠାକୁରଙ୍କୁ ସାକ୍ଷୀ ରଖି କହୁଛି, ଯାହା କହିବି ସବୁ ସତ କହିବି ।

ଏବେ କୁହ, କୋଉଠୁ ଆରମ୍ଭ କରିବି ? କୋଉ କଥା କହିବି ? ମୂଳରୁ ? ମୂଳକଥା ଛାଡ଼, ବାବୁ । କ'ଣ ମିଳିବ ମୋ ପିଲାଦିନରୁ ? ମୋ ବା'ଘର ପର କଥା କହେ । ସେଇଟା ବି ତ ଗୋଟିଏ ମୂଳ । ଗୋଟିଏ ନୂଆ ଜୀବନର ଆରମ୍ଭ ମୋ ପାଇଁ ।

ବା'ଘରକୁ ପଚିଶ ବର୍ଷ ହୋଇଗଲା । ମୁଁ ଯେତେବେଳେ ଏମାନଙ୍କ ଘରକୁ ବୋହୂ ହୋଇ ଆସିଲି, ସେତେବେଳେ ମୋର ବୟସ ପନ୍ଦର । ମୋ ବର ବୟସ କୋଡ଼ିଏ । ଏଇ ଏବେ ଯେମିତି ବାଉଁଶମାର୍କା ଶେତାଲିଆ ଚେହେରା ଦେଖୁଛନ୍ତି ତା'ର, ସେମିତିଆ ନୁହଁ । କଳା ମିଚି ମିଚି ହୋଇ ହଠାପିଟା ମଣିଷଟାଏ । କୁସ୍ତି କସରତ କରି ଦେହଟାକୁ ଏମିତି ସୁନ୍ଦର କରି ରଖିଥିଲା ଯେ ଦେଖିବା ଲୋକ ଦେଖୁଥିବ ।

ଶାଶୂ ଶ୍ୱଶୁରଙ୍କର ଏକୋଇର ବଳା ବିଶିକେଶନ । ଚାରି ଝିଅରେ ଗୋଟିଏ

କୋଡପୋଛା ପୁଅ ବୋଲି କଥା ନାହିଁ। ଯାହା କହେ, ଯାହା ମାଗେ, ସେଥିରେ ସର୍ବେ ହଁ ଭରନ୍ତି। କହିବା କଥା ନୁହଁ, କିନ୍ତୁ କହୁଛି। ଗେହ୍ଲେଇ, ବେଶୀ ଆଦର କରି ତା' ମୁହଁ ବଢେଇ ଦେଇଥିଲା ମୋ ଶାଶୁ। ସେଥିପାଇଁ ମରଦଟାର ଟିକିଏ ଅବାଗିଆ ଚାଲିଚଳନ, କଥାଗୁଡାକ ବି କହେ ଟାଇଁ ଟାଇଁ କରି। ହେଲେ, ଏମିତିରେ ମଣିଷଟା ଭଲ। ଅନ୍ୟ ପାଞ୍ଚଜଣଙ୍କ ଭଳି କଥାକଥାକେ ହାତ ଉଠିଆସେ ନାହିଁ। କେବେ କେମିତି ସୁଆଗ କରି ଦିଇଟା ଜିନିଷ ଧରି ଆସେ। ମେଳା ଯାତରା ବୁଲେଇ ନିଏ।

ଶ୍ୱଶୁରଙ୍କୁ ତ ମୁଁ ଦେଖି ନାହିଁ। କୁଆଡେ ମୋ ବରର ବାରବର୍ଷ ଦିନଠୁ ଆଖି ବୁଜିଥିଲେ ସେ। ଶାଶୁ ହିଁ ଯାଇ ପ୍ରଥମେ ମତେ ଦେଖି ବୋହୂ କରିବ ବୋଲି କଥା ଦେଇ ଆସିଥିଲା। ମୁଦି ପିନ୍ଧେଇ ଦେଇଥିଲା। ପୁଅ କୁଆଡେ କହିଦେଇଥିଲେ ଯେ ମା' କଥାରେ ସବୁ।

ବାହା ରୋଷଣୀ ହେଇ ଏମାନଙ୍କ ଘରେ ପାଦ ଦେଲି ମୁଁ। ଶାଶୁ ମାଇପିଟା ଏମିତିରେ ଭାରି ଭଲ। କିନ୍ତୁ ମୁଁ ନୂଆବୋହୂ ହୋଇ ଆସିବା ପରେ କିଛି ଦିନ ବେଶ୍ ଶାଶୁପଣିଆ ଦେଖାଇଥିଲା। ମୋ ବାପ କୁଆଡେ ଦବାନବା କରିବାରେ ଊଣା କରିଦେଲା, ବରଯାତ୍ରୀ ଚର୍ଚ୍ଚାରେ କମି ରଖିଦେଲା- ଏଇମିତିଆ କେତେ ହାଡଜଳା କଥା ଶୁଣେଇ କହିଥିଲା ମତେ।

ହେଲେ ମାସ କେଇଟା ଭିତରେ ସବୁ ଠିକ୍ ହୋଇଗଲା। ଶାଶୁ ବୁଝିଗଲା ଯେ ତା' କଥାରେ ମୁହଁ ଖୋଲିବା ଲୋକ ମୁଁ ନୁହଁ କି ତା' କଥାକୁ ଦି'କଥା କରି ବର କାନରେ ଫୋଡିବା ମୋ ଚିତ୍ତଚରିତ୍ର ନୁହଁ। ଧୀରେ ଧୀରେ ମୋ ସାଙ୍ଗରେ ଭଲ କଥାବାର୍ତ୍ତା ଆରମ୍ଭ କରିଦେଲା ସେ। ଆଉ କଥାକଥାକେ ମତେ ଉଲୁଗୁଣା ଶୁଣିବାକୁ ହେଲା ନାହିଁ। ଡାଲିଟା ଲୁଣିଆ ହୋଇଗଲେ ବା ଠାକୁର ଘର ବାସନ ମାଜିବାରେ ଡେରି ହୋଇଗଲେ ସେ ଆଉ ପୃଥ୍ୱୀଟାକୁ ଓଲଟେଇ ଥୋଇ ଦେଲା ନାହିଁ। ମତେ ଦେଖିଲେ କୁଆଡେ ତା'ର ସୀତା ନାନୀ କଥା ମନେ ପଡିଯାଏ। ସୀତା ନାନୀ ମ, ତା'ର ସବା ସାନ ଝିଅ। ମୋ ସାନ ନଣନ୍ଦ।

ମୁଁ ତ ଶୁଖିଲା ମୁଖିଲା ହୋଇ ଡାଙ୍ଗଟାଏ। ସୀତାନାନୀର କେତେ ସୁନ୍ଦର ଡଉଲ ଡାଉଲ ଚେହେରା! କେମିତି ମତେ ଦେଖିଲେ ତା' କଥା ମନେ ପଡେ

କେଜାଣି ?

କହିଥିଲି ତ ଶାଶୁର ଚାରି ଝିଅ। ମୋଠୁଁ କେତେ କେତେ ବଡ଼। କେବେଠୁଁ ବାହାସାହା ହୋଇ ନାତିନାତୁଣୀ ମୁହଁ ଦେଖିବା ଅବସ୍ଥାରେ ପହଞ୍ଚିଲେଣି। ସଭିଏଁ ଥାଆନ୍ତି ଦୂର ଦୂରାନ୍ତରେ। ମୋଟାମୋଟି ଚଳିଯିବା ଭଳି ସମସ୍ତଙ୍କର ଅବସ୍ଥା। ନଣନ୍ଦେଇମାନଙ୍କର ଦୂର ସହରମାନଙ୍କରେ ଛୋଟ ଛୋଟ ଚାକିରି। ସମସ୍ତେ ଏମିତିରେ ଭଲ, ହେଲେ ଗାଁରେ ଜମିଜମା କାହାର ନାହିଁ। ଚାକିରି ପଇସାରେ ଓପାସ ସିନା ରହିବାକୁ ହୁଏ ନାହିଁ, କିନ୍ତୁ ଅୟସ କରିବା ଅବସ୍ଥା ବି ନୁହଁ। ମେଞ୍ଚେ ମେଞ୍ଚେ ପିଲା ମଣିଷ କରୁ କରୁ ଅଣ୍ଟା ବାଙ୍କି ଯାଇଥିଲା ସମସ୍ତଙ୍କର।

ଶାଶୁର ସେଥିପାଇଁ ବଡ଼ ଦୁଃଖ। ସବୁବେଳେ ଦୋଷ ଦିଏ କେବେଠୁଁ ସେ ପୁରକୁ ଯାଇ ସାରିଥିବା ଶ୍ୱଶୁରଙ୍କୁ। ସେ କୁଆଡେ ଘରଦ୍ୱାର ନ ଦେଖି ଖାଲି ଭଲ ପିଲା ଓ ସରକାରୀ ଚାକିରି ଦେଖି ଝିଅଗୁଡ଼ାଙ୍କୁ ଟେକି ଦେଇଥିଲେ। ଆଜିକାଲି ଛୋଟ ଚାକିରିର କେଇ ଗଣ୍ଡା ପଇସାରେ ଚଳେହୁଏ ?

ନଣନ୍ଦମାନେ କୌଣସିମତେ ଚଳିଯାଆନ୍ତି। ହେଲେ, କୁଆଡେ ବେଶୀ ଯିବା ଆସିବା ଭାଗ୍ୟରେ ଜୁଟେ ନାହିଁ ସେମାନଙ୍କର। ଏମିତିକି ବାପଘର ମଧ୍ୟ ନୁହଁ। ମୁଁ ବା'ଘର ବେଳେ ଯାହା ନଣନ୍ଦମାନଙ୍କୁ ଭଲରେ ଦେଖିଥିଲି। ତା'ପରେ ହାତଗଣନ୍ତା କେତେଥର ସେମାନେ ଯାହା ବାପଘର ଗାଆଁକୁ ଆସିଥିବେ, ତା' ବି ଦିନେ ଅଧେ ପାଇଁ। ନିଜ ଘର ସଂସାର ଫୋପାଡ଼ି ଦେଇ କ'ଣ ବାପଘରେ ବସି ପାରିବେ ? ତା'ଛଡ଼ା ଆସିବାଟା ତ ଗୋଟାଏ ବଡ଼ ଖର୍ଚ୍ଚ। କେତେ ଲୁଗାପଟା, ଅଳତା ଅତର ସାଙ୍ଗରେ ଆଣିବାକୁ ହେବ। ସହରରୁ ଆସୁଛନ୍ତି ଯେ! କେହି ମାଗିବେନି ସିନା, ହେଲେ ଲୋକସରମ ତ ଅଛି!

ଶାଶୁ ସବୁଥର ସେମାନଙ୍କ ହାତରେ ଲୁଚେଇ ଲୁଚେଇ କିଛି ଗୁଞ୍ଜେ; କିନ୍ତୁ ସେମିତି କେଉଁ ନିଜର ପଇସା ଗଡ଼ା ମାରୁଛି ଯେ ଝିଅଘର ଭର୍ତ୍ତି କରିଦେବ ?

ଶାଶୁର ଯେ କିଛି ନ ଥିଲା, ତା' ନୁହଁ। ଘର ଜମେଇ ରଖିବା ଭଳି ଲୁଗାପଟା, ଗହଣାଗାଣ୍ଠି, ବାସନକୁସନ ସିନା ନଥିଲା, କିନ୍ତୁ ପାଖରେ ଥିଲା ସୁନାଥାଳି ଜମି। କେଉଁ ପୁରୁଷ ଅମଳର ଜମି। ଶ୍ୱଶୁରଙ୍କ ସମୟରୁ ହିଁ ଭାଗରେ ଦିଆ ହୋଇଥିଲା। ଯାହା ଆମଦାନି ହୁଏ, ସେଥିରୁ ଭାଗେ ଭାଗଚାଷୀର, ଦୁଇଭାଗ ଆମର। ସେତିକିରେ କୁଣିଆ ମଇତ୍ର, ପୂଜା ପରବ ସବୁ କରି

ଭଲରେ ଆମର ବର୍ଷଟା କଟିଯାଏ ।

ଜମିର ସବୁ ତଦାରଖ ଶାଶୁ ନିଜେ କରେ । କେବେ କେମିତି ପୁଏ ତାଙ୍କର ମା'ଠୁ ଠେଲା ଖାଇ, ମୋ ମୁହଁମୋଡାରେ ଅତିଷ୍ଠ ହୋଇ ଜମି ପାଖରେ ଯାଇ ଠିଆ ହୁଅନ୍ତି । କିନ୍ତୁ ସେ କେଉଁ ଅକାଳ, ସକାଳରେ ଦିନେ । ଆଖଡା କରି, ତାସ ପିଟି ତା'ର ଦିନଟା ଇ କଟିଯାଏ । କାହିଁକି ବା ଚିନ୍ତା କରନ୍ତା ? ଘର ଖବର ବୁଝିବାକୁ ମୁଁ ଅଛି । ଆଉ ଜମି ଖବର ବୁଝିବାକୁ ମା' ।

ସବୁ ଚାଲିଥିଲା ଠିକ୍ ଭାବରେ । ହେଲେ, ସବୁ ଭିତରେ ମୋ ମନରେ ବଡ ଅଶାନ୍ତି ଥିଲା । ବା'ଘରରର ଚାରିବର୍ଷ ହୋଇ ସାରିଥିଲା ସେତେବେଳକୁ, କିନ୍ତୁ କୋଳ ଖାଲି । କେତେ ବଇଦ ଡାକ୍ତର, କେତେ ପୂଜା ମାନସିକ । ଶେଷରେ ଯାଇ କୋଳକୁ ଆସିଲା ଆମ ସୁମୀ । ସେ ବି କ'ଣ କମି ଝାମେଲା ? ସହର ଡାକ୍ତରଖାନାରେ ଯାଇ ମାସେ ପଡି ରହିବାକୁ ହେଲା । ଡାକ୍ତରାଣୀ ଦିଦି ମୋତେ ଅଚେତ କରାଇ ପେଟ କାଟି ପିଲା ବାହାର କଲେ । ଦଶଦିନର ଝିଅଟାକୁ କୋଳେଇ ଡାକ୍ତରଖାନାରୁ ଫେରିବାବେଳେ ଡାକ୍ତରାଣୀ ଦିଦି କହିଥିଲେ ଯେ ଆଉ ମୋର ଛୁଆ ହେବ ନାହିଁ । ମୋ ପେଟ ଭିତରଟା କୁଆଡେ ନଷ୍ଟମଷ୍ଟ ହୋଇଯାଇଛି ।

ଗାଆଁରେ ଆସି ପହଞ୍ଚିବା ପରେ ମୁଁ ଭାବିଥିଲି ଯେ ଶାଶୁ, ସ୍ୱାମୀଠୁଁ ଏବେ ଖୁଣ୍ଟା ଖାଇବାକୁ ହେବ । ପୁଅଟାଏ ଦେଇ ପାରିଲି ନାହିଁ ବୋଲି କେତେ କଥା ଶୁଣିବାକୁ ପଡିବ । ହେଲେ, କେମିତି ଯେ କିମିଆ କରିଦେଲା ଏଇ ଛୋଟିଆ ସୁମୀ, ମା' ପୁଅ ଦିନେ ହେଲେ ମତେ ତେଢାମେଢା କରି କଥା କହି ନାହାନ୍ତି । ଗାଆଁରେ ପାଖପଡିଶା ଯେତେବେଳେ ଭଲେଇ ହୋଇ ଶାଶୁ ସାମ୍ନାରେ ବଂଶରକ୍ଷା କରିବା କଥା ଉଠାଇ ମୋ ଆଡକୁ ଆଙ୍ଗୁଠି ଦେଖାଇଥିଲେ, ପୁଅକୁ ଆଉ ଥରେ ବାହା କରାଇ ଘରେ ନାତି ଖେଳେଇବା କଥା ଉଠାଇଥିଲେ, ସେତେବେଳେ ଶାଶୁ ନିଜେ ସେମାନଙ୍କୁ ଚୁପ୍ କରେଇ ଦେଇଥିଲା । କହିଥିଲା, ''ମଲା ମ'ର, ଆଉଥରେ ଯେ ଏମିତିଆ ହେବ ନାହିଁ, ତମେ କେମିତି ଜାଣିଲ ? ସବୁ ଭାଗ୍ୟର କଥା । ଆଉ ଆର ବୋହୂ ଆସି ଯଦି ମତେ ବୁଢ଼ୀଦିନେ ଠେଲା ଦିଏ, ହନ୍ତସନ୍ତ କରେ, ତେବେ ତ ମହରଗରୁ ଯାଇ କାନ୍ତାରରେ ପଡିବା କଥା ହେବ । ଛାଡ, ଛାଡ ସେସବୁ । ସୁମୀ ମୋର ନାତି ନାତୁଣୀ

ସବୁ। ସେଇ ଆମ ବଂଶ ରକ୍ଷା କରିବ।''

ଚାରି ଝିଅଙ୍କ ପାଇଁ ଆଉଟି ପାଉଟି ହେଉଥିବା ଶାଶୁମନଟା ସବୁ ସ୍ନେହ, ଆଦର ଢାଳି ଦେଇଥିଲା ସୁମୀ ଉପରେ। ଓହୋ, ଝିଅଟାକୁ ନେଇ ସେତେବେଳେ ଘରେ କି ନାଟ ! ମା' ଛାଡିବନି କି ପୁଅ ଛାଡିବନି। ଦୁହିଁଙ୍କ ଟଣା ଓଟରାରେ ଅତିଷ୍ଠ ହୋଇ ସୁମୀ ଆସି ମୋ କାନି ତଳେ ଲୁଚେ। ତାକୁ ନେଇ କମ୍ ଝଗଡା ଲାଗୁଥିଲା ମା' ପୁଅଙ୍କ ଭିତରେ। ଶାଶୁର ଇଚ୍ଛା ନାତୁଣୀ ସବୁବେଳେ ତା' ପାଖେ ପାଖେ ରହିବ - ସେ ପୋଖରୀକୁ ଗାଧୋଇ ଗଲେ, ସାଙ୍ଗରେ ଯିବ। ଜମି ତଦାରଖ କଲା ବେଳେ ସାଙ୍ଗରେ ଥିବ। ଏଣେ ପୁଅଙ୍କ ଚିନ୍ତା, ଖରାରେ କାଳେ ଗେହ୍ଲାଝିଅର ରଙ୍ଗ ମଇଳା ହୋଇଯିବ। ବାର ଲୋକଙ୍କ ନଜର ଲାଗିଯିବ ତା' ଦେହରେ।

ବେଶୀ ଦିନ ଆଉ ଟଣାଓଟରା ଚାଲିଲା ନାହିଁ। ଦିନେ ହିଡ କଡେ କଡେ ଆସିବା ବେଳେ ପଥରଟାଏ ଝୁଣ୍ଟି ଶାଶୁ ଓଲଟି ପଡିଲା। ତା' ବାଁ ଆଣ୍ଠୁ ତଳେ ଛେଚି ହୋଇ ଚୁନା ହୋଇଗଲା। ବଡ ଡାକ୍ତରଖାନାକୁ ଯାଇ ଅପରେସନ କରାଇବାକୁ ହେଲା। ତା'ପରେ ଜାଣ କିଛିଟା ବାଗକୁ ଆସିଲା ସେ। ଘୁସୁରି ଘୁସୁରି ବୁଲାଚଲା କରିପାରିଲା। ନିଜ କାମ କିଛି ନିଜେ କରି ପାରିଲା। କିନ୍ତୁ ଆଗ ଭଳି ଦଶଥର ଗାଁର ଏମୁଣ୍ଡରୁ ସେମୁଣ୍ଡ ଘୁରିଆସିବାର ଶକ୍ତି, ଖରାରେ ଠିଆ ହୋଇ ଜମିଜମା କଥା ବୁଝିବାର ସାମର୍ଥ୍ୟ ତା'ର ଆଉ ରହିଲା ନାହିଁ। ଘର ଓ ଘର ଚାରିପଟ ବଗିଚା ଭିତରେ ସେ ବନ୍ଦୀ ହୋଇଗଲା। ଏଥର ତା' ହାତବାରିସି ହେଲା ସୁମୀ। ଏତେଦିନକେ ମା' ପୁଅଙ୍କର ସୁମୀକୁ ନେଇ ଟଣାଓଟରା କରିବା କମିଲା ଟିକିଏ।

ଶାଶୁ ଘରେ ପଡିରହିଲା। ଏଥର ଜମି କଥା ବୁଝିବ କିଏ ? ମୁଁଟା ବା କି ପାରିବାର ? ମତେ ଠକେଇ ମୋ ସାମ୍ନାରୁ ଜିନିଷ ନେଇଗଲେ ମୁଁ ଜାଣିବି ନାହିଁ। ଜମିଜମାର ପେଞ୍ଚ ବୁଝିବି କେମିତି ? ଶେଷରେ ବାଧରେ ପଡି ସୁମୀବାପା ଜମି କଥା ବୁଝିବା ଆରମ୍ଭ କଲା- ସରିଗଲା ତା' ଅଯସର ଦିନ। ଏତେଗୁଡାଏ ଜମି, ଦେଖା ଚାହାଁ ନ କଲେ କିଛି ରହିବ ? ସବୁ ଖାଇଖୁଇ ଯିବେ ଶତ୍ରୁଗୁଡାକ। ଆମକୁ ଶେଷରେ ଭୋକ ଉପାସରେ ରହିବାକୁ ହେବ। ସୁମୀବାପାର ଆଖଡା, ତାସ ସବୁ ବନ୍ଦ ହୋଇଗଲା। ବେକରେ ପଡିଲେ ବଢେଇ ନ ଶିଖି ଆଉ

ଚାରା ଅଛି ?

ମଣିଷଟା ଏତେ ବେଶୀ କାମିକା ହୋଇଗଲା ଯେ ଗାଆଁ ଲୋକେ ଜଳକା ହୋଇ ରହିଗଲେ । ମିଛ କହିବିନି ବାବୁ, ଗର୍ବରେ ମୋ ଛାତି ଫୁଲି ଉଠିଥିଲା । ବରର ବାହାବା ଶୁଣିଲେ କିଏ ଖୁସି ନ ହେବ ? ଶାଶୁ ପରିଶ୍ରମରେ ଭାତ ଖାଇବା ଆଉ ବର ଝାଳବୁହା ରୋଜଗାରରେ ପେଟ ପୂରାଇବା ଭିତରେ ଫରକ ନାହିଁ ?

କେତେବର୍ଷ କଟିଗଲା ଏମିତି । ସୁମୀ ବଡ ହେଲା । ଗାଆଁ ସ୍କୁଲରୁ ମେଟ୍ରିକ୍ ପାଶ୍ କରିଗଲା ଭଲରେ । ଶାଶୁ ତ ବାହା ଦବାକୁ ବସିଥିଲା ତାକୁ । ହେଲେ, ସୁମୀବାପା ମନା କଲା । ଆଜିକାଲି ଝିଅମାନେ କେତେ କ'ଣ କରୁଛନ୍ତି । ବେଶୀ ପାଠ ପଢି ଚାକିରି କରୁଛନ୍ତି । ଆମ ସୁମୀ ମଧ୍ୟ ସେଇମିତି କରିବ । ମୋର ଇଛା ନ ଥିଲା ଯେ; କିନ୍ତୁ ଚୋର ଦେଇପାରିଲି ନାହିଁ । ଦିନ କାଳ ବି ତ ଭଲ ନୁହଁ, ନିଜ ଗୋଡରେ ଠିଆ ହୋଇପାରିଲେ ଭଲ । କିଏ ଜାଣେ, କେମିତିକା ଶାଶୁଘର ତା' ଭାଗ୍ୟରେ ଜୁଟିବ !

ଶେଷରେ ମେସିନ୍‌ରେ ଲୁଗାବୁଣା ଶିଖିବା ସ୍କୁଲରେ ଭର୍ତ୍ତି ହେଲା ସୁମୀ । ପାଖ ସହରରେ ସ୍କୁଲ । ସ୍କୁଲ ସାଙ୍ଗରେ ହଷ୍ଟେଲ । କେତେ ଝିଅ ରହନ୍ତି ସେଠି । ସୁମୀ ସେମାନଙ୍କ ଭିତରେ ରହିଲା । ଶନିବାରରେ ଗାଆଁକୁ ଆସେ, ପୁଣି ସୋମବାର ଭୋର୍‌ରୁ ତା' ବାପା ଯାଇଁ ତାକୁ ଛାଡି ଦେଇ ଆସେ ବସ୍‌ଷ୍ଟାଣ୍ଡରେ ।

ସୁମୀ ସହରକୁ ଚାଲିଯିବା ପରେ ଖାଲି ହୋଇଗଲା ଆମ ଘରଟା । ସୁମୀବାପା ଅଧିକାଂଶ ସମୟ ଜମିରେ କଟାଇ ଦେବାକୁ ଲାଗିଲା । ମତେ ବି ଖାଇ ଗୋଡାଇଲା ଘରଟା । କୌଣସିମତେ ଦୁଇଟା ଫୁଟେଇ ଦେଇ ମୁଁ ଗାଆଁ ବୁଲି ବାହାରି ଯାଉଥିଲି । ହେଲେ ଅଖଙ୍କାରେ ପଡିଗଲା ଶାଶୁ । କୁଆଡେ ଯିବ ସେ ? ତାକୁ ଇ ସୁମୀର ଚାଲିଯିବାଟା ବେଶୀ ବାଧିଲା । ସବୁବେଳେ ନାତୁଣୀକୁ ପାଖରେ ବସାଇ ରଖିବା ବୁଢୀର ଅଭ୍ୟାସ ହୋଇଯାଇଥିଲା । କେତେ ବକର ବକର ହେଉଥିଲା ତା' ସାଙ୍ଗରେ- ଏବେ ସବୁ ବନ୍ଦ ହୋଇଗଲା ।

ଏମିତିରେ ଦିନେ ଶାଶୁର ଛାତି ବେମାରୀ ବାହାରି ପଡିଲା । କିଏ କିଏ କହିବାରୁ ଡାକ୍ତର ଡକା ହୋଇ ଆସିଲେ । ଡାକ୍ତର କହିଲେ ଯେ କରିବାର କିଛି ନାହିଁ । ବୁଢୀର ବୟସ ତ କିଛି କମ୍ ନୁହଁ । ଏମିତି ଏସବୁ ହେବ ।

କେବଳ ଔଷଧ ଖାଇ ଜଗି ରହିବା କଥା। ଯଦି କେତେବେଳେ ଜୋର ବେମାରୀ ବାହାରିପଡେ, ତେବେ ଔଷଧ ବି କାଟୁ କରିବ ନାହିଁ। ଚୁପ୍‌ଚାପ୍ ଝଡ଼ି ପଡ଼ିବ ସେ।

ଶାଶୁ କାନରେ ଯେମିତି ଏସବୁ କଥା ନ ପଡେ, ସେ ଚେଷ୍ଟା ଆମେ କରିଥିଲୁ। କିନ୍ତୁ ଗାଆଁ କଥା କ'ଣ ତୁମର ଅଜଣା, ବାବୁ। କିଏ କିଏ ସବୁ ଆସି ଅତି ନିଜର ଦେଖାଇ ହୋଇ ତା' ଆଗରେ କହି ପକେଇଲେ।

ମୁଁ ଭାବିଥିଲି, ବୁଢ଼ୀ ଏଥର କନ୍ଦାକଟା ଆରମ୍ଭ କରିଦେବ। କିନ୍ତୁ ନାଇଁ, ଶାଶୁ ସେମିତି କିଛି କଲା ନାହିଁ। କେବଳ ଚୁପ୍ ହୋଇଗଲା ସେ। ସବୁବେଳେ ଯେମିତି କ'ଣ ଭାବି ହେଉଥିଲା। ତା'ପରେ ଦିନେ ରାତିରେ ପୁଅ ସାଙ୍ଗରେ ଖାଇ ବସିବାବେଳେ ତା' ମନ ତଳେ ଥିବା କଥାଟିକୁ ସେ କହି ପକେଇଲା।

ଓହୋ, କହ ନାହିଁ ଆଉ ସେ ରାତି କଥା, ବାବୁ। ଝଡଟାଏ ଯେମିତି ବହିଗଲା। ଜନ୍ତାରୁଟିକୁ କ୍ଷୀରରେ ଚକଟି ଖାଉ ଖାଉ ଶାଶୁ କହିଲା, "ମୁଁ ଭାବୁଛି, ଓକିଲ ଡକେଇ ଗୋଟିଏ ବୁଝାମଣା କରିଦେଇ ଯିବି। କି ଭରସା ମୋ ଜୀବନର। କେତେବେଳେ ଶେଷ ହୋଇଯିବ। ଏବେଠୁଁ ଜମି ଲେଖା ପଢ଼ା କରିଦେଲେ ଭଲ।"

ସୁମୀବାପା ଟିକିଏ ଆଶ୍ଚର୍ଯ୍ୟ ହେଲା। କହିଲା, "ବୁଝାମଣା ପୁଣି କ'ଣ ଲୋ ? ସବୁ ତ ବୁଝୁଛି ମୁଁ। ଶୁଖିଲାରେ ଓକିଲକୁ ପଇସା ଦେଇ ପୁଣି ଲେଖାପଢ଼ା କାହିଁକି ?"

ଶାଶୁ ରହି ରହି କହିଥିଲା, "ନାଇଁରେ ବୁଢ଼ା, ଲେଖାପଢ଼ା କରି ଦେଇ ଯିବା ଭଲ। ପଛକୁ ଆଉ କେଁ ନଥିବ। ତୋ ବାପ ସବୁ ଜମି ମୋ ନାଆଁରେ କରିଦେଇ ଯାଇଥିଲା। ସେଇଥିପାଇଁ କହୁଛି। ମୁଁ ତ ମୋ ଜୀବନକାଳରେ କାହାକୁ କିଛି ଦେଇପାରିଲି ନାହିଁ। ଏବେ ଭାବୁଛି ଜମିକୁ ପାଞ୍ଚଭାଗ କରିଦେବି। ଚାରିଭାଗ ଚାରି ଝିଅଙ୍କର, ଗୋଟିଏ ଭାଗ ତୋର।"

ଘରେ ନିଆଁ ଲାଗିଗଲା କି ଆଉ ! ଭାତ ଥାଳି ଫୋପାଡି ଦେଇ ସୁମୀବାପାର ସେ କି ନାଚ !! ଏତେଦିନ ଦେଖାଶୁଣା କଲା ପରେ ଏବେ ଚାରି ଭାଗ ଜମି ଯିବ ଚାରି ଭଉଣୀଙ୍କ ପାଖକୁ !!! ପରଘରୀ ସେମାନେ। କେବେଠୁଁ ବାହାସାହା ହୋଇ ଗଲେଣି, କି ଅଧିକାରରେ ଜମି ତାଙ୍କର ହେବ ? ଆଉ କ'ଣ ହେବ

ତା' ସ୍ୱାମୀର ? ତା' ସୁନାନାକୀ ଝିଅକୁ ଏମିତି ଭସେଇ ଦେବ ମା' ?

ପୁଅ ନାଟ ଦେଖି ଡରିଗଲାନି ଶାଶୁ। ଯେତେ ଯାହା ହେଲେ ତ ପୁଅର ମା' ସେ। ନିଜ ଜିଦ ଧରି ଅଟକି ରହି କହିଲା, 'କାହିଁ, ଗୋଟିଏ ଭାଗ କୋଉ କମ୍ କି ? ତୋର ତ ସେଇ ଗୋଟିକ। ତା' ପାଇଁ ଆଉ କେତେ ଲୋଡା ? ତୋ ନାନୀମାନଙ୍କ କଥା ଟିକିଏ ଭାବ। ଚାରି, ପାଞ୍ଚ ଛୁଆ ଧରି କି ଜଞ୍ଜାଳରେ ସଢୁଛନ୍ତି ସେମାନେ।''

ସ୍ୱାମୀବାପା ଜୋରରେ ପାଟି କରିଉଠିଥିଲା, ''ଜଗତଯାକର ଜଞ୍ଜାଳ ବୁଝିବା ଠିକା ମୁଁ ନେଇଛି କି ? ଏସବୁ କଥା ହେଇ ପାରିବନି। ଯେଉଁ ଜମି ପାଇଁ ଏତେ ଦିନ ଝାଳ ବୁହାଉଥିଲି, ତାଆରିପାଇଁ ରକ୍ତ ବୁହାଇ ଦେବି।''

ସତ କହୁଛି ବାବୁ, ମୋର ବି ବଡ ରାଗ ହୋଇଥିଲା ସେଦିନ। ଏ ବୁଢୀ ବୟସରେ ଶାଶୁର ଏତେ ପେଖନା କାହିଁକି ? ଝିଅମାନଙ୍କର ତ ଅକାଳ ସକାଳରେ ଦର୍ଶନ ନାହିଁ, ସେମାନଙ୍କ ପାଇଁ ଏତେ ଦରଦ କିଆଁ ? ଆଉ ଯିଏ ତମ ଖବର ବୁଝୁଛି, ତମକୁ ମୁଣ୍ଡେଇ ରଖିଛି, ତା' ପାଇଁ ଏ କି ଅବିଚାର ! ଗୋଟାଏ ମଣିଷ ଝାଳବୁହାଇ ଖଟିଯାଉଛି ଅନବରତ। ତା' ସାମ୍ନାରୁ ତା' ଭାତଥାଳି ଛଡେଇ ନେବ ? ଏ କି ପ୍ରକାରର ନ୍ୟାୟ, କୁହ ବାବୁ। ହେଲେ, ମୋର ତ ପକ୍ଷ ନେଇ ଯୁକ୍ତି କରିବା ଜାତକରେ ନାହିଁ, କାହା ପଟିଆ ହୋଇ ପଦେ କିଛି କହି ନଥିଲି ମୁଁ।

ଚାଲିଲା ଅଶାନ୍ତି। ଦିନେ କଥା ବଢି ବଢି ଚରମ ସୀମାରେ ପହଞ୍ଚିଲା। ସ୍ୱାମୀବାପା ସେଦିନ ମଦ ପାଣି ଟିକିଏ ଚଢେଇ ଦେଇ ଆସିଥିଲା। ଘରେ ପହଞ୍ଚି ଯେଉଁ ପାଟିଗୋଳ ! କି କଦର୍ଯ୍ୟ ଭାଷାରେ ମା'କୁ ଗାଳିଦେଲା ସେ ! ଏ ଜମି କୁଆଡେ ତା' ବାପା, ଜେଜେବାପା ଅମଳର ? ମା' କ'ଣ ତା' ବାପଘରୁ କାନିରେ ବାନ୍ଧି ଆଣିଥିଲା କି ? ଏବେ ଏମିତି ସବୁ ଦାନ ଖଇରାତ କରି ଦେବାକୁ ବସିଛି କେମିତି ? ଶାଶୁ ବି କ'ଣ କମ୍ କି ? ଅବାଗିଆ ପୁଅର ଅବାଗିଆ ମା'। ସେ କାଗଜପତ୍ର ଆଣି ଦେଖାଇ ଦେଲା। ଶ୍ୱଶୁର ମଲା ଆଗରୁ ସବୁ ତା' ନାଆଁରେ କରେଇ ଦେଇ ଯାଇଛନ୍ତି। କଥାଟା ମିଛ ନୁହଁ। କିନ୍ତୁ ସ୍ୱାମୀବାପା ଏତେ ସହଜରେ ନିଜର ହକ୍ ଛାଡିବାକୁ ରାଜି ନଥିଲା। ପଞ୍ଚାୟତ, ଅଦାଲତର ଭୟ ଦେଖାଇଲା ସେ।

ଶେଷରେ ରାଗରେ ପାଚିଯାଇ ଶାଶୁ ପଡ଼ିଶା ଘର କକେଇଙ୍କୁ ଦେଇ ଓକିଲ ଡକାଇ ଆଣିଲା ପରଦିନ। ଗାଆଁର ମାମଲତକାର ଦୁଇଜଣ ଆସି ବାରଣ୍ଡାରେ ବସିଲେ। କଥା ହେଲା, ସବୁ ଝିଅଙ୍କୁ ଡକେଇ ପାଞ୍ଚ ପିଲାଙ୍କୁ ଏକାଠି ବସାଇ ଗୋଟିଏ ଫଇସଲା କରିବାକୁ ହେବ।

ବାସ୍, ସେଦିନ ରାତିରେ ଘରକୁ ଫେରିଲା ନାହିଁ ସୁମୀବାପା। ଜମି ପାଖର ଛୋଟ ଝୁମ୍ପୁଡ଼ିରେ ରାତି କଟେଇ ଦେଲା ସେ। ତା' ପରଦିନ ମୂଲିଆ ଲଗେଇ ଝୁମ୍ପୁଡ଼ିଟାକୁ ବଢ଼େଇ ରହିବା ପାଇଁ ଟିକିଏ ବାଗର କରିଦେଲା। ଗୋଟାଏ ରୋଷେଇ ଘର ଯୋଡି ଦେଲା ତା' ସାଙ୍ଗରେ। ମାଟି ଘରଟାଏ ଉଠାଇ ଦେବାକୁ ଆଉ କେତେ ସମୟ ଲାଗନ୍ତା? ତା'ପରେ ଆସି ଟାଣିଲା ମତେ। କହିଲା, ତା' ସାଙ୍ଗରେ ବାହାରି ଯିବାକୁ।

ମୁଁ ଆଗ ହଡବଡେଇଗଲି, ବାବୁ। ବାହା ହେବା ପରଠୁଁ ଏତେ ବର୍ଷ ଧରି ଯେଉଁ ଘରେ ରହିଆସିଲି, ଏମିତି ଗୋଟିଏ ନିଶାରେ ସେ ଘର ଛାଡି ଦେଇଥାଆନ୍ତି କେମିତି? କିନ୍ତୁ ଛାଡିଲି ଶେଷରେ। ଘର ଆଗ ନା ବର ଆଗ? ବର ପାଇଁ ତ ଘର। ଦି' ଚାରିଟା ଜିନିଷ ବନ୍ଧାବନ୍ଧି କରି ବାହାରିଗଲି ସୁମୀବାପା ସାଙ୍ଗରେ। ଶାଶୁର ସେ କେତେ ବାହୁନା। କିଏ ଶୁଣେ? ନିଜ ପୁଅକୁ ଯଦି ବେଖାତିର କଲ, ତେବେ ବୋହୂ, ନାତୁଣୀ ପାଇଁ ଏତେ ଦରଦ କାହିଁକି?

ଆମେ ଜମିପାଖ ଘରକୁ ଚାଲି ଆସିଲୁ। ପକ୍କା ଘରୁ ଯାଇ ମାଟି ଘରେ ରହିବାକୁ ହେଲା ମତେ। ମୋର ନିଜ ପାଇଁ ଚିନ୍ତା ନଥିଲା, ଭାବନା ଥିଲା ଝିଅକୁ ନେଇ। କେମିତି ରହିବ ଏ ଘରେ ସୁମୀ? ଜେଜେମା'ଙ୍କୁ ଛାଡି ସତେ କ'ଣ ରହିପାରିବ ସେ? ପର ଶନିବାର ଆସିଲା। ବସ୍‌ଷ୍ଟାଣ୍ଡକୁ ଯାଇ ନିଜେ ସୁମୀବାପା ଝିଅକୁ ଆମ ମାଟିଘରକୁ ନେଇ ଆସିଲା। ଜେଜେମା' ପାଖକୁ ଆଉ ଯିବାକୁ ଦେଲା ନାହିଁ।

ବୁଢ଼ୀକୁ ବଡ ବାଧିଗଲା ଏ କଥାଟା। ଯେଉଁ ନାତୁଣୀକୁ କୋଳେଇ କାଖେଇ ମଣିଷ କରିଥିଲା, ତାକୁ ଟିକିଏ ଆଖି ପୂରେଇ ଦେଖି ପାରିଲା ନାହିଁ ସେ। ଉହଳ ବିକଳ ହୋଇଗଲା ଶାଶୁ। କିନ୍ତୁ ସୁମୀବାପାର ତ ଜିଦ୍ ଲାଗିଥିଲା। ଘରେ କରଫ୍ୟୁ ଲଗାଇ ରଖିଦେଲା।

ସୁମୀ ଯେମିତି ସେପଟ ରାସ୍ତାରେ ପାଦ ବି ନରଖେ।

ବିଚାରୀ ସୁମୀ, ଏସବୁ କାରବାର ଦେଖି ହନ୍ତସନ୍ତ ହୋଇଗଲା। ଘରେ ଲୁଚେଇ ଲୁଚେଇ ବହୁ କନ୍ଦାକଟା କରିଥିଲା ସେ। ଝିଅର ଆଖିରେ ଲୁହ ଦେଖି ମତେ କେମିତି ଭଲ ଲାଗିଥାଆନ୍ତା? ବୁଢ଼ୀ ସାଙ୍ଗରେ ଆମର ଯାହା ବାଦାବାଦି ଥାଉ, ଝିଅଟା ବା କ'ଣ ଦୋଷ କଲା? ହେଲେ, କ'ଣ କେମିତି କରିଥାଆନ୍ତି? ଏଣେ ମନରେ ଯେ ବୁଢ଼ୀ ବିରୁଦ୍ଧରେ ରାଗ ନଥିଲା, ତା' ନୁହଁ। ଏତେ ଯଦି ନାତୁଣୀ ସୁହାଗ, ତେବେ ସବୁକିଛି କେମିତି ତା' ହାତଛଡ଼ା କରିଦେବାକୁ ବସିଛି?

କେତେଦିନ କଟିଗଲା ଏମିତି। ଦୁଇ ତିନିଟା ଶନିବାର ଚାଲିଯିବା ପରେ ଆଉ ମୋ ମନରେ ବେଶୀ ରାଗ ରହିଲା ନାହିଁ। ସୁମୀ ଆଖିର ଲୁହ ମତେ ସେତେବେଳକୁ ନରମ କରିଦେଇଥିଲା। ସେଦିନ କ'ଣ ଗୋଟାଏ କାମରେ ସୁମୀବାପା ପାଖ ଗାଆଁକୁ ଯାଇଥିଲା। କହି ଯାଇଥିଲା ଯେ ଫେରୁ ଫେରୁ ଡେରି ହେବ। ରଜ ପାଇଁ ସୁମୀ ଘରେ ଥିଲା। ଦି'ପହର ଖିଆପିଆ ସରିବା ପରେ ମତେ ଆସି ଧରିଲା ସେ। କହିଲା, ''ଚାଲ ମା', ଜେଜେମା'କୁ ଟିକିଏ ଦେଖି ଆସିବା। ବାପା ତ ନାହାନ୍ତି, ଯାଇ ସାଙ୍ଗେ ସାଙ୍ଗେ ଚାଲି ଆସିବା।''

ମୁଁ କାଠ ହୋଇଯାଇଥିଲି। ସୁମୀବାପାର କଥା ବିରୁଦ୍ଧରେ ଯିବା ପାଇଁ ମୋ ବିବେକ ବାଧା ଦେଇଥିଲା। କିନ୍ତୁ ପିଲାଟିକୁ ମନା କରିପାରିଲି ନାହିଁ। ଘରେ ତାଲା ଲଗାଇ ଝିଅକୁ ନେଇ ଚାଲିଗଲି ଶାଶୁ ପାଖକୁ।

ସେଇ ପ୍ରଥମ। ତା'ପରେ କେତେଥର ଏମିତି ସୁମୀବାପାଠୁଁ ଲୁଚେଇ ସୁମୀକୁ ନେଇ ମୁଁ ଶାଶୁ ପାଖକୁ ଯାଇଛି। କେତେବେଳେ ଘଣ୍ଟାଏ ପାଇଁ ତ କେତେବେଳେ କେଇଟା ମିନିଟ୍ ପାଇଁ। ଏମିତି ଲୁଚାଛପା କାରବାର କରିବାକୁ ଜମା ଭଲ ଲାଗୁ ନଥିଲା। କିନ୍ତୁ କେମିତି ମୋ ଝିଅଟା ମନରେ କଷ୍ଟ ଦେଇଥାଆନ୍ତି?

ତା'ଛଡ଼ା ମନରେ ବି ଗୋଟାଏ ବଡ଼ ଆଶା ଥିଲା। କିଏ ଜାଣେ, ସୁମୀକୁ ଏମିତି କଷ୍ଟ କରି ତା' ପାଖକୁ ଆସିବାର ଦେଖିଲେ ହୁଏତ ବୁଢ଼ୀମନ ବଦଳିଯିବ। ଆଉ ତା' ଅଖାଡୁଆ ଜିଦିକୁ ଅକଟେଇ ବସିବନି ସେ। ଆମେ ପୁଣି ଫେରି ଆସିବୁ ପୂରୁଷ ଅମଳର ପୁରୁଣା ଘରକୁ।

ନାଇଁ ଗୋ ବାବୁ, ସେମିତି କିଛି ହେଲା ନାହିଁ। ଏତେ ସବୁ ଭିତରେ ବି ଶାଶୁ ନିଜର ଜିଦି ଛାଡ଼ି ନ ଥିଲା। ସୁମୀ କଥାରୁ ଜାଣିଲି ଯେ ସେ

ସବୁ ଝିଅଙ୍କ ପାଖକୁ ଖବର ପଠେଇ ସାରିଛି। ଦଶହରାରେ ଯେମିତି ଗାଁକୁ ଆସନ୍ତି ସେମାନେ। ସମସ୍ତଙ୍କୁ ଏକାଠି ବସାଇ ଫଇସଲା ହେବ। ଜମିଜମା ଭାଗବଣ୍ଟରା ହୋଇଯିବ।

ଦିନେ ଜଣେ ଆସି ସେଇ ଏକା ଖବର ଦେଇ ଯାଇଥିଲା ସୁମୀବାପାକୁ। ଲଣ୍ଡାଏ ଛେପ ଥୁ କରି ପକେଇ ଦେଇ ଆଖି ଲାଲ ଲାଲ କରି ସୁମୀବାପା ମଦଭାଟିକୁ ବାହାରି ଯାଇଥିଲା।

ଏମିତିରେ ସୁମୀବାପା ବେଶୀ ପିଆପିଇ କରେ ନାହିଁ। କରିପାରେ ନାହିଁ। ମଦ ତ ତା' ଦେହରେ ଇ ଯାଏ ନାହିଁ। ଅଳ୍ପ ଟିକିଏ ପିଇଲେ ତା'ର ନିଶା ଚଢିଯାଏ। ତା'ପରେ ପାଟିତୁଣ୍ଡ, ଗାଳି ଗୁଲଜ ଆରମ୍ଭ କରିଦିଏ ସେ। ସେଥିପାଇଁ ସେ ମଦଭାଟିକୁ ଗଲେ ମୋର ବଡ ଚିନ୍ତା। ଯେତେ ସମୟ ଘରକୁ ନ ଫେରେ, ସେତେ ସମୟ ମୋ ଆଖିକୁ ନିଦ ଆସେ ନାହିଁ। ସେଦିନ ମଧ୍ୟ ତା' ଫେରିବା ବାଟକୁ ଚାହିଁ ଜଗି ବସିଥିଲି ମୁଁ। ଭାତ ମୁଠାକ କେତେବେଳଠୁଁ କାକର ହୋଇ ସାରିଥିଲା। ଆଉ କ'ଣ ଖାଇ ଥାଆନ୍ତା ?

ଫେରିବାକୁ ବଡ ଡେରି କରୁଥିଲା ମଣିଷଟା। କୁଆଡେ ଯାଇଥିଲା କେଜାଣି। ଶେଷରେ ଫେରୁ ଫେରୁ ରାତି ଦୁଇ ଘଡି। ତା' ଚାଲି ବେତାଳିଆ ନ ଥିଲା କି ପାଟି ତୁଣ୍ଡ କରି ସାଇ କମ୍ପେଇ ନଥିଲା। ହେଲେ, ସାଙ୍ଗରେ ଦିଇଟା ଲୋକଙ୍କୁ ଧରି ଆଣିଥିଲା ସେ। ଜମି ମୁଣ୍ଡରେ ବସି କେତେ ସମୟ କ'ଣ ସଲାସୁତୁରା ଚଳେଇଥିଲେ ସେମାନେ। କାହିଁକି କେଜାଣି, କୃଷ୍ଣପକ୍ଷ ରାତିରେ ସେ ହୁଣ୍ଡା ହୁଣ୍ଡା ଦିଇଟା କାଳିଆ ଲୋକଙ୍କୁ ଦେଖି ମତେ ଟିକିଏ ଡର ଲାଗିଥିଲା। ହେଲେ ମୁଁ ମନକୁ ବୁଝେଇଥିଲି। ମରଦ ଲୋକ, କେତେ ଆଡର କେତେ ଚିନ୍ତା। ମୁଁ କ'ଣ ସବୁ ବୁଝିବି ? ସପଟା ପକେଇ ମୁଁ ଗଡି ପଡିଥିଲି।

ଦଶହରା ପାଖେଇ ଆସିଲା। ଆଠ ଦଶଦିନ ଆଗରୁ ଛୁଟି ନେଇ ସୁମୀ ଘରକୁ ଚାଲି ଆସିଥିଲା। କିନ୍ତୁ ଜମା ଢେଙ୍କେମା'କୁ ଦେଖା କରିବାକୁ ଯାଇ ପାରୁ ନଥାଏ। ବାପଟା ତ ସବୁବେଳେ ଘର ବାହାର ହେଉଛି, କେମିତି ମୁଁ ସାହସ କରି ଝିଅକୁ ନେଇ ଶାଶୁ ପାଖକୁ ଯାଇଥାଆନ୍ତି ?

ତା'ପରେ ଦିନେ ରାତିରେ ସୁମୀବାପା ହଠାତ୍ କରି ଆସି କହିଲା ଯେ ସେ ଚାରିଟା ଦିନ ପାଇଁ ସହର ଯିବ। ବିହନ କିଣା, ସରକାରୀ ରଣ ଅଣା

- ଏମିତି କେତେ କାମ। କେବେ କେମିତି ସହରକୁ ଯାଏ ସୁମୀବାପା। କିନ୍ତୁ ସକାଳୁ ଯାଇ ସନ୍ଧ୍ୟାକୁ ଫେରି ଆସେ। କେତେ ଏମିତି ବାଟ ଯେ। ହେଲେ ଏଥର ଏମିତି ଚାରିଦିନ ପାଇଁ କାହିଁକି ଯିବା କଥା କହିଲା, ବୁଝିଲି ନାହିଁ। ବେଶୀ ତଳେଇ କରି ମୁଁ ଆଉ ଭାବି ନଥିଲି। ମନଟା ବି ଟିକିଏ ହାଲୁକା ଲାଗିଥିଲା। ଯାହେଉ, ଝିଅଟାକୁ ତା' ଜେଜେମା' ପାଖକୁ ନେଇ ଯାଇ ପାରିବି। ଝିଅର ବୟସ ତ ଆସି ହେଲାଣି, କେତେବେଳେ ବା' ଘର ହୋଇଯିବ। ଯାଉ, ମନଭରି ତା' ଜେଜେମା'କୁ ପାଇ ନଉ। ବୁଢ଼ୀର ବା କି ଭରସା! ପୁଣି ଦଶରା ପରେ କ'ଣ ଯେ ହେବ, କିଏ ଜାଣେ?

ସୁମୀବାପା ସହରକୁ ଚାଲିଗଲା। ସୁମୀ ଏଥର ତା' ଲୁଗାପଟା ଦି'ଖଣ୍ଡ ସଜାଡି ନେଲା। କହିଲା, ମା' ଲୋ, ମୁଁ ଦିନଟାଏ ଜେଜେମା' ପାଖରେ ରହିବି।

ମୋ କଲିଜା ଥଣ୍ଡା ହୋଇ ଯାଇଥିଲା। କିଏ ଯଦି ଦେଖିନେଇ ସୁମୀ ବାପା ପାଖରେ ଫୋଡି ଦିଏ? ପୁଣି ଭାବିଲି ଯାଉ ପିଲାଟା, ଏତେ ମନ କରିଛି ଯେତେବେଳେ। ସିନ୍ଦୁରା ଫାଟିବା ଆଗରୁ ତାକୁ ଛାଡି ଦେଇ ଆସିବି। ପୁଣି ପରଦିନ ସକାଳ ନ ହେଉଣୁ ନେଇ ଆସିବି। ଶାଶୁର ପଡିଶା ରାମ କକେଇ ଘର ତ କେହି ନାହାନ୍ତି। ତୀର୍ଥରେ ଯାଇଛନ୍ତି ସମସ୍ତେ। ଦେଖିବ କିଏ?

କାହିଁକି ଯେ ମୁଁ ମା' ଡାକୁଣୀ ଏ କାମ କଲି? କି ପାଇଁ ମୋ ଗଳାମାଳିକୁ ପାଖରୁ ଛାଡିଦେଲି? କେଜାଣି କି ଦୁର୍ବୁଦ୍ଧି ଜୁଟିଥିଲା ମତେ!

ଆଉ ତା' ପର କଥା କ'ଣ କହିବି, ବାବୁ? ସବୁ ତ ତୁମେ ଜାଣ!

ସୁମୀବାପା ପଇସା ଦେଇ ତା' ଆଖଡା ଦିନର ଦିଇଟା ସାଥୀଙ୍କୁ ମନେଇ ଥିଲା। କିଏ ଜଣେ ତା' ମୁଣ୍ଡରେ ପୂରେଇ ଦେଇଥିଲା ଯେ ଜମି ଲେଖାପଡା ହେବା ଆଗରୁ ଯଦି ମା' ମରିଯାଏ, ତେବେ ସବୁ ଜମି ତା'ର ହୋଇଯିବ। ଜମିଲୋଭ ଅନ୍ଧ କରିଦେଇଥିଲା ତାକୁ। ଆଗପଛ ନ ବିଚାରି ଦି' ଗୁଣ୍ଡାଙ୍କୁ ଯୋଗାଡ କରିଥିଲା ମା'କୁ ସବୁଦିନ ପାଇଁ ଶେଷ କରିଦେବା ପାଇଁ। ସେଦିନ ରାତିରେ ଯେଉଁ ଏତେ ସଲାସୁତୁରା ଚାଲିଥିଲା, ତା' ଏଇ ପାପ ପାଇଁ। କେହି ଯେମିତି ତାକୁ ସନ୍ଦେହ ନ କରନ୍ତି, ସେଥିପାଇଁ ଆଗତୁରା ସହରକୁ

ପକେଇଥିଲା ସୁମୀବାପା ! ମୁଁ ଚାଣ୍ଡାଳୁଣୀ କ'ଣ ଏତେସବୁ ଜାଣିଥିଲି ସେତେବେଳେ ?

ଝିଅକୁ ଶାଶୂ ପାଖରେ ଛାଡି ଫେରିଆସିଥିଲି। ଦିନଟା ଯାକ ଜେଜେମା' ସାଙ୍ଗରେ ଘର ଭିତରେ ବସି ଗପିଥିବ ଆମ ସୁମୀ। ସନ୍ଧ୍ୟା ଯାଇ ରାତି ହେଇ ଆସିବା ବେଳକୁ ନାତୁଣୀକୁ ଏକା ଛାଡି ବାହାରକୁ ଉଠି ଆସିଥିବ ଶାଶୂ। ରାତିରେ ଖିଆପିଆ କରି ଶୋଇବା ଆଗରୁ ଥରେ ଘର ଚାରିପଟେ ସେ ଘୂରି ଆସେ। ସାମ୍ନାର ଦଦରା ଫାଟକରେ ପୁରୁଣା ତାଲାଟାଏ ଲଗେଇ ଦେଇ ଆସେ। ଏଇଟା ତ ତା'ର ସବୁଦିନିଆ ଅଭ୍ୟାସ। ସୁମୀବାପା ନିଶ୍ଚୟ ଆଗରୁ କହି ଦେଇଥିବ ସେ ଲୋକ ଦି'ଟାଙ୍କୁ। ମୋଟା ମୋଟା ଠେଙ୍ଗାପଙ୍କା ଠେଙ୍ଗା ଧରି ଆମ୍ବଗଛ ଉହାଡରେ ଲୁଚି ରହିଥିଲେ ସେମାନେ। ଶାଶୂକୁ ପଦାକୁ ଆସିବାର ଦେଖି ପଦେ କଥା ନ କହି ତା' ମୁଣ୍ଡରେ କଷି ଦେଇଥିଲେ ଦୁଇ ପାହାର। ବୁଢୀ କ'ଣ ସହି ପାରିଥାଆନ୍ତା ? ଚିତ୍କାର କରି ପଡିଯାଇଥିଲା ତଳେ। ପାଖଘର ତ ଯାଇଛନ୍ତି ତୀର୍ଥରେ, ଆଉ ଶୁଣିବ କିଏ ?

ଘରେ ଯେ ସୁମୀ ରହିଥିଲା, ସେକଥା ସେମାନେ ଜାଣିଥାଆନ୍ତେ କେମିତି ?

ଜେଜେମା'ର ବିକଳ ପାଟି ଶୁଣି କିଛି ନ ଭାବି ବାଡି କବାଟ ଖୋଲି ଧାଇଁ ଯାଇଥିଲା ସୁମୀ। ବୋଧହୁଏ ଭାବିଥିବ ସାପଟାଏ କି କ'ଣ ?

ହେଲେ ବାବୁ...

ଓହୋ ଲୋ !!

ଜାଲଜାଲୁଆ ଅନ୍ଧାରରେ ସୁମୀ ନିଶ୍ଚୟ ଦେଖି ଚିହ୍ନି ନେଇଥିବ ମଣିଷ ଦି'ଟାଙ୍କୁ। ସେମାନେ ମଧ୍ୟ ଏମିତି ଆଉ ଜଣଙ୍କୁ ଘରୁ ବାହାରିବାର ଦେଖି ଅତର୍କାରେ ନିଜ ଦୋଷ ଲୁଚେଇବା ପାଇଁ ଠେଙ୍ଗାରେ ପାହାର ପରେ ପାହାର ଠୁକି ଯାଇଥିବେ ମୋ ଝିଅ ମୁଣ୍ଡରେ। ମୋ ଝିଅ ପାଟି କରି ମତେ ଡାକିଥିଲା କି ? ଖୋଜିଥିଲା କି ମତେ ? କେଜାଣି ? ମୁଁ ମା' ଡାହାଣୀ ସେତେବେଳକୁ ମୋ ଘରେ ଦିବ୍ୟ ଖାଇପିଇ ଘୋଡିଘାଡି ହୋଇ ଶୋଇ ଯାଇଥିଲି।

ଭୋରରୁ ଗାଆଁ ଦାଣ୍ଡରେ ଭିଡ ହେବା ଆଗରୁ ସୁମୀକୁ ଆଣିବାକୁ ମୁଁ ଯାଇଥିଲି। ଆଉ ଦେଖିବାର କ'ଣ ଥିଲା ? ବଗିଚା ଭିତରେ ଚେତା ହରାଇ ପଡି ଯାଇଥିଲି ମୁଁ। କିଏ ମତେ ସାଷ୍ଟାମ କଲା, ଘରେ ଆଣି ଶୁଆଇଲା, କିଛି ମୁଁ ଜାଣେ ନାହିଁ।

ପରେ ଶୁଣିଲି କିଏ ଜଣେ ସୁମୀବାପାକୁ ଖବର ଦେବାକୁ ସହର ଧାଇଁ ଯାଇଥିଲା। ଖବର ପାଇ ଏକା ନିଃଶ୍ୱାସକେ ଗାଆଁକୁ ପଳାଇ ଆସିଥିଲା ସେ। ହେଲେ, ଗାଆଁ ମୁଣ୍ଡରେ ଆସି ନ ପହଞ୍ଚୁଣୁ ତାକୁ ପୋଲିସ୍ ବାନ୍ଧି ନେଇଗଲା। କେତେ ବାଡେଇ ପିଟି ହୋଇଥିଲା ସୁମୀବାପା, କେହି ଟିକେ ତାକୁ ତା' ଝିଅ ପାଖକୁ ନେଲେ ନାହିଁ। ଯେତେ ଯାହା ହେଲେ ବି ସବୁ ପଛରେ ତ ତା' ହାତ ଥିଲା। ଗୁଣ୍ଡା ଦି'ଜଣ ଲୁଚି ଲୁଚି ପଳାଇବା ବେଳେ ଧରା ପଡି ଯାଇଥିଲେ। ପୋଲିସ ଭୟରେ ଗଡଗଡ କରି ସବୁ ଗାଇ ଯାଇଥିଲେ ସେମାନେ। ଏହା ପରେ କ'ଣ ଅସଲ ହତ୍ୟାକାରୀକୁ ହାତଛଡା କରିଥାଆନ୍ତା ପୋଲିସ୍?

ସମସ୍ତେ ଯେ ଯୁଆଡେ ଚାଲିଗଲେ, ଖାଲି ଏକା ରହିଗଲି ମୁଁ। କୋଡିଏ ବର୍ଷ କାଳ ଯେଉଁ ଝିଅକୁ ବଢେଇ ଆଣିଲି, ତାକୁ ଇ ଚିତାରେ ବସେଇ ଆସିଲି। ଗାଆଁ ମଶାଣୀରେ ଏକାଠି ଦି' ଦି'ଟା ଚିତା ଜଳିଲା। ଶାଶୁ ବୁଢୀ ନାତୁଣୀ ପାଇଁ ଏତେ ଡହଳ ବିକଳ ହେଉଥିଲା, ଶେଷରେ ସେଇ ଗେହ୍ଲା ନାତୁଣୀକୁ ସାଙ୍ଗରେ ନେଇ ସେପୁରକୁ ଗଲା।

ଆଉ ବା ଶାଶୁଘର ଗାଆଁରେ ରହିଥାଆନ୍ତି କାହିଁକି? ଚାଲି ଚାଲି ଗୋଟିଏ ଅଜଣା ଅଶୁଣା ଦୂର ଗାଆଁକୁ ପଳେଇ ଆସିଥିଲି ମୁଁ। ଗାଆଁ ମୁଣ୍ଡରେ ଥିବା ମନ୍ଦିର ବେଢାରେ ମୁଁ ପଡି ରହିଲି। କିଏ କେତେବେଳେ ଦିଇଟା ପଇସା ପକାଇ ଦିଏ ପାଖରେ। କିଏ ବା ଦି'ମୁଠା ଖାଇବାକୁ ଦେଇ ଦିଏ। କିଏ କହେ ପାଗଳୀ, କିଏ କହେ ହତ୍ୟାକାରୀର ହାତବାରିସି।

ମୁଁ କାହାକୁ କିଛି କହେ ନାହିଁ। ଆଜି ତମେ ବାବୁ ମତେ କୁହାବୋଲା କରି ଆଣିଲ ବୋଲି ସବୁ କହୁଛି।

ସୁମୀବାପା ବନ୍ଧା ହୋଇ ହାଜତକୁ ଯିବା ପରେ ଥରେ ହେଲେ ମୁଁ ତାକୁ ଦେଖିବାକୁ ଯାଇନି। ଦେଖିବାର ଇଚ୍ଛା ବି ନ ଥିଲା। ଆଜି ଏତେ ଦିନପରେ ଅଦାଲତରେ ତାକୁ ଦେଖି ମୁଁ ମୁହଁ ବୁଲେଇ ନେଇଛି। ଆଉ କି ସମ୍ପର୍କ ତା' ସାଙ୍ଗରେ?

ଯାହା ଜାଣିଥିଲି, ସବୁ ସତ ସତ କହିଦେଲି ବାବୁ। ଏଥର ତମେ କର ନିଶାପ।

ହେଲେ, କି ନିଶାପ କରିବ ତମେ? ସେଇ ଉପରେ ବସି ଯିଏ ଚକାଡୋଳା

ବୁଲାଇ ଜଗତଟାକୁ ଦେଖୁଛି, ସେ ତ କେବେଠାରୁ ନିଶାପ କରିସାରିଲାଣି। ଦେଖୁଛ, ଦେଖୁଛ ବନ୍ଧା ହୋଇ ପଡିଥିବା ମଣିଷଟାକୁ ? କେମିତି ଛଳକା ହୋଇ ଚାହିଁ ରହିଛି ଶୂନ୍ୟକୁ ? ତା' ଲୋଭ ତାକୁ କେଉଁଠି ପହଞ୍ଚେଇ ଦେଲା ଦେଖୁଛ ତ ? ଯେଉଁ ଝିଅର ଜୀବନ ସଜେଇ ଦେବାକୁ ତା'ର ଏତେ ଆୟୋଜନ, ସେଇ ଝିଅ ଇ ସବୁ ଦିନ ପାଇଁ ହଜିଗଲା। ଚକାଡୋଳାର ଶାସ୍ତି ଦେଖୁଛ ତ ? କେମିତି ଗୋଟାଏ ସୁସ୍ଥ ସବଳ ଅହଙ୍କାରୀ ମଣିଷର ସବୁ ବହପ ଚୂନା କରିଦେଲା !

ହେଲେ... ହେଲେ ଦେଖା ଯଦି ହୁଅନ୍ତା ନା ଚକାଡୋଳା ସାଙ୍ଗରେ, ମୁଁ ପ୍ରଶ୍ନଟାଏ ପଚାରନ୍ତି। ବାବୁ, ମୁଁ କ'ଣ ଦୋଷ କରିଥିଲି ? ହଁ, ଝିଅ ମୋର ଭୋଗ କରିବ ଭାବି ଲୋଭ ଟିକିଏ କରିଥିଲି ନିଶ୍ଚୟ। କିନ୍ତୁ ସେଥିପାଇଁ କାହାର କିଛି ହାନି କରିଥିଲି କି ? ହାନି କରିବା ଚିନ୍ତା ମନ ଭିତରକୁ ଆଣିଥିଲି କି ? ତାହେଲେ, ଜଣଙ୍କୁ ଶାସ୍ତି ଦେବାକୁ ଯାଇ ଆଉଜଣଙ୍କ ମୁଣ୍ଡରେ ବଜ୍ର କେମିତି ପକାଇ ଦେଲା ସେଇ ଚକାଡୋଳା ? ଜଣଙ୍କ ଦୋଷର ନିଶାପ କରିବାକୁ ଯାଇ ଜଣେ ନିର୍ଦ୍ଦୋଷକୁ କେମିତି ଭସେଇ ଦେଲା ସେ ?

ବାବୁ, ସଭିଏଁ କହୁଛନ୍ତି ତୁମେ ନ୍ୟାୟାବତାର। ତମେ ନିଶାପ କଲାବେଳେ ତମ ଦିହରେ ନିଜେ ମହାପ୍ରଭୁ ବିଜେ ହୁଅନ୍ତି। ତାହେଲେ, ତମେ ବଦଳେଇ ପାରିବନି ଚକାଡୋଳାର ବିଚାରକୁ ? □□

(ଗୋଟିଏ ସତ୍ୟ ଘଟଣା ଉପରେ ଆଧାରିତ)

# ଅତିଥି

ସକାଳୁ ସକାଳୁ ସ୍ତ୍ରୀ ସାଙ୍ଗରେ ଗୁଡାଏ ମନ ଫଟାଫଟି ହେବା ପରେ ଶଙ୍କରର ଅନ୍ତତଃ ଆଜି ଏଇଭଳି କରିବା ଉଚିତ ନ ଥିଲା। ହେଲେ ସେ ଅମରେନ୍ଦ୍ର ମୁହଁ ଉପରେ ଠୋ କରି ମନା କରି ଦେଇଥାଆନ୍ତା କେମିତି ?

ମନ ଭିତରେ ସେ ବୁଝୁଥିଲା ଯେ ତା'ର ଏ କଥାରେ ରାଜି ନ ହେବା ଉଚିତ। କିନ୍ତୁ କ'ଣ ବା ସେ କରିବ ? ପିଲାଦିନରୁ ତା'ର ଏ ଅଭ୍ୟାସ। ସବୁ କଥାରେ ଆଗକୁ ଡେଇଁ ପଡିବା ତା'ର ଚିରାଚରିତ ସ୍ୱଭାବ। ପାଠ ପଢିବା ଦିନେ ବୋଉ ଗଜର ଗଜର କରୁଥିଲା, ଏବେ ସ୍ତ୍ରୀ ଅପର୍ଣ୍ଣା ଚିଡୁଛି। ଆଜି ଇ ତ ସକାଳେ ପାଟି କରି ଉଠିଥିଲା ସେ, "ତମେ କ'ଣ ସଂସାର ଯାକର ଲୋକଙ୍କୁ ସାହାଯ୍ୟ କରିବା ପାଇଁ ଠିକା ନେଇଛ କି ? ନିଜ ସଂସାର ପଛକେ ଏଣେ ଭାସି ଯାଉଛି, ତେଣେ ପରର ଦଣ୍ଡ ଧରିବାକୁ ସବୁବେଳେ ଆଗଭର !"

ଅପର୍ଣ୍ଣା ଚିଡିବାର କାରଣ ରହିଛି। ଅନ୍ୟମାନଙ୍କୁ ସାହାଯ୍ୟ କରିବାର ତା'ର ଏଇ ଯେଉଁ ମନୋବୃତ୍ତି, ଏହାର ବେଶ୍ ଲାଭ ଉଠାଇ ଆସୁଛନ୍ତି ଅଫିସ୍‌ର ତଥାକଥିତ ବନ୍ଧୁ କେଇଜଣ। ଏଇ ସୁବିଧାବାଦୀମାନଙ୍କୁ ବହୁତ ଥର ମୁହଁ ଉପରେ 'ନା' କରିଦେବାର ଚେଷ୍ଟା କରିଛି ଶଙ୍କର, କିନ୍ତୁ ପାରି ନାହିଁ। ଫଳରେ ରାଓର ପାଣି ବିଲ୍ ଦେବାଠାରୁ ସୁରେନ୍ଦ୍ର ମା'ର ହୋମିଓପ୍ୟାଥି ଔଷଧ ଆଣିବା ପର୍ଯ୍ୟନ୍ତ ସବୁ କିଛି ତାକୁ କରିବାକୁ ହୋଇଛି। କିନ୍ତୁ ଏ ଲୋକଗୁଡାକ ଯେ କେମିତି ?

ନିଜ ପକେଟ୍‌ରୁ ଟଙ୍କା ଖର୍ଚ୍ଚ କରି ସେମାନଙ୍କର କାମ କରି ଦେଇଛି ଶଙ୍କର, ଅଥଚ ଟଙ୍କା ଫେରାଇବାର କୌଣସି ଲକ୍ଷଣ ଦେଖାନ୍ତି ନାହିଁ ସେମାନେ। ମୁହଁ ଖୋଲି ମାଗିଲେ 'ଆଜି ଦେବି', 'କାଲି ଦେବି'ର ବାହାନା କରନ୍ତି।

ଶଙ୍କରର ସୀମିତ ଆୟ ଭିତରେ ଦୁଇ ପୁଅଙ୍କୁ ନେଇ ସଂସାର ଚଳେଇବା ବେଳେ ସେଥିପାଇଁ ଅପର୍ଣ୍ଣାର ବେଶ୍ ଟାଣ ଟୁଣ ପଡିଯାଏ। ରହି ରହି ଦିନେ ଦିନେ ମିଜାଜ୍ ଗରମ ହୋଇଯାଏ ତା'ର।

ଠିକ୍ ଆଜି ଯେମିତି ହୋଇଥିଲା। ଏହାପରେ କ'ଣ ଶଙ୍କରର ଅମରେନ୍ଦ୍ର କଥାରେ ଚଟ୍ କରି ରାଜି ହୋଇଯିବା ଉଚିତ୍ ଥିଲା ?

ପୁରୀ ଯାଉଥିବା ବସ୍‌ଟିକୁ କଟେଇ ସ୍କୁଟର୍‌ରେ ଗଲାବେଳେ ତା' ମୁହଁ ଆଉ ଟିକିଏ ଗମ୍ଭୀର ହୋଇଗଲା। ଆଉ କିଏ ନୁହଁ, ଅମରେନ୍ଦ୍ର। ସାରାଟା ଅଫିସ୍ ଭିତରେ ଏ ବୋଧହୁଏ ଏକମାତ୍ର ମଣିଷ ଯିଏ କି ଆଜି ଯାଏଁ କେବେହେଲେ କୌଣସି ବିଷୟରେ ଶଙ୍କର ପାଖରେ ହାତ ପାତି ନାହିଁ। ସେଇ ଅମରେନ୍ଦ୍ର ଯେତେବେଳେ ଅସୁବିଧାରେ ପଡି ତା'ଠାରୁ ସାହାଯ୍ୟ ମାଗିଲା ସେ ବା କେମିତି ମୁହଁ ବୁଲାଇ ନେଇ ଥାଆନ୍ତା ?

ପଛ ସିଟ୍‌ରୁ ହଠାତ୍ ପ୍ରଶାନ୍ତ ପଚାରି ଉଠିଲେ, ''ଆପଣଙ୍କ ଘର ତାହେଲେ ଅଫିସ୍‌ରୁ ବେଶ୍ କିଛି ବାଟ ?''

''ହଁ, ପ୍ରାୟ ଚାରି କିଲୋମିଟର ହେବ। ଆମର ସେପଟେ ଘର ଭଡା ଟିକିଏ କମ୍। ତେଣୁ ଭଲ ଘରେ ରହିବା ଲୋଭରେ ଏତେ ଦୂରରେ ରହିଛୁ।''

ପୁଣି ପ୍ରଶାନ୍ତ ଚୁପ୍ ହୋଇ ଗଲେ। ଡ଼ାହାଣ ପାଖ ଆଇନା ଦେଇ ତାଙ୍କୁ ଥରେ ଦେଖି ନେଲା ଶଙ୍କର। ପତଳା, ଗୋରା ମୁହଁ। ସମ୍ଭ୍ରାନ୍ତ ଚେହେରା। ଚାଳିଶ ପାଖାପାଖି ବୟସ ହେବ। ଆଗରୁ କେବେ ସ୍କୁଟର୍‌ରେ ବସି ନାହାନ୍ତି ବୋଧହୁଏ। ମାଟିଆ ଛୋଟ ସୁଟ୍‌କେଶ୍‌ଟିକୁ କୋଳରେ ଧରି କେମିତି ଗୋଟିଏ ଅନଭ୍ୟସ୍ତ ଭାବରେ ପଛ ସିଟ୍‌ରେ ବସିଛନ୍ତି।

ଆଉ ଥରେ ଆଇନା ଦେଇ ଚାହିଁଲା ସେ। ନା, ଖୁବ୍ ଅସୁବିଧା ଯେ ହେଉଛି ତା'ର କୌଣସି ଛାପ ନାହିଁ ମୁହଁ ଉପରେ। ବରଂ ଶିଶୁର କୌତୁହଳତା ନେଇ ମୁଣ୍ଡ ବୁଲେଇ ବୁଲେଇ ଆଗ୍ରହରେ ଦେଖି ନେଉଛନ୍ତି ଭୁବନେଶ୍ୱର ସହରଟିକୁ।

ଏଇ ଡ଼କ୍ଟର ପ୍ରଶାନ୍ତ ମିଶ୍ର। ଅମରେନ୍ଦ୍ରର ମାମୁଁ ପୁଅ ଭାଇ। ଲଣ୍ଡନ୍ ସ୍କୁଲ୍ ଅଫ୍ ଇକନମିକ୍‌ସରେ ପଢାନ୍ତି। କ'ଣ ଗୋଟିଏ କନ୍‌ଫରେନ୍‌ସରେ ଯୋଗ

ଦେବାପାଇଁ ସେ ଭାରତ ଆସିଛନ୍ତି। ଆଗରୁ ଚିଠିପତ୍ର ଦିଆନିଆ ହୋଇ ସ୍ଥିର ହୋଇଥିଲା ଯେ ଭୁବନେଶ୍ୱର ଆସିଲେ ସେ ଅମରେନ୍ଦ୍ର ଘରେ ହିଁ ରହିବେ। କିନ୍ତୁ ହଠାତ୍ ସବୁ ଗୋଳମାଳ ହୋଇଗଲା। ଗତକାଲି ରାତିରେ ଖବର ଆସି ପହଞ୍ଚିଲା ଯେ ଅମରେନ୍ଦ୍ରର ଶାଶୁ ଭୀଷଣ ଅସୁସ୍ଥ। ହାର୍ଟ ଆଟାକ୍ ହୋଇ ପ୍ରାୟ ଚାଲିଯିବା ଅବସ୍ଥା। ସ୍ତ୍ରୀକୁ ତ ଏତେଗୁଡ଼ାଏ ଦାଟ ଏ ଅବସ୍ଥାରେ ଆଉ ଏକା ପଠେଇ ହେବ ନାହିଁ। କୌଣସି ମତେ ଟିକେଟ ଯୋଗାଡ କରି ଅମରେନ୍ଦ୍ର ରାତିରେ ରାଉରକେଲା ବାହାରିଛି। କିନ୍ତୁ ଅସୁବିଧା ହୋଇଛି ପ୍ରଶାନ୍ତଙ୍କୁ ନେଇ। ତାଙ୍କର ହୋଟେଲ୍ ଖାଇବା ହଜମ ହୁଏ ନାହିଁ। ଆଉ ତ ଏ ସହରରେ କେହି ଆତ୍ମୀୟ ବା ଚିହ୍ନା ଜଣା ନାହାନ୍ତି। ଯଦି ଦୟା କରି ଶଙ୍କର ତା' ନିଜ ଘରେ ପାଞ୍ଚୋଟି ଦିନ ତାଙ୍କୁ ରଖି ପାରନ୍ତା। ପାଞ୍ଚଦିନ ପରେ ସେ ଦିଲ୍ଲୀ ଫେରିଯିବେ।

ଏମିତି ଗୋଟିଏ ଅନୁରୋଧକୁ କେମିତି ଅସ୍ୱୀକାର କରି ଦେଇଥାଆନ୍ତା ଶଙ୍କର? ତା' ପାଟିରୁ ବାହାରି ପଡିଥିଲା, ''ଆରେ ଏଥିରେ ପଚାରିବାର କ'ଣ ଅଛି? ତୁ ନିଶ୍ଚିନ୍ତ ମନରେ ଯା। ପାଞ୍ଚଟା ଦିନ କଥା ତ।''

ସେତେବେଳେ ଅପର୍ଣ୍ଣା କଥା ତା'ର ମନେ ହୋଇ ନ ଥିଲା। କିନ୍ତୁ ଫାଟକ ଖୋଲି ଘର ଭିତରେ ପଶିବା ବେଳେ ତାକୁ ଟିକିଏ ଖରାପ ଲାଗିଲା। ଅନ୍ତତଃ ଅପର୍ଣ୍ଣାକୁ ଆଗରୁ ଜଣେଇ ଦେବା ତା'ର ଉଚିତ ଥିଲା। କିନ୍ତୁ ଘରେ ଫୋନ୍ ନାହିଁ। ପାଖ ପଡିଶାରେ ମଧ୍ୟ କାହାର ଫୋନ୍ ନାହିଁ, ଖବର ବା ଦେଇଥାଆନ୍ତା କେମିତି?

କଲିଂବେଲ୍ ଶବ୍ଦରେ କବାଟ ଖୋଲି ଦେଇ ଅପର୍ଣ୍ଣା ଟିକିଏ ଥଥମମ ହୋଇଗଲା। ଶଙ୍କର ପାଖରେ ହସ ହସ ମୁହଁରେ ଠିଆ ହୋଇଛନ୍ତି ଜଣେ ଅଚିହ୍ନା ମଣିଷ।

ଅପର୍ଣ୍ଣା କିଛି କହିବା ଆଗରୁ ହାତ ଯୋଡିଲେ ଭଦ୍ରଲୋକ ଜଣକ। ଶଙ୍କର ଚିହ୍ନେଇ ଦେଲା, ''ଡକ୍ଟର ପ୍ରଶାନ୍ତ ମିଶ୍ର, ଅମରେନ୍ଦ୍ରର ମାମୁଁ ପୁଅ ଭାଇ। ଡ଼କ୍ଟର ମିଶ୍ର, ଏ ମୋ ସ୍ତ୍ରୀ ଅପର୍ଣ୍ଣା।''

ଅପର୍ଣ୍ଣା ଯେମିତି ଗୋଲକଧନ୍ଦାରେ ପଡିଗଲା। ହଠାତ୍ ଏମିତି ଅମରେନ୍ଦ୍ରର ମାମୁଁ ପୁଅ ଭାଇ ଜଣଙ୍କ ଯେ କାହିଁକି ତାଙ୍କ ଘରେ ପହଞ୍ଚିଗଲେ ଚିନ୍ତା କରି ତାହାର କାରଣ ଖୋଜି ପାରୁ ନ ଥିଲା ସେ। ପୁଣି ହାତରେ ଛୋଟ ସୁଟ୍‌କେସ୍ କାହିଁକି?

ବେତ ଚୌକୀ ଉପରେ ବସିଯାଇ ଖୁବ୍ ଅମାୟିକ ହସ ହସି ପ୍ରଶାନ୍ତ କହିଲେ, ''ଦେଖନ୍ତୁ ତ, ଏମିତି ହଠାତ୍ ପହଞ୍ଚିଯାଇ ଆପଣଙ୍କୁ କି ହଇରାଣରେ ପକେଇ ଦେଲି।''

ଅପର୍ଣ୍ଣା ତଥାପି ଭାବି ହେଉଥିଲା। ସେ କିଛି ଉତ୍ତର ଦେବା ପୂର୍ବରୁ ଶଙ୍କର ତରବର ହୋଇ କହି ପକେଇଲା, ''ଚାହା କି କଫି ଟିକିଏ କରନ୍ତ ନାହିଁ?''

ଧଡପଡ ହୋଇ ଉଠିପଡିଲା ଅପର୍ଣ୍ଣା। ଆରେ ସତକଥା ତ, ସେ ଏକଦମ୍ ଭୁଲି ଯାଇଛି।

ପ୍ରଶାନ୍ତଙ୍କୁ ପଚାରିଲା, ''କ'ଣ ପିଇବେ, ଚାହା ନା କଫି?''

ସାମାନ୍ୟ କୁଣ୍ଠିତ ଭାବରେ ପ୍ରଶାନ୍ତ ଉତ୍ତର ଦେଲେ, ''ବିଶେଷ ଯଦି ଅସୁବିଧା ନ ହୁଏ, ତେବେ କପେ ଚାହା, କିନ୍ତୁ ବ୍ଲାକ୍। କ୍ଷୀର, ଚିନି ଦେବେ ନାହିଁ।''

ଅପର୍ଣ୍ଣା ରୋଷେଇ ଘରକୁ ଚାଲିଗଲା। ଅଳ୍ପ ସମୟ ପରେ ତା' ପଛେ ପଛେ ଶଙ୍କର ଆସି ହାଜର।

''କ'ଣ ଭଦ୍ରଲୋକଙ୍କୁ ଏକା ବସେଇ ଦେଇ ଚାଲି ଆସିଲ?''

''ସେ ମୁହଁ ଧୋଇବାକୁ ବାଥ୍‌ରୁମ ଯାଇଛନ୍ତି।''

ଚାହା କେଟ୍‌ଲି ଚୁଲୀ ଉପରେ ଥୋଇ ଦେଇ ଅପର୍ଣ୍ଣା ବୁଲି ପଡିଲା, ''ମୁହଁ ଧୋଇବାକୁ?'' ଶଙ୍କର କିଛି ଉତ୍ତର ଦେଲା ନାହିଁ। ସ୍ୱାମୀ ମୁହଁକୁ ଏଥର ସିଧା ସଳଖ ଚାହିଁ ଅପର୍ଣ୍ଣା ଗଳାରେ ଜୋର୍ ଦେଇ ପଚାରିଲା, ''କଥା କ'ଣ ଟିକିଏ ବୁଝେଇ କହିବ? କିଏ ଯେ? ଏମିତି ସୁଟ୍‌କେଶ୍ ଧରି ଆମ ଘରେ କାହିଁକି ହାଜର ହୋଇଛନ୍ତି?''

ଶଙ୍କର ଗଳା ଝାଡିଲା, ''ସେ ପାଞ୍ଚଦିନ ଆମ ଘରେ ରହିବେ।''

ଚାପା କ୍ରୋଧରେ ଫାଟି ପଡିଲା ଅପର୍ଣ୍ଣା, ''କ'ଣ? ତୁମ ମୁଣ୍ଡ ଖରାପ ନା କ'ଣ?''

''ଦେଖ ରାଗ ନାହିଁ। ଅମରେନ୍ଦ୍ରର ଶାଶୂ ହଠାତ୍ ସିରିୟସ୍ ହୋଇ ପଡିଛନ୍ତି। ସେ ସ୍ତ୍ରୀକୁ ନେଇ ଆଜି ରାତି ଟ୍ରେନ୍‌ରେ ରାଉରକେଲା ଯାଉଛି। ଏ ଭଦ୍ରଲୋକଙ୍କ ରହିବା ଖାଇବା ନେଇ ବ୍ୟସ୍ତ ହୋଇ ସେ କହିଲା ଯେତେବେଳେ...।''

''ଆହା, ତମେ ଆମର ମନା କରିଥାଆନ୍ତ କେମିତି?'' ଅପର୍ଣ୍ଣା ଆହୁରି

ରାଗିଗଲା ।

"ଭୁବନେଶ୍ୱରରେ କ'ଣ ହୋଟେଲ୍ ନାହିଁ? ଭଦ୍ରଲୋକ ଇଂଲାଣ୍ଡରୁ ଆସିଛନ୍ତି ଯେତେବେଳେ, ଅନୁମାନ କରୁଛି ତାଙ୍କର ପଇସାର ଅଭାବ ନିଶ୍ଚୟ ନ ଥିବ... ଓଃ, ତମେ ଯେ କିଭଳି ମଣିଷ !"

ଶଙ୍କର ବୁଝୁଥିଲା ସ୍ତ୍ରୀ ଉପରେ ଅଯଥା ବୋଝ ଲଦି ଦେଉଛି ସେ। କିନ୍ତୁ ଅମରେନ୍ଦ୍ର ତ ନିଜେ କହିଲା ଯେ ହୋଟେଲ୍ ଖାଇବା ନେଇ ଭଦ୍ରଲୋକଙ୍କର ଅସୁବିଧା ଅଛି। ସେଠି ଖାଇଲେ ଭଲ ଲୋକ ତ ଅସୁସ୍ଥ ହୋଇ ପଡିବ, ଆଉ ଅସୁସ୍ଥଙ୍କ କଥା କାହିଁକି ଉଠୁଛି ?

ସ୍ତ୍ରୀକୁ ବୁଝେଇବାରେ ଚେଷ୍ଟା କଲା ସେ, "ଆରେ, ମୁଁ କ'ଣ ସହଜେ ରାଜି ହୋଇଥାଆନ୍ତି କି ? କିନ୍ତୁ ତାଙ୍କର ପରା ତେଲ ମଶଲା ଖାଇବାରେ ବିଶେଷ ଅସୁବିଧା ରହିଛି। ଅମରେନ୍ଦ୍ର ଏତେ କରି ଅନୁରୋଧ କଲା ବୋଲି ସିନା ମୁଁ ରାଜି ହେଲି। ଦେଖୁନ, ଚାହାରେ କ୍ଷୀର, ଚିନି ବି ଖାଉ ନାହାନ୍ତି। ଏତେଦିନ ଇଂଲାଣ୍ଡରେ ରହିଗଲେଣି। ସେଠିକାର ସିଝା ଅଲଣା ଖାଇବାରେ ଅଭ୍ୟସ୍ତ ନିଶ୍ଚୟ ହୋଇ ପଡିଛନ୍ତି।"

ଅପର୍ଣ୍ଣା ଚିଡି ଉଠିଲା, "ଯଦି ସେମିତି ଅସୁବିଧା ଥିଲା, ତମେ ଘରରନ୍ଧା ଖାଇବା ପଛକେ ତାଙ୍କ ପାଇଁ ହୋଟେଲକୁ ନେଇ ଯାଇ ଥାଆନ୍ତ। ଏଠି ରହିବେ କେଉଁଠି ? ରିକୁ, ମିକି ତ ତାଙ୍କ ରୁମ୍‌ର ଅବସ୍ଥା ଯାହା କରି ରଖିଛନ୍ତି ଦେଖିଛ। କାନ୍ଥ ସାରା କ୍ରେୟନ୍ ଗାର। ବାଥ୍ ରୁମ୍‌ରେ ପାଣି ଗଳୁଛି। ଫ୍ଲସ୍ କାମ କରୁନି। ତମେ ନା, ବାହାର ଲୋକଙ୍କ ସାମ୍ନାରେ ମୋ ନାକ କାଟି ରଖିଦେବ।"

କେବଳ ଖାଇବା ଯୋଗାଇ ଦେଇ ସମସ୍ୟାର ସମାଧାନ କରିବା କଥା ଶଙ୍କର ମୁଣ୍ଡରେ ପଶି ନ ଥିଲା। ହୁଏତ ଏମିତି କିଛି କରି ହୋଇଥାଆନ୍ତା, କିନ୍ତୁ ଏବେ ତ ଆଉ ପଛକୁ ଫେରି ଯାଇ ହେବ ନାହିଁ। ସ୍ତ୍ରୀକୁ ନରମ ଗଳାରେ ବୁଝେଇବାର ଚେଷ୍ଟା କଲା, "ଦେଖ, ରହିବାକୁ କହି ତ ସାରିଲିଣି। ଏବେ ପୁଣି ମନା କଲେ ଖରାପ ହେବ। ଭଦ୍ରଲୋକ ଆଡଭଞ୍ଚ କରି ଚଳିଯିବେ। ତୁମେ ଏତେ ଭାବ ନାହିଁ। ଅତିଥି ଭଗବାନ। ସେବା କଲେ ମଙ୍ଗଳ ହେବ। ପୁଣି ବ୍ରାହ୍ମଣ ଲୋକ !"

ଶଙ୍କରର ହାଲୁକା କଥାରେ ଅପର୍ଣ୍ଣା କଡା କରି ଆହୁରି କ'ଣ ପଦେ ଦୁଇପଦ କହିଥାଆନ୍ତା ନିଶ୍ଚୟ। ହେଲେ ଠିକ୍ ସେତିକିବେଳକୁ ପଡିଶା ଘର

ଝିଅର ଜନ୍ମଦିନ ପାର୍ଟିରୁ ଫେରିଆସିଲେ ରିକୁ ଆଉ ମିକି। ପିଲା ଦିଇଟାଙ୍କ ସାମ୍ନାରେ ବାଧ୍ୟ ହୋଇ ପାଟି ବନ୍ଦ କଲା ସେ।

"କିରେ, କ'ଣ ପାର୍ଟିରେ ବହୁତ ମଜା ହେଲା ?"

"ହଁ, ମା। ଜାଣିଛ ?" ସାତ ବର୍ଷର ପୁଅ ମିକି ଖୁବ୍ ଉତ୍ସାହିତ ଭାବରେ କହି ଉଠିଲା, "ମାମିନା ଘର ମାଉସୀ କି ବଢ଼ିଆ କେକ୍ କରିଥିଲେ ! ଚକୋଲେଟ୍ କେକ୍। ମା, ମୋ ଜନ୍ମଦିନରେ ତୁମେ ସେମିତି ଗୋଟିଏ କେକ୍ କରିଦେବ। ହେଲା ?"

ନଅ ବର୍ଷର ବଡପୁଅ ରିକୁ ଏତେ ସମୟ ସାନ ଭାଇର ଖବର ବୁଝି ବୁଝି ବ୍ୟସ୍ତ ହୋଇ ପଡିଥିଲା, "ମା, ଏଇଟା ଏତିକି ଲୋଭୀ ! ମାଗି ମାଗି ଖାଲି କେକ୍ ଖାଇଗଲା। ମୁଁ ତାକୁ ନେଇକରି ଆଉ କୁଆଡେ ଏକା ଯିବି ନାହିଁ।"

"ମୁଁ କାହିଁକି ଲୋଭୀ ହେବି, ତୁ ଲୋଭୀ। ତୁ ତ ବଡ ମିଠା ତିନିଟା ଖାଇଗଲୁ।"

ମିକି, ରିକୁଙ୍କର ଆଉ ଟିକକରେ ମଲ୍ଲଯୁଦ୍ଧ ଲାଗି ଯାଇଥାଆନ୍ତା।

"ଆରେ, ଆରେ ଚୁପ୍। ଦାଣ୍ଡଘରେ ପରା ଜଣେ ଅଙ୍କଲ୍ ବସିଛନ୍ତି। କ'ଣ ଭାବିବେ ସିଏ ତୁମେମାନେ ଏମିତି ହେଲେ ?"

ନିଆଁରେ ପାଣି ପଡିବା ଭଳି ଦୁହେଁ ଚୁପ୍ ହୋଇଗଲେ। "ଅଙ୍କଲ ! କେଉଁ ଅଙ୍କଲ ?"

ସ୍ତ୍ରୀ ପାଖରୁ ଖସିବାର ସୁବିଧା ମିଳିଗଲା ଶଙ୍କରକୁ। "ଆସ, ତାଙ୍କ ସାଙ୍ଗରେ ଚିହ୍ନା କରେଇ ଦେବି। ସେ ଲଣ୍ଡନରୁ ଆସିଛନ୍ତି।"

ଶଙ୍କର ପିଲା ଦୁଇଜଣଙ୍କୁ ନେଇ ଚାଲିଗଲା। ଠିକ୍ ପରେ ପରେ ଚାହା ଆଉ ବିସ୍କୁଟ୍ ନେଇ ଅପର୍ଣ୍ଣା ମଧ୍ୟ ଦାଣ୍ଡ ଘରେ ପହଞ୍ଚିଗଲା। ତଥାପି ସେ ପର୍ଯ୍ୟନ୍ତ ମନ ଭିତରେ ତା'ର ଟିକିଏ ଟିକିଏ ରାଗ ରହିଥିଲା।

କିନ୍ତୁ ବେଶୀ ସମୟ ପାଇଁ ନୁହଁ, ମାତ୍ର କେଇଟା ଘଣ୍ଟା ଭିତରେ ସବୁ କେମିତି ବଦଳିଗଲା।

ପ୍ରଶାନ୍ତ 'ଡକ୍ଟର ମିଶ୍ର'ରୁ ପ୍ରଶାନ୍ତ ଭାଇ ପର୍ଯ୍ୟାୟକୁ ଓହ୍ଲେଇ ଆସିଲେ। ଶଙ୍କର ଓ ଅପର୍ଣ୍ଣା 'ଆପଣ'ରୁ ତୁମେ ହୋଇଗଲେ। ଆଉ 'ପ୍ରଶାନ୍ତ ଅଙ୍କଲ୍'ଙ୍କ ପାଖରେ ବସିବା ପାଇଁ ରିକୁ ଓ ମିକି ଭିତରେ ଏମିତି ବାଦବାଦି ଲାଗିଗଲା

ଯେ ଶେଷରେ ବାଧ ହୋଇ ପ୍ରଶାନ୍ତ ମଝିରେ ବସିଲେ ଓ ଦୁଇପଟେ ତାଙ୍କୁ ପ୍ରାୟ ଠେଲି କରି ବସିଲେ ପିଲା ଦୁଇଜଣ ।

ରାତିରେ ରୁଟି ସନ୍ତୁଳା ଖାଇ ସାରିବା ପରେ ମଧ ପିଲାଏ ପ୍ରଶାନ୍ତଙ୍କୁ ଛାଡ଼ିବାକୁ ନାରାଜ । ପ୍ରଶାନ୍ତ ମଧ ପିଲା ଦୁହିଁଙ୍କୁ ପାଞ୍ଚଦିନ ପାଇଁ ସେମାନଙ୍କ ରୁମ୍‌ରୁ ତଡ଼ିଦେବା ସପକ୍ଷରେ ନ ଥିଲେ ।

"ମୁଁ ତ ସାରାଟା ଦିନ ବାହାରେ ରହିବି । କେବଳ ରାତି କଥା । ପିଲାଙ୍କ ଘରେ ହେଉ ବା ଏଇଠି ଡ୍ରଇଂ ରୁମ୍‌ରେ ହେଉ, ତଳେ ବିଛଣା କରିଦେଲେ ହେଲା । ତୁମେମାନେ ଆଦୌ ବ୍ୟସ୍ତ ହୁଅ ନାହିଁ ମୋ ପାଇଁ ।"

କିନ୍ତୁ ତା' କ'ଣ ହୁଏ ? ଶେଷରେ କେଉଁ ଯୁଗରୁ ସାଇତା ହୋଇ ରହିଥିବା ଫୋଲ୍‌ଡିଙ୍ଗ ଖଟ ଷ୍ଟୋର୍ ଘରୁ କଢ଼ା ହେଲା । ତା' ଉପରେ ପିଲାଙ୍କ ରୁମ୍‌ରେ ବିଛଣା ହେଲା । ରୁମ୍ ସାରା ପଡ଼ିଥିବା ଭଙ୍ଗା କାର୍, ବନ୍ଧୁକ, ଅଧା ଭଙ୍ଗା ଖେଳଣାକୁ ଏକାଠି କରି ଖଟ ତଳେ ପୁରେଇ ଅପର୍ଣ୍ଣା ରୁମ୍‌ଟିକୁ ଟିକିଏ ପରିଷ୍କାର କରିବାର ଚେଷ୍ଟା କଲା । କାନ୍ଥର ଆର୍ଟ ଗ୍ୟାଲେରୀକୁ ତା'ର ଅବଶ୍ୟ କିଛି କରିବାର ନ ଥିଲା । କିନ୍ତୁ ପ୍ରଶାନ୍ତଙ୍କର କେଉଁଥିରେ କିଛି ଅସୁବିଧା ହେଲା ନାହିଁ । ସବୁ ମନେଇ ବରଂ ସମସ୍ତଙ୍କ ମନରେ ଆନନ୍ଦ ଖେଳାଇ ଶଙ୍କର, ଅପର୍ଣ୍ଣାଙ୍କ ଘରେ ରହିଗଲେ ସିଏ ।

ଚାରିଦିନ ବେଶ୍ ଭଲରେ କଟିଗଲା ।

ଶେଷ ଦିନ ସକାଳ । ସେଦିନ ଶନିବାର । ପିଲାଙ୍କର ସ୍କୁଲ ଛୁଟୀ । ଶଙ୍କରର ଅଫିସ୍ ମଧ ବନ୍ଦ । ସକାଳୁ ଉଠି ସେମାନେ ପ୍ରସ୍ତୁତ ହେଉ ହେଉ ବେଶ୍ ବେଳ ହୋଇ ଯାଇଥିଲା । ସେତେବେଳକୁ ପ୍ରଶାନ୍ତ ଶୁଖିଲା ଟୋଷ୍ଟ, ପାଚିଲା ଅମୃତଭଣ୍ଡା ଖାଇ, ନାଲି ଚାହା ପିଇ ସେମିନାର୍‌କୁ ଯାଇ ସାରିଥିଲେ ।

ପାଚିଲା କଦଳୀର ବେଶ୍ ବଡ ଅଂଶଟିଏ ପାଟିରେ ପୁରେଇ ନେଇ ଗୁଁ ଗୁଁ ହୋଇ ହଠାତ୍ ମିକି କହି ପକେଇଲା, "ବାବା ଜାଣିଛ, ପ୍ରଶାନ୍ତ ଅଙ୍କଲଙ୍କର ଗୋଟିଏ ସତ ସତ ଇଂଜେକ୍‌ସନ୍ ସିରିଞ୍ଜ ଅଛି ।"

ଖବର କାଗଜରୁ ମୁଣ୍ଡ ଟେକି ଶଙ୍କର ବିରକ୍ତ ହୋଇ ଉଠିଲା, "ପାଟିରେ ଖାଇବା ରଖି କଥା କହୁଛୁ କାହିଁକି ?"

ତରବର କରି କଦଳୀ ଖଣ୍ଡଟାକୁ ଗିଳି ନେଇ ମିକି ପୁଣି କହି ଉଠିଲା, "ଧେତ୍ ଶୁଣୁନ କାହିଁକି ଯେ ? ଅଙ୍କଲ୍‌ଙ୍କର ନା ଗୋଟିଏ ସତ ସିରିଞ୍ଜ ଅଛି ।"

"ହଉ ହେଲା, ଭଲ କଥା।" ଶଙ୍କର କଥା ସେଇଠି ବନ୍ଦ କରେଇବାକୁ ବସିଥିଲା।

ଅପର୍ଣ୍ଣା ନିଜ ଖାଇବା ଆଣି ଟେବୁଲ୍‌ରେ ଆସି ବସିଗଲା, "ଏଇ ମିକି, କ'ଣ ଏମିତି ଖାଉଛୁ? ଟେବୁଲ ସାରା ଅଇଣ୍ଠା। ମୁହଁ ସାରା ଖାଇବା ଲାଗିଛି। ଦିନକୁ ଦିନ ଛୁଆ ହୋଇଯାଉଛୁ।"

ମିକି ନିଜ ଉତ୍ସାହରେ ଭଟ୍ଟା ପକେଇଦେବାକୁ ପ୍ରସ୍ତୁତ ନ ଥିଲା। ପିନ୍ଧିଥିବା ପରିଷ୍କାର ଟି' ସାର୍ଟର ହାତରେ ଅଇଣ୍ଠା ବଳ ବଳ ମୁହଁଟାକୁ ଭଲ କରି ପୋଛି ନେଇ ପୁଣି କହି ଚାଲିଲା ସିଏ, "ମୁଁ ଅଙ୍କଲ୍‌କୁ କହିଲି ଯେ ମୁଁ ବଡ ହେଲେ ଡାକ୍ତର ହେବି। ସମସ୍ତଙ୍କୁ ଇଂଜେକ୍‌ସନ୍ ଦେବି। ସେ ମତେ ଇଂଜେକ୍‌ସନ୍ କେମିତି ଦେବାକୁ ହୁଏ, ଶିଖେଇ ଦେବେ ଯେ।"

ଅପର୍ଣ୍ଣା ହସି ପକେଇଲା, "ଆରେ ବାବୁ, ଇଏ ସେମିତିଆ ଡାକ୍ତର ନୁହନ୍ତି। ବେଶୀ ପାଠ ପଢି ରିସର୍ଚ୍ଚ କରି ଡକ୍ଟରେଟ୍ ପାଇଛନ୍ତି। ରୋଗୀ ଦେଖୁବା ଡାକ୍ତର ସେ ନୁହନ୍ତି।"

ଡାକ୍ତରର ଯେ ପ୍ରକାର ଭେଦ ଥାଇପାରେ, ସେ କଥା ମିକି ବୁଝିବା ବୟସରେ ପହଞ୍ଚି ନ ଥିଲା। ନିଜ କଥାକୁ ଠିକ୍ ବୋଲି ପ୍ରମାଣିତ କରିବା ପାଇଁ ନୂଆ ଯୁକ୍ତି ଯୋଗ କରିବାର ଚେଷ୍ଟା କଲା ସେ। "ତମେ କହିଲେ ଖାଲି ହେଲା, ଅଙ୍କଲ୍ ତ ନିଜେ ନିଜେ ଇଂଜେକ୍‌ସନ୍ ନିଅନ୍ତି। ମୁଁ ଦେଖିଛି ଯେ..."

ହଠାତ୍ ବଡ ବଡ ଆଖି କରି ରିକୁ ତା' ଆଡକୁ ଗାରଡେଇ ଚାହିଁଲା, "ଏଇ ମିକି, ଚୁପ୍। ଅଙ୍କଲ୍ କ'ଣ କହିଥିଲେ?"

ବିଚରା ମିକି ବଡ ଭାଇଠାରୁ ଧମକ ଖାଇ ଚୁପ୍ ହୋଇଗଲା।

ଖାଇବା ପାଟିକୁ ନେଉ ନେଉ କିନ୍ତୁ ହାତ ରହିଗଲା ଅପର୍ଣ୍ଣାର। ସେ ବୋଧହୁଏ ଭୁଲ୍ ଶୁଣିଲା। କାହିଁକି ଯେ ଛାତିଟା ଧଡ ଧଡ ହୋଇ ଉଠୁଛି। ସେ ଶଙ୍କର ଆଡକୁ ଚାହିଁଲା। ସେତେବେଳକୁ ଖବର କାଗଜଟା ତଳେ ପକେଇ ଦେଇ ଶଙ୍କର ମିକି ଆଡକୁ ଝୁଙ୍କି ପଡି ଥିଲା।

"କ'ଣ ଦେଖିଛୁ, ମିକି?"

ମିକି ବୁଝି ପାରିଥିଲା ଯେ ସେ ଅନ୍ୟାୟ କିଛି କରି ପକେଇଛି। ବଡ ଭାଇ ଆଡକୁ ଡରି ଡରି ଚାହିଁ କହିଲା, "କିଛି ନାହିଁ ତ।"

ଏଥର ମିକିର କାନ୍ଧକୁ ଜୋର୍‌ରେ ହଲେଇ ଦେଲା ଶଙ୍କର, ''ମିକି!! ମୋ କଥାର ସିଧା ଉତ୍ତର ଦେ। ନ ହେଲେ ଗାଲ ଫଟେଇ ଦେବି।''

କିଛି କହି ନ ପାରି ଭେଁ କରି କାନ୍ଦି ଉଠିଲା ମିକି। ଅପର୍ଣ୍ଣା ଦୁଇ ହାତରେ ସାନ ପୁଅକୁ କୋଳକୁ ଟାଣି ନେଇ ପାଟି କରି ଉଠିଲା, ''ଅଯଥାରେ ପିଲାଟା ଉପରେ କାହିଁକି ଚିଡୁଛ?''

''ଅପର୍ଣ୍ଣା, ତୁମେ ମିକିକୁ ଛାଡ।''

କିନ୍ତୁ ମିକିର କାନ୍ଦ ବନ୍ଦ ହେବାର କୌଣସି ଲକ୍ଷଣ ନାହିଁ। ମା'ର ଆଶ୍ରା ପାଇ କୋଳ ଭିତରେ ମୁହଁ ଗୁଞ୍ଜି ସକ ସକ ହେଉଛି ସିଏ।

ଏଥର ଶଙ୍କର ବଡ ପୁଅ ଆଡେ ଚାହିଁଲା। ''ରିକୁ, ମିକି କ'ଣ କହୁଥିଲା? ତୁ ତାକୁ ବନ୍ଦ କରିଦେଲୁ କାହିଁକି?''

ବାବାଙ୍କର ରାଗ ସହିତ ଅଭ୍ୟସ୍ତ ରିକୁ। ହଠାତ୍ କରି 'କିଛି ଜାଣି ନାହିଁ' କହିବାକୁ ସାହସ ହେଲା ନାହିଁ ତା'ର। ଏଣେ ପୁଣି ସିକ୍ରେଟ୍‌ଟା ଖୋଲି ଦେବା କଥା ଚିନ୍ତା କରି ପାରୁନାହିଁ ସେ।

ପୁଣି ଥରେ ଗର୍ଜନ କରି ଉଠିଲା ଶଙ୍କର, ''ରିକୁ!!''

ଚମକି ପଡି ରିକୁ ଏକା ନିଶ୍ୱାସକେ କହିଗଲା, ''ଅଙ୍କଲ ରାତିରେ ଫେରିବା ପରେ ସବୁଦିନ ଗୋଟିଏ ଇଂଜେକ୍‌ସନ୍ ନିଅନ୍ତି। ଆମେ ପ୍ରଥମ ଦିନ ଦେଖି ଦେଲୁ। ସେଥିପାଇଁ ସେ କହିଲେ ମା' ବାବାଙ୍କୁ କହିବ ନାହିଁ, ସେମାନେ ଡରିବେ।''

ଏଥର ମିକି ଭରସା ପାଇଲା। ଭାଇ ଯେତେବେଳେ କହି ସାରିଲାଣି ଆଉ ପୁଣି କାନ୍ଦିବାର କ'ଣ ଅଛି? ''ମା, ତୁମେ କ'ଣ ଡରିଲ? ବାବା, ତୁମେ କ'ଣ ଡରିଲ? ହେଃ, ଅଙ୍କଲ୍ ଜାଣନ୍ତି ନାହିଁ ଯେ ତୁମେ ଏତେ ବ୍ରେଭ୍।''

ଖାଇବା ଶେଷ କରି ରିକୁ, ମିକି କେତେବେଳଠୁଁ ପଡିଶା ଘରକୁ ଖେଳିବାକୁ ଚାଲି ଗଲେଣି। ଅପର୍ଣ୍ଣାର ଖାଇବା ସେମିତି ଅଧା ପଡି ରହିଛି। ଗାଲରେ ହାତ ଦେଇ ବସି ରହିଛି ସିଏ। ଶଙ୍କର ମୁହଁ କାଗଜ ପଟ ପରି ସାଦା।

ଏ ସବୁ କ'ଣ କହିଗଲା ରିକୁ? ସେ ନିଜ ଭିତରେ ନିଜେ ମିଳେଇ ଯାଉଥିଲା। କାହିଁକି ଅମରେନ୍ଦ୍ର କଥାରେ ସେ ଭାସିଗଲା? ଅଜଣା, ଅଚିହ୍ନା ଲୋକଟିଏକୁ କାହିଁକି ସେ ଘର ଭିତରେ ରହିବାକୁ ଦେଲା? ଏ ଭଳି ଭଦ୍ର ଶିକ୍ଷିତ ବ୍ୟକ୍ତିଟିଏ, ସେ ପୁଣି ଡ୍ରଗ୍ ଆଡିକ୍ଟ!!

ଶବ୍ଦ ଦୁଇଟି ଚିନ୍ତାର ପରିଧି ଭିତରକୁ ଆସିବା ମାତ୍ରକେ ଚମକି ପଡ଼ିଲା ଶଙ୍କର। ନିଜ ଭିତରେ କଥାଟିକୁ ଦୋହରାଇବାକୁ କଷ୍ଟ ହେଉଛି। କିନ୍ତୁ କଥାଟି ତ ମିଛ ନୁହଁ। ଯିଏ ନିୟମିତ ଭାବରେ ଦେହରେ ସିରିଞ୍ଜ ଫୋଡ଼ି କୌଣସି ମାଦକ ଦ୍ରବ୍ୟକୁ ନିଜ ରକ୍ତରେ ମିଶେଇ ଦିଏ, ସେ ଡ୍ରଗ୍ ଆଡିକ୍ଟ ନୁହଁ ତ ଆଉ କ'ଣ ?

କିଏ ଜାଣେ କେବେଠାରୁ ଏ ଅଭ୍ୟାସ ? ହୁଏ ତ ଶରୀର ଭିତରଟା ସବୁ ପୋଡ଼ି ଜଳି ପାଉଁଶ ହୋଇ ସାରିଲାଣି। ସାଧାରଣ ଖାଦ୍ୟ ହଜମ କରିବାର ଶକ୍ତି ଆଉ ଶରୀରରେ ନାହିଁ।

ଶଙ୍କର ସ୍ତ୍ରୀ ମୁହଁକୁ ଚାହିଁ ପାରୁ ନ ଥିଲା। ଅପର୍ଣ୍ଣା ଯଦି ରାଗି କରି ଦଶ ପଦ ଝାଡ଼ି ଦେଇ ଥାଆନ୍ତା, ତେବେ ବରଂ ଭଲ ହୋଇଥାଆନ୍ତା। କିନ୍ତୁ ଏମିତିଆ କିଛି ନ କହି ପଥର ମୂର୍ତ୍ତିଟିଏ ଭଳି ବସି ରହିବା...।

ନା, ସବୁ ଶଙ୍କରର ଦୋଷ। ସିଧା ହୋଇ ସେ ବସିଲା। ଖୁବ୍ ଅନୁନୟ କଣ୍ଠରେ କହିଲା, "ଅପର୍ଣ୍ଣା, ମୁଁ ମାନୁଛି ମୋର ବହୁତ ବଡ଼ ଭୁଲ ହୋଇଯାଇଛି। ଆଜି ଫେରୁ ସେ ଲୋକ। ତା'ର ଜିନିଷପତ୍ର ଏଠୁ ଫୋପାଡ଼ି ତାକୁ ଗଳା ଧକ୍କା ଦେଇ ଯଦି ଘରୁ ବାହାର ନ କରି ଦେଇଛି, ତାହେଲେ ମତେ କହିବ। ତୁମେ ଆଉ ମନ ଖରାପ କର ନାହିଁ, ପ୍ଲିଜ୍।"

ଅପର୍ଣ୍ଣା ଗାଲରୁ ହାତ କାଢ଼ିଲା। ସ୍ୱାମୀ ମୁହଁକୁ ସିଧା ଭାବରେ ଚାହିଁ କହିଲା, "ତୁମେ ଆଦୌ ସେମିତି କିଛି କରିବ ନାହିଁ। ଘରେ ଏଇଭଳି ଗୋଟିଏ ଅପ୍ରୀତିକର ପରିସ୍ଥିତି ସୃଷ୍ଟି କଲେ ରିକୁ, ମିକିଙ୍କ କଅଁଳିଆ ମନରେ ସବୁଦିନ ପାଇଁ ଦାଗଟିଏ ରହିଯିବ।"

ଦୀର୍ଘନିଶ୍ୱାସ ନେଇ ସେ ପୁଣି ଯୋଡ଼ିଲା, "ଆଜି କାଲିକା ପିଲା; ଟି.ଭି ସିନେମା ଦେଖି ଡ୍ରଗ୍ ବିଷୟରେ ବେଶ୍ କିଛି ଜାଣନ୍ତି। ଯେଉଁ ମଣିଷଟିକୁ ସେମାନେ ଅଳ୍ପ ସମୟ ମଧ୍ୟରେ ଏତେ ନିଜର କରି ନେଇଛନ୍ତି, ସେ ଲୋକଟିର ମୁଖା ସେମାନଙ୍କର ସାମ୍ନାରେ ଖୋଲିଗଲେ, କି କଷ୍ଟ ନ ପାଇବେ ଆମର ସେଇ ପିଲା ଦିଓଟି ? ଆଜି ରାତିକ କଥା ତ। କାଲି ସକାଳୁ ସେ ଚାଲିଯିବେ। ତେଣୁ ପାଟି ବନ୍ଦ କରି ଆମେ ଯେମିତି କିଛି ଜାଣି ନାହୁଁ ସେଇଭଳି ଅଭିନୟ କରିବାକୁ ହେବ। ଅନ୍ତତଃ ରିକୁ, ମିକିଙ୍କ ପାଇଁ।"

ଟେବୁଲରୁ ଅଧାଖିଆ ପ୍ଲେଟ୍‌କୁ ଉଠେଇ ନେଇ ଯାଉ ଯାଉ ଅପର୍ଣ୍ଣା କହିଲା,

''ହଁ, ପିଲାଙ୍କୁ ମୁଁ ଆଜି ରାତିରେ ସେ ଘରେ ଶୋଇବାକୁ ଦେବି ନାହିଁ। ତୁମକୁ ଯେମିତି ହେଲେ ଏଇଟା ମ୍ୟାନେଜ୍ କରିବାକୁ ହେବ।''

ଶଙ୍କର ମୁଣ୍ଡ ଟୁଙ୍ଗାରି ରାଜି ହୋଇଗଲା। ଏଇ କାମଟିକୁ ଠିକ୍ ସେ ସମ୍ଭାଳି ନେବ। ପ୍ରଶାନ୍ତ ଫେରିବା ପୂର୍ବରୁ ହିଁ ପିଲା ଦିଓଟିଙ୍କୁ ଖୁଆଇ ପିଆଇ ମା, ବାପାଙ୍କ ଘରେ ଶୁଆଇ ଦେଲେ ହେଲା। ଥରେ ନିଦ ହୋଇଗଲେ ଆଉ ସେମାନଙ୍କୁ ଉଠାଇ ଅନ୍ୟ ଘରକୁ ନେଉଛି କିଏ ?

କିନ୍ତୁ ତା' ଆଉ ହୋଇ ପାରିଲା ନାହିଁ। ସବୁଦିନ ରାତି ଆଠଟା ପରେ ଫେରୁଥିବା ପ୍ରଶାନ୍ତ ହଠାତ୍ ସାଢେ ପାଞ୍ଚଟାବେଳେ ଆସି ପହଞ୍ଚି ଗଲେ। ଅନ୍ୟ ଦିନ ହୋଇଥିଲେ ତାଙ୍କୁ ଦେଖୁ ଦେଖୁ ତାଙ୍କର ଦୁଇ ହାତ ଧରି ଓହଳି ପଡି ଥାଆନ୍ତେ ରିକୁ, ମିକି। କିନ୍ତୁ ସେଦିନ ଚୁପ୍‌ଚାପ୍ ବହି ଦୁଇଖଣ୍ଡ ନେଇ ଅପର୍ଣ୍ଣା, ଶଙ୍କରଙ୍କର ଶୋଇବା ଘରକୁ ଚାଲିଗଲେ ସେମାନେ।

ଘର ଭିତରର ଅସ୍ୱସ୍ତିକର ନୀରବତା ବୋଧହୁଏ ପ୍ରଶାନ୍ତ ଠିକ୍ ବୁଝିପାରି ନଥିଲେ। ସେଇଥିପାଇଁ ଘରେ ପାଦ ଦେଇ ପାଟି କରି ଉଠିଲେ, ''ତୁମେମାନେ ସବୁ ଶୀଘ୍ର ଶୀଘ୍ର ରେଡି ହୋଇ ଯାଅ। ଅପର୍ଣ୍ଣା, ତୁମେ ରାତି ରୋଷେଇ ଆରମ୍ଭ କରି ନାହଁ ତ ?... ଗୁଡ୍। ଯାଅ, ଶୀଘ୍ର ଲୁଗା ବଦଳେଇ ନିଅ। ମୁଁ ଟ୍ୟାକ୍ସି ନେଇ ଆସିଛି। ଆଜି ସମସ୍ତେ ମିଶି ଟିକିଏ ବୁଲିବା। ଫେରିବାବେଳେ ଓବେରୋଇରେ ଖାଇ କରି ଫେରିବା।''

ଓବେରୋଇ ଭଳି ପଞ୍ଚ ତାରକା ହୋଟେଲ୍‌କୁ ଏତେବର୍ଷ ଭିତରେ ବାହାରୁ ହିଁ ଦେଖିଛି ଅପର୍ଣ୍ଣା। ଯା ତା'ଠାରୁ ଶୁଣି ଭିତରକୁ ଥରେ ଯାଇ କେବଳ ସାଜସଜ୍ଜା ଦେଖି ନେବାକୁ କେତେ ମନ ନ କରିଛି ! ସେଇଠି ପୁଣି ଖାଇବା କଥା !!

ନା, ସେ ଖୁସି ହୋଇ ପାରିଲା ନାହିଁ।

ଶୁଖିଲା ସ୍ୱରରେ କହିଲା, ''ଆପଣ ତ ବାହାରେ ଖାଇ ପାରିବେ ନାହିଁ। କାହିଁକି ଅଯଥାରେ ପ୍ରୋଗ୍ରାମ କରୁଛନ୍ତି। ମୋର ତ ସାଙ୍ଗେ ସାଙ୍ଗେ ରୋଷେଇ ହୋଇଯିବ।''

ପ୍ରଶାନ୍ତ କିଛି ଶୁଣିବାକୁ ପ୍ରସ୍ତୁତ ନ ଥିଲେ, ''ଆରେ ମୋ କଥା ଛାଡ। ମୋର ତ ସୁପ୍ ଆଉ ବ୍ରେଡ୍ ହେଲେ ହେଲା। ପିଲାମାନେ ଖୁସି ହେବେ। ଆଉ ତୁମେ କ'ଣ ସବୁଦିନ ଖାଲି ମୋ ପାଇଁ ରାନ୍ଧୁଥିବ। ମୁଁ ବି କାଲି

ସକାଳୁ ଚାଲିଯିବି। ଚାଲ, ଆଜି ଟିକିଏ ବୁଲି ଆସିବା।''

ଶଙ୍କର ଚୁପ୍ ହୋଇ କେବଳ ଶୁଣି ଯାଉଥିଲା। ପାଟି ଖୋଲିଲେ କ'ଣ ନାହିଁ କ'ଣ ସବୁ ବାହାରି ଆସିବ ପାଟିରୁ। କି ଅଭିନୟ କରି ନ ପାରେ ଲୋକଟି! ପାଟିରୁ ମହୁ ଯେମିତି ଝରି ଯାଉଛି, ଅଥଚ ଭିତରେ ଯେ ବିଷ କୁମ୍ଭ!

ଅପର୍ଣ୍ଣା ତାକୁ ସତର୍କ କରେଇ ଦେବା ଭଳି ଥରେ ଚାହିଁ ନେଇ କହିଲା, ''ତୁମେ ଟିକିଏ ପିଲାଙ୍କୁ ରେଡି କରି ଦିଅ ତ। ମୁଁ ଶାଢୀ ବଦଳେଇ ଆସୁଛି।''

ଆରେ, ଏତେ ସହଜରେ ଅପର୍ଣ୍ଣା ରାଜି ହୋଇଗଲା କେମିତି? ଏ ମଣିଷଟି ସାଙ୍ଗରେ ସାରାଟା ସନ୍ଧ୍ୟା ଶଙ୍କର କ'ଣ କଟାଇ ପାରିବ?

ଶଙ୍କର ରିକୁ, ମିକିଙ୍କ ଲୁଗା ଆଣି ଖଟ ଉପରେ ରଖି ଦେଲା। ସେଇଠି ଆଲମାରୀରୁ ଇସ୍ତ୍ରୀକରା ଶାଢୀଟିଏ କାଢୁଥିଲା ଅପର୍ଣ୍ଣା। ତା' ପାଖକୁ ଲାଗି ଆସି ଶଙ୍କର ଫିସ୍ ଫିସ୍ କରି କହିଲା, ''କାହିଁକି ରାଜି ହେଉଥିଲ ସେ ବଦମାସଟାର କଥାରେ?''

ଅପର୍ଣ୍ଣା ଆହୁରି ଶାନ୍ତ ଗଳାରେ କହିଲା, ''ଯାହା ହେବା କଥା ହୋଇଯାଇଛି। ତୁମେ ଦୟା କରି ଏଇ କେତେ ଘଣ୍ଟା ପାଇଁ ଆଉ ଅଶାନ୍ତି ସୃଷ୍ଟି କର ନାହିଁ। ଘରେ ମୁହାଁ ମୁହିଁ ଚାରି ପାଞ୍ଚ ଘଣ୍ଟା ବସିବା ଅପେକ୍ଷା ଏ ବରଂ ଭଲ।''

ସମସ୍ତେ ଲୁଗାପଟା ପିନ୍ଧି ବାହାରକୁ ବାହାରିବାର ଦେଖି ରିକୁ, ମିକିଙ୍କର ପିଲା ମନ ଦୁଇଟି ପୁଣି ଆଗ ଭଳି ପରିଷ୍କାର ହୋଇଗଲା। ନିଶ୍ଚୟ ସବୁ କିଛି ଠିକ୍ ହୋଇ ଯାଇଛି। ନ ହେଲେ ସକାଳେ ମା, ବାବା ଯେମିତି ରାଗି ଯାଇଥିଲେ, ତା'ପରେ କ'ଣ ଏମିତି ବାହାରେ ବୁଲିବାକୁ ଅଙ୍କଲଙ୍କ ସାଙ୍ଗରେ ବାହାରି ଥାଆନ୍ତେ! ପୁଣି ପ୍ରଶାନ୍ତଙ୍କର ଦୁଇ ହାତ ଧରି ଲଣ୍ଡନ ଗପ ଆରମ୍ଭ କରି ଦେଲେ ସେମାନେ। ସେମାନଙ୍କର କଥାବାର୍ତ୍ତାର ଜୁଆରରେ ଶଙ୍କର, ଅପର୍ଣ୍ଣାଙ୍କର ନୀରବତା ଠିକ୍ ଲକ୍ଷ୍ୟ କରିପାରିଲେ ନାହିଁ ପ୍ରଶାନ୍ତ।

ଓବେରୋଇ ହୋଟେଲ୍‌ର କଫି ସପ୍‌ରେ ପାଇନ୍‌ଆପଲ୍ ଜୁସ୍ ପିଉ ପିଉ ୱେଟ୍‌ର ଆସି ଖାଇବାର ଅର୍ଡର ନେଇଗଲା। ଶଙ୍କର ଅଫିସିଆଲ୍ ଡିନାରରେ କେତେ ଥର ଖାଇଛି ଏଠି। ନିଜେ ଖାଇବାବେଳେ ଭାବିଛି ଥରଟିଏ ଏଇଠିକୁ ସ୍ତ୍ରୀ ପିଲାଙ୍କୁ ଆଣିବ ସିଏ। କିନ୍ତୁ ଗୋଟିଏ ସନ୍ଧ୍ୟାର ଖର୍ଚ୍ଚ କଥା ଚିନ୍ତା କରି

ନିଜ ଇଚ୍ଛାକୁ ସାକାର ରୂପ ଦେଇ ପାରି ନାହିଁ।

ଆଜି ଯେ ସେମାନେ ଏଠାକୁ ଆସି ପାରିଲେ, ସେଥିନେଇ ତା'ର ଖୁବ୍ ଖୁସି ହେବା କଥା। କିନ୍ତୁ ଯେଉଁ ମଣିଷଟି ପକେଟରୁ ପଇସା ଖର୍ଚ୍ଚ କରି ସେମାନଙ୍କୁ ଖୁଆଉଛି, ତା'ପ୍ରତି ଶଙ୍କର ମନରେ ଏମିତି ଖୁନ୍ଦି ହୋଇ ରାଗ ଓ ଘୃଣା ରହିଥିଲା ଯେ ତାକୁ ଫ୍ରେସ୍ ଜୁସ୍‌ଟା ମଧ ପିତାଳିଆ ଲାଗୁଥିଲା।

ଶଙ୍କର ଜୁସ୍ ଗ୍ଲାସ୍‌ଟିକୁ ଘୁରେଇ ଘୁରେଇ ନିଜ ମନକୁ ଶାନ୍ତ ରଖିବାର ଚେଷ୍ଟା କରୁଥିଲା। ସେଥିପାଇଁ ପ୍ରଶାନ୍ତଙ୍କ କଥା ଶୁଣି ପାରିଲା ନାହିଁ ସେ।

''କିଛି କହିଲେ ?'' ସେ ନିଜ ସ୍ୱରକୁ ଜୋର କରି ଭଦ୍ର କରିବାର ଚେଷ୍ଟା କଲା।

''ମୁଁ ଟିକିଏ ଆସୁଛି।'' ପକେଟରେ ହାତ ପୂରେଇ ଉଠି ଠିଆ ହେଲେ ପ୍ରଶାନ୍ତ।

''କୁଆଡେ ଯାଉଛନ୍ତି ଅଙ୍କଲ ?'' ରିକୁ ତାଙ୍କୁ ମୁହୂର୍ତ୍ତକ ପାଇଁ ଛାଡିବାକୁ ଚାହୁଁ ନ ଥିଲା।

''ବାଥ୍‌ରୁମ୍।''

''ଓ ମୁଁ ଜାଣିଛି ଯେ,'' ମିକି ଆଖି ନଚେଇ କହିଲା, ''ଇଂଜେକ୍‌ସନ୍ ନା ?''

ଶଙ୍କରର ମୁହଁ କଠିନ ହୋଇଗଲା। ଅପର୍ଣ୍ଣା ଅପଲକ ଦୃଷ୍ଟିରେ ପ୍ରଶାନ୍ତଙ୍କ ମୁହଁର ଭଙ୍ଗୀକୁ ଲକ୍ଷ୍ୟ କରୁଥିଲା। ଏହାପରେ କି ନିଜ ଦୋଷକୁ ଲୁଚେଇ ପାରିବେ ସିଏ ? ଚାରିଟା ଦିନ ସେମାନଙ୍କ ଆଖି ଆଢୁଆଳରେ ଯାହା ଯାହା କରି ଆସିଥିଲେ, ତାକୁ କ'ଣ ଆଉ ଆଡେଇ ରଖି ପାରିବେ ? ସେ ଭାବିଥିଲେ ପିଲାଙ୍କୁ ଚୁପ୍ କରେଇ ଦେଇ ମା, ବାପାଙ୍କଠାରୁ କଥାଟା ଲୁଚେଇ ଦେବେ। ଏବେ... ?

ନା, କୌଣସି ଭାବାନ୍ତର ହେଲା ନାହିଁ ପ୍ରଶାନ୍ତଙ୍କର। ବରଂ ସାମାନ୍ୟ ଲଜ୍ଜିତ ଭାବରେ ହସିଦେଲେ ସେ। ଏମିତି ଧରା ପଡିଯିବା ପରେ ପୁଣି ହସ ! ଓଃ ସାଙ୍ଘାତିକ ଲୋକ ତ ! ଏଇକ୍ଷିଣା କେତେ କ'ଣ ମିଛ ବାହାନା ପାଟିରୁ ବାହାରି ଆସିବ।

ସେମିତି ହସୁ ହସୁ ପ୍ରଶାନ୍ତ କହିଲେ, ''ଏଇ ଯା। ମିକି, ତୁ କହିଦେଲୁ ? ଆମ ସିକ୍ରେଟ୍‌ଟା ଯେ ପଦାରେ ପଡିଗଲା।''

ଶଙ୍କର ଆଉ ରହିପାରିଲା ନାହିଁ। ରୂଢ ଭାବରେ କହିଲା, “ଏମିତି କି ସିକ୍ରେଟ୍ ଯେ ଆମେ ଶୁଣି ପାରିବୁ ନାହିଁ?”

ଶଙ୍କରର ସ୍ୱରର ରୂଢତା ଠିକ୍ ଧରି ପାରି ନ ଥିଲେ ପ୍ରଶାନ୍ତ। ସେଇମିତି ହସି ହସି କହିଲେ, “ଆଉ କ'ଣ ଲୁଚେଇ ହେବ?... ମୁଁ ସାଧାରଣତଃ କାହାକୁ କହେ ନାହିଁ, ଏମିତି ସବୁଦିନ ଇଂଜେକ୍ସନ୍ ନେବା କଥା ଶୁଣିଲେ ଅନେକ ବିବ୍ରତ ହୋଇ ପଡନ୍ତି।”

ନିଜର ଏତେବଡ ଗୋଟାଏ କୁ-ଅଭ୍ୟାସକୁ କ'ଣ ଏମିତି ହାଲୁକା ଭାବରେ କୁହାଯାଇପାରେ? ଅପର୍ଣ୍ଣା ଚିନ୍ତିତ ଭାବରେ ପଚାରିଲା, “ଇଂଜେକ୍ସନ୍?”

ପ୍ରଶାନ୍ତ ସାଙ୍ଗରେ ଆଣିଥିବା ଛୋଟ ଚମଡା ବ୍ୟାଗ୍‌ରୁ ଇଂ [illegible] ପକେଟ୍‌ରେ ରଖିଲେ। “ଲଣ୍ଡନ୍‌ରେ ଏମିତି ସବୁଦିନ ଇଂଜେକ୍ସନ୍ ଦେବା ପାଇଁ ଲୋକ କେଉଁଠୁ ଯୋଗାଡ କରିଥାଆନ୍ତି? ସେଥିପାଇଁ ନିଜେ ନିଜେ ରାତିରେ ଖାଇବା ଆଗରୁ ଇନ୍‌ସୁଲିନ୍ ଇଂଜେକ୍ସନ୍ ନେବାର ଅଭ୍ୟାସଟା କରିନେଇଛି। ମୁଁ ଭୀଷଣ ଡାଏବେଟିକ୍ ତ।”

ଲମ୍ବା ଲମ୍ବା ପାଦ ପକେଇ ଚାଲିଗଲେ ପ୍ରଶାନ୍ତ। ବାଁହାତର ବିଶି ଆଙ୍ଗୁଠିକୁ କାମୁଡୁ କାମୁଡୁ ଅପର୍ଣ୍ଣା ଶଙ୍କର ଆଡେ ଚାହିଁ ଫିକ୍ କରି ହସି ଦେଲା। □□

# ନୈବେଦ୍ୟ

ଖାଇ ବସିବା ବେଳଠୁଁ ଅନୁପମ ଲକ୍ଷ୍ୟ କରୁଛି ପୂର୍ଣ୍ଣିମା କେମିତି ଅନ୍ୟମନସ୍କ। ସେଇ ହସ୍‌ପିଟାଲରୁ ଫେରିବା ପରଠାରୁ ହିଁ ଏମିତି। ହୁଏତ ସେ କେଉଁ ରୋଗୀ ବିଷୟରେ ଭାବି ହେଉଛି ବା ଆସନ୍ତା ସେମିନାର୍‌ରେ ପଢ଼ିବା ପାଇଁ ସ୍ଥିର କରିଥିବା ପେପର୍ ଚିନ୍ତା ମୁଣ୍ଡରେ ରହିଛି। କିନ୍ତୁ ଅନୁପମର ମନ କହୁଥିଲା ଘଟଣାଟା ଏତେ ସରଳ ନୁହଁ। ଯେତେ କ୍ଳାନ୍ତ ହେଲେ ବି ଶ୍ୱେତା କଥାର ପୁଣି ଜବାବ ପୂର୍ଣ୍ଣିମା ଦେବ ନାହିଁ, ଏହା କ'ଣ କେବେ ହୋଇଛି? ଝିଅର ଅଧାପିଲାଳିଆ ପ୍ରଶ୍ନ ସେଇମିତି ପ୍ରଶ୍ନରେ ହିଁ ରହିଯାଉଛି।

''ଆଜି ହସ୍‌ପିଟାଲରେ କାହା ସାଙ୍ଗରେ ଝଗଡା କରି ଆସିଛ ନା କ'ଣ?'' ଅନୁପମ ଆଉ ରହି ନ ପାରି ପଚାରି ଦେଲା।

''ଏଁ?'' ପୂର୍ଣ୍ଣିମା ମୁଣ୍ଡ ଟେକିଲା, ''ନାଇଁ ଯେ... ଜାଣ, ବେଳେବେଳେ ଇଚ୍ଛା ହେଉଛି ସବୁ ଛାଡିଛୁଡ଼ି ଦେଇ ତୁମ ସାଙ୍ଗରେ କ୍ଲିନିକ୍‌ରେ ବସିଯିବି।''

ଅନୁପମ ମନେ ମନେ ସାମାନ୍ୟ ଆଶ୍ଚର୍ଯ୍ୟ ହେଲା। କିନ୍ତୁ ଉପରେ ସେ ଭାବ ନ ଦେଖାଇ ହସିକରି କହିଲା, ''ୟୁ ଆର୍ ଅଲ୍‌ଉଏଜ୍ ୱେଲ୍‌କମ୍ ମ୍ୟାଡ୍‌ମ୍।''

''ଓହୋ ମାମା, ଆସ।'' ଶ୍ୱେତା ପୂର୍ଣ୍ଣିମାର ହାତ ଧରି ଟାଣିବା ଆରମ୍ଭ କଲାଣି।

''ଆସୁଛିରେ ମା,'' ପାଣି ଗ୍ଲାସେ ଢ଼କ ଢ଼କ କରି ପିଇ ଦେଇ ଶ୍ୱେତାକୁ କାଖେଇ ଉଠିଗଲା ସେ।

ଅନୁପମ ମୁହଁରେ ହସ ଖେଳିଗଲା। ଏଇଟା ମା' ଝିଅଙ୍କର ନିତିଦିନିଆ ରୁଟିନ୍। ସ୍କୁଲରୁ ଫେରି ଖାଇଦେଇ ଶ୍ୱେତା ଅପେକ୍ଷା କରି ବସିଥିବ, କେତେବେଳେ ମାମା ହସ୍‌ପିଟାଲ୍‌ରୁ ଫେରିବ। ଆଉ ପୂର୍ଣ୍ଣିମା ଖାଇ ସାରିବା କ୍ଷଣି ତାକୁ ଟାଣି ନେଇଯିବ ଘର ଭିତରକୁ। ମାମାଠୁଁ ଗୋଟିଏ ଗପ ଶୁଣି ତା'ରି କୋଳରେ ଶୋଇଯିବ। ସବୁଦିନିଆ ଅଧଘଣ୍ଟିଆ ପ୍ରୋଗ୍ରାମ। ଏଠି ଅନୁପମର କୌଣସି ଭୂମିକା ନାହିଁ।

ନା, ତା' ମନରେ ଏଥିପାଇଁ କେବେ ଖଟ୍‌କା ଲାଗି ନାହିଁ। କେତେ ସମୟ ବା ପୂର୍ଣ୍ଣିମା ପାଏ ଝିଅ ସାଙ୍ଗରେ କଟାଇବାକୁ! ଶ୍ୱେତା ଶୋଇ ପଡିବାକ୍ଷଣି ସେ ପୁଣି ବାହାରିଯିବ ହସ୍‌ପିଟାଲ। ଆଉ ଅନୁପମ ତ କ୍ଲିନିକ୍ ଯାଉ ଯାଉ ସନ୍ଧ୍ୟା ପାଞ୍ଚଟା, ସାଢ଼େ ପାଞ୍ଚଟା।

ଆଜି ଯେ ପୂର୍ଣ୍ଣିମା ତା' ସାଙ୍ଗରେ ମିଶିକରି ପ୍ରାଇଭେଟ୍ ପ୍ରାକ୍‌ଟିସ୍ କରିବା କଥା କହିଲା !

ଆଶ୍ଚର୍ଯ୍ୟ !!

ଅନୁପମ ପ୍ରଥମ ବର୍ଷ ମେଡ଼ିକାଲ ପଢିବା ବେଳରୁ ପୂର୍ଣ୍ଣିମାକୁ ଜାଣିଛି। ପରିଚୟ ହେବାର ସେହି ପ୍ରଥମ ଦିନ ହିଁ ସେ ଜାଣି ପାରିଥିଲା ଏ ଝିଅଟି ଭିନ୍ନ। ଅନ୍ୟ ଦଶଜଣଙ୍କ ଭଳି ନୁହଁ। ସେଥିପାଇଁ ହୁଏତ ତାକୁ ଶ୍ୟାମଳ ରଙ୍ଗର ସେଇ ପତଳୀ ଝିଅଟି ଭାରି ଭଲ ଲାଗି ଯାଇଥିଲା। ସାଙ୍ଗମାନେ ଥଟ୍ଟା କରିଥିଲେ, ହସିଥିଲେ। ଅନୁପମ ଭଳି ହ୍ୟାଣ୍ଡସମ୍ ପିଲା, ମା' ବାପାଙ୍କର ଗୋଟିଏ ବୋଲି ପୁଅ- ଇଚ୍ଛା କରିଥିଲେ ଆକାଶର ଚାନ୍ଦକୁ ତୋଳି ଆଣି ପାରିଥାଆନ୍ତା। ସେ ପୁଣି ଜାବୁଡି ଧରୁଛି ପାଦତଳର ମୁଠାଏ ମାଟିକୁ!

ଅନୁପମ କାହାକୁ କିଛି କୈଫିୟତ ଦେଇ ନ ଥିଲା। ଏଇଟା ତା'ର ବ୍ୟକ୍ତିଗତ ନିର୍ଣ୍ଣୟ, ତା' ନିଜ ଜୀବନକୁ ନେଇ। ସେ କ'ଣ ଅନ୍ୟମାନଙ୍କର ସମାଲୋଚନା ଶୁଣି ନିଷ୍ପତ୍ତି ବଦଳେଇ ଦେବ?

ନା, ଆଦୌ ନୁହଁ।

ପୂର୍ଣ୍ଣିମା ଅତି ବ୍ରିଲିୟାଣ୍ଟ, ଏକଥା ତ କେହି ଅସ୍ୱୀକାର କରି ପାରିବେ

ନାହିଁ। ସ୍କୁଲ ଜୀବନରେ ପ୍ରଥମ ଛଡ଼ା କେବେ ଦ୍ୱିତୀୟ ହୋଇନାହିଁ। ମେଡ଼ିକାଲ କଲେଜରେ ମଧ୍ୟ ତା'ର ସେହି ଗୌରବ ଅକ୍ଷୁଣ୍ଣ ରହିଲା। ସମସ୍ତଙ୍କୁ ଟପି ଯାଇ ସେ ପ୍ରଥମ ହେଲା। ସ୍ୱର୍ଣ୍ଣ ପଦକ ପାଇଲା। ଅନ୍ୟମାନେ ହୁଏତ ଭାବିଥିଲେ, ପୂର୍ଣ୍ଣିମାର ବୌଦ୍ଧିକତା ଅନୁପମକୁ ତା' ପ୍ରତି ଆକର୍ଷିତ କରିଛି। କେହି କେହି ପଚାରି ମଧ୍ୟ ଦେଇଥିଲେ। ଅନୁପମ କେବେ କାହାକୁ କିଛି କହିନାହିଁ, କେବଳ ହସି ଦେଇଛି ମାତ୍ର।

ଅସଲ କାରଣଟା ଅନ୍ୟମାନଙ୍କୁ କହିବାର କ'ଣ କୌଣସି ଆବଶ୍ୟକତା ଥିଲା ? କେବଳ ସେ ନିଜେ ଜାଣିଲେ ଇ ଯଥେଷ୍ଟ।

ବାସ୍ତବରେ ପୂର୍ଣ୍ଣିମାର ଶ୍ୟାମଳ ତ୍ୱଚା ତଳେ ସେ ଆବିଷ୍କାର କରିଥିଲା ଏକ ଅତି ଉଜ୍ଜଳ ଚରିତ୍ର, ପରିଷ୍କାର ହୃଦୟ ଏବଂ ସେଇଠି ଚକ୍ ଚକ୍ କରୁଥିଲା ଏକ ଆଦର୍ଶ।

ସେବା ମନୋବୃତ୍ତିର।

ଅନେକ ହୁଏତ ସେବା ମନୋବୃତ୍ତି ନେଇ ଡାକ୍ତରୀ ପଢନ୍ତି। କିନ୍ତୁ ପଢାସାରି ଚାକିରି ଆରମ୍ଭ କରିବାବେଳକୁ ସେ ଆଦର୍ଶର ଅର୍ଦ୍ଧେକ ଘୋରି ହୋଇଯାଇଥାଏ। ଆଉ ଯେଉଁ ଅଂଶଟି ରହିଥାଏ, ସେଇଟି ମଧ୍ୟ ଘର କରିବା, ଗାଡି କିଣିବା ନିଶାରେ ମାଡି ମକଚି ହୋଇ କେଉଁ କୋରଡ ଭିତରେ ପଶିଯାଏ।

କିନ୍ତୁ ଅନୁପମ ପ୍ରଥମରୁ ହିଁ ଜାଣିପାରିଥିଲା ପୂର୍ଣ୍ଣିମା ସେ ଦଳରୁ ଜଣେ ନୁହେଁ। ସେଥିପାଇଁ ହୁଏତ ଝିଅଟି ପ୍ରତି ତା' ମନରେ ଥିବା ସମ୍ମାନ ଶୀଘ୍ର ଭଲ ପାଇବାରେ ପରିଣତ ହୋଇଯାଇଥିଲା।

ନା, ତା' ପ୍ରେମ ଏକତରଫା ନ ଥିଲା। ପୂର୍ଣ୍ଣିମା ମଧ୍ୟ ଆକର୍ଷିତ ହୋଇ ପଡିଥିଲା ଏଇ ସବୁବେଳେ ମଜା ମଜା କଥା କହି ହସାଉଥିବା ଯୁବକଟି ପ୍ରତି। ଦୁଇ ଜଣଙ୍କର ଭଲ ପାଇବା ରୂପ ନେଲା ବିବାହରେ। ଏମ୍.ଡି. କରିବା ବେଳେ ସମସ୍ତଙ୍କର ଆଶୀର୍ବାଦ ନେଇ ନୂତନ ଜୀବନ ଆରମ୍ଭ କଲେ ଅନୁପମ ଓ ପୂର୍ଣ୍ଣିମା।

ସାତ ବର୍ଷ ହୋଇଗଲା। ଏଇ ତ କାଲି ପରି ଲାଗୁଛି !!

ଅନୁପମ ମୁହଁରେ ହସ ଖେଳିଗଲା। ସେ କିଛି ଭୁଲ ନିଷ୍ପତ୍ତି ନେଇ ନାହିଁ। ଆଉ କେଉଁ ସୁନ୍ଦରୀକୁ ବାହା ହୋଇଥିଲେ ସେ କ'ଣ ସତରେ ଏତେଟା ସୁଖୀ

ହୋଇପାରି ଥାଆନ୍ତା ?

ଚାକିରି ଆରମ୍ଭ କରିବା ପରେ ମଧ୍ୟ ପୂର୍ଣ୍ଣିମା ତା'ର ଆଦର୍ଶ ପଥରୁ ବିଚ୍ୟୁତ ହୋଇ ନଥିଲା । ଯେତେବେଳେ ତାକୁ ଭଲ ଭଲ ପ୍ରାଇଭେଟ୍ ହସ୍‌ପିଟାଲରୁ ମୋଟା ଦରମାର ଚାକିରି ଅଫର ମିଳିଥିଲା, ସେତେବେଳେ ସେ ବସ୍ତୁବାଦୀ ମୋହରେ ଭାସି ଯାଇ ନଥିଲା ।

ଟଙ୍କା ତ ଅପର୍ଯ୍ୟାପ୍ତ ମିଳିବ । କିନ୍ତୁ ରିସର୍ଚ୍ଚ ?

ମେଡ଼ିକାଲ କଲେଜ ସହିତ ଯୋଡା ହସ୍‌ପିଟାଲ୍‌ରେ ଯୋଗ ଦେଲା ପୂର୍ଣ୍ଣିମା । ଆଉ ପ୍ରାୟ ସେଇ ଏକା ସମୟରେ ଅନୁପମ ତା' ବାପାଙ୍କ ପଲିକ୍ଲିନିକ୍‌ରେ ପ୍ରାଇଭେଟ୍ ପ୍ରାକ୍ଟିସ୍ ଆରମ୍ଭ କଲା । ମଝିରେ ମଝିରେ ସେ ଯେ ପୂର୍ଣ୍ଣିମାକୁ ତା' ସହିତ ମିଶି ପ୍ରାକ୍ଟିସ୍ କରିବା କଥା କହି ନାହିଁ ତା' ନୁହଁ; କିନ୍ତୁ ଜୋର୍ ଦେଇ ନୁହଁ । ପୂର୍ଣ୍ଣିମାର ଯେ ଏଥିରେ ମତ ନାହିଁ, ଏକଥା କ'ଣ ତା'ର ଅଜଣା ? ପୂର୍ଣ୍ଣିମା ପାଇଁ ରୋଗୀ ସେବା ସାଙ୍ଗରେ ସେମିନାର, ରିସର୍ଚ୍ଚ, କନଫରେନ୍‌ସ- ଏସବୁର ମୂଲ୍ୟ ବହୁତ ବେଶୀ ।

ତଥାପି ଏହି ବ୍ୟସ୍ତ ଜୀବନରୁ ସେ ଚେଷ୍ଟା କରି ଅଧଘଣ୍ଟାଏ କାଢି ନିଏ କେବଳ ଝିଅ ପାଇଁ ।

ଅନୁପମ ମା' ଝିଅଙ୍କର ଏହି ନିଜସ୍ୱ ସମୟ ଟିକକୁ ସମ୍ମାନ ଦିଏ । ଦାଣ୍ଡ ଘରେ ପତ୍ରିକା ଧରି ବସେ, କେବେହେଲେ ବିରକ୍ତ କରେ ନାହିଁ । ଘରେ କାମ କରୁଥିବା ସ୍ତ୍ରୀଲୋକ କମଳାକୁ ମଧ୍ୟ ସେ କହି ରଖିଛି ଏଇ ସମୟରେ ସେ ଯେମିତି ପୂର୍ଣ୍ଣିମାକୁ 'ଆଜି ରାତିରେ କ'ଣ ରନ୍ଧା ହେବ ?' ବା 'ତେଲ ସରି ଆସିଲାଣି' ଏଭଳି କଥାରେ ବିବ୍ରତ ନ କରେ ।

ଅନୁପମର ଚିନ୍ତାରେ ବ୍ୟାଘାତ ସୃଷ୍ଟି କରି କଲିଂବେଲ୍ ବାଜିଲା । ଶୋଇବା ଘର ଆଡୁ ଥରେ ଆଖି ବୁଲେଇ ଆଣି କବାଟ ଖୋଲିଲା ସେ ।

ପୁରନ୍ଦର ।

ହସ୍‌ପିଟାଲର ପିଅନ ଏଇ ପୁରନ୍ଦର । ଆଉ ତା' ପାଖରେ କଡିକିଆ ହୋଇ ଠିଆ ହୋଇଛି ଖଦଡ ପିନ୍ଧା ମଧ୍ୟବୟସ୍କ ଲୋକଟିଏ ।

''ନମସ୍କାର ଆଜ୍ଞା । ମ୍ୟାଡମ୍ ନାହାନ୍ତି କି ?'' ପୁରନ୍ଦର ମହୁବୋଳା ସ୍ୱରରେ ପ୍ରଶ୍ନକଲା ।

ଅଜାଣତରେ ଅନୁପମର ମୁହଁ ଟିକିଏ କଠିନ ହୋଇଗଲା। କାହିଁକି କେଜାଣି ହସ୍‌ପିଟାଲର ଏଇ ଲୋକଟିକୁ ସେ ଆଦୌ ସହି ପାରେ ନାହିଁ। କଳା ହୋଇ ଗେଡା ଲୋକଟିଏ, ପାଣ୍ଠଫୁଟ ହେବ କି ନ ହେବ। ଅଥଚ ଆଖିର ଚାହାଣୀରେ ସଂସାର ଯାକର ଧୂର୍ତ୍ତତା ଭରି ରହିଛି। କିଏ କେଜାଣି କହୁଥିଲା ଯେ ହସ୍‌ପିଟାଲ୍‌ରେ ସବୁ କାଗଜପତ୍ର କାମ ଶୀଘ୍ର କରେଇ ଦେବାର ପ୍ରତିଶ୍ରୁତି ଦେଇ ଅଶିକ୍ଷିତ ଗରୀବ ରୋଗୀଙ୍କ ପକେଟରୁ ପଇସା ଝଡାଏ ସେ।

"ଆଜ୍ଞା ମ୍ୟାଡ଼ମ୍..." ଆଉ ଥରେ ଦୋହରେଇଲା ପୁରନ୍ଦର।

"ହଁ, ଅଛନ୍ତି, ଝିଅକୁ ଶୁଆଉଛନ୍ତି। କ'ଣ ଦରକାର ଥିଲା କି?"

"କିଛି ନାହିଁ ଆଜ୍ଞା, ମୋ ଗାଁରୁ ଗୁଆଘିଅ କିଛି ଆସିଥିଲା ଯେ ଭାବିଲି ମ୍ୟାଡ଼ମ ଯଦି ରଖନ୍ତେ..."

ଅନୁପମ କିଛି କହିବା ପୂର୍ବରୁ ଭିତରୁ ପୂର୍ଣ୍ଣିମା ବାହାରି ଆସିଲା।

"କଥା କ'ଣ ପୁରନ୍ଦର?"

ଖବରକାଗଜ ଗୁଡା ହୋଇଥିବା ଗୋଟିଏ ବଡ ହର୍ଲିକ୍‌ସ ବୋତଲ ବଢେଇ ଦେଉ ଦେଉ ପୁରନ୍ଦର କହିଲା, "ଏ ମୋ ଦାଦି ପୁଅ ଭାଇ, ଆଜ୍ଞା। ଗାଁରେ ତା'ର ବହୁତ ଗାଈ ବାଛୁରୀ, ଘର ତିଆରି ଗୁଆ ଘିଅ ନେଇ ଆସିଛି, ଆପଣ ଯଦି..."

"ଠିକ୍ ଅଛି। କେତେ ଦାମ୍?" ପୂର୍ଣ୍ଣିମା ଥଣ୍ଡା ଗଳାରେ ପଚାରିଲା।

ପୁରନ୍ଦର ଯେମିତି ତଟସ୍ଥ ହୋଇଗଲା। ଥ ଥ ମ ମ ହୋଇ କହିଲା, "ଆଜ୍ଞା, ଦାମ୍? ଛି ଛି ଏ କି କଥା ମ୍ୟାଡ଼ମ୍! ଘର ତିଆରି ଘିଅ। ମୁଁ ଅଳ୍ପ ଟିକିଏ ଘେନି ଆସିଲି। ଆପଣ ଦାମ୍ କଥା କହୁଛନ୍ତି? ...ଛି ଛି।"

ପୂର୍ଣ୍ଣିମା ସ୍ଥିର ଦୃଷ୍ଟିରେ ତାକୁ ଟିକିଏ ଦେଖିଲା। "ଆଉ କିଛି କହିବ?"

ମୁଣ୍ଡ ତଳକୁ ନୁଆଁଇ ନେଇ ହେଁ ହେଁ ହୋଇ ପୁରନ୍ଦର କହିଲା, "ମ୍ୟାଡମ୍, ମଦନାଇ ସ୍ତ୍ରୀଟା କିଛି ମାସ ହେଲାଣି ଭାରି ଭୋଗୁଛି। ଗାଁ ପାଖ ସ୍ୱାସ୍ଥ୍ୟ କେନ୍ଦ୍ରରେ ଦେଖାଇଥିଲା। ଡାକ୍ତର କହୁଛନ୍ତି ରକ୍ତ କମ୍। ପେଟରେ ପିଲା ପ୍ରତି ଭୟ। ଆପଣ ଯଦି..."

"କାଲି ମୋର ଓ.ପି.ଡି। ତାଙ୍କୁ ଆସିବାକୁ କହିବ।"

ସ୍ୱରକୁ ଆଉ ଟିକିଏ ନୁଆଁଇ ପୁରନ୍ଦର କହିଲା, "ବୁଧବାର ଦିନର ଯୋଉ

ଭିଡ ଆଜ୍ଞା। ତା' ନମ୍ବର ଆସୁ ଆସୁ ହୁଏତ ଦି'ପହର ଗଡ଼ିଯିବ। ପୁଣି ଶନିବାର ଦିନକୁ ନମ୍ବର ପଡ଼ିବ। ଆପଣ ଯଦି ପ୍ରଥମେ...''

ତଳ ଓଠ ଉପରେ ଦାନ୍ତର ଚାପ ଦେଇ ପୂର୍ଣ୍ଣିମା ଗମ୍ଭୀର ହୋଇଗଲା। ମୁହୂର୍ତ୍ତେ ସେଇମିତି ଚୁପ୍ ରହି ହଠାତ୍ ଘର ଭିତରକୁ ଚାଲିଗଲା ସେ। ପର୍ସରୁ ପଚାଶ ଟଙ୍କାର ନୋଟ୍‌ଟିଏ ଆଣି ପୁରନ୍ଦର ହାତକୁ ବଢ଼େଇ ଦେଇ ବେଶ୍ କଠିନ ସ୍ୱରରେ ସେ କହିଲା, ''ତୁମ ଭାଇଙ୍କୁ କାଲି ଓ.ପି.ଡି.କୁ ଆସିବାକୁ କହିବ। ତାଙ୍କ ନମ୍ବର ଯେତେବେଳେ ଆସିବ, ସେତିକିବେଳେ ହିଁ ମୁଁ ତାଙ୍କୁ ଦେଖିବି। ଆଉ ହଁ,'' ପୁରନ୍ଦରକୁ ତୀକ୍ଷ୍ଣ ଦୃଷ୍ଟିରେ ଚାହିଁଲା ସେ, ''ଆମ ଘରେ ଗୁଆ ଘିଅ ବା ସେଇଭଳି କିଛିର ବ୍ୟବହାର କମ୍। ଆଉ କେବେ ଏଇମିତି ଜିନିଷ ଧରି ଏଠିକୁ ଆସିବନି।''

କବାଟ ବନ୍ଦ କଲା ପୂର୍ଣ୍ଣିମା। ଅନୁପମ ସୋଫାରେ ବସି ପତ୍ରିକାଟିଏକୁ ଓଲଟାଉ ଓଲଟାଉ ସବୁ ଲକ୍ଷ୍ୟ କରୁଥିଲା। ତା'ରି ପାଖରେ ବସିପଡ଼ି ପୂର୍ଣ୍ଣିମା କହି ପକେଇଲା, ''ଦେଖୁଛ ଲୋକଟାର ସାହସ? ଘିଅ ବୋତଲ ଧରି ଆସିଛି କ'ଣ ନା ତା' ଭାଉଜକୁ ମୁଁ ଆଗ ଦେଖିବି। ଆଉ ଯେଉଁ ରୋଗୀମାନେ କେଉଁ ଦୂରଦୂରାନ୍ତରୁ ଆସି ଅପେକ୍ଷା କରି ରହିଛନ୍ତି...! ମଣିଷ କେତେ ବେଶୀ ହୀନ ହୋଇପାରେ!!''

ଅନୁପମ ହସିପକାଇଲା। ''ଗୁଆ ଘିଅ, ମିଠା, ଶାଢ଼ୀ ଏସବୁ ତ ଡାକ୍ତର ହେବାର ଫ୍ରିଞ୍ଜ ବେନିଫିଟ୍‌ସ। ଆଉ ତୁମ ଭଳି ନାଁ କରା ଗାଇନାକୋଲୋଜିଷ୍ଟ ହେଲେ କଥା ତ ନାହିଁ। ଖାଲି ଟିକିଏ କଣେଇ କରି ଚାହିଁଦିଅ ବାସ୍। ଘରେ ପର୍ବତ ପ୍ରମାଣ ଜିନିଷ ଗଦା ହୋଇଯିବ।''

ପୂର୍ଣ୍ଣିମା ଯଦି ଅନୁପମକୁ ଜାଣି ନଥାନ୍ତା, ତେବେ ନିଶ୍ଚୟ ବହୁତ ରାଗି ଯାଇଥାଆନ୍ତା। କିନ୍ତୁ ଉପରେ ଉପରେ ଯେତେ ଥଟ୍ଟା ମଜା କରୁ ନା କାହିଁକି ଅନୁପମ ଭଳି ସଚ୍ଚୋଟ, ଆଦର୍ଶବାଦୀ ମଣିଷ କେତେଜଣ ଅଛନ୍ତି?

ସ୍ୱାମୀ ମୁହଁକୁ ଚାହିଁ ସେ ଟିକିଏ ହସି ଦେଲା। ''ଫ୍ରିଞ୍ଜ ବେନିଫିଟ୍‌ସ ତ ପର କଥା। ଏବେ ନିଜ ଝାଳବୁହା ପଇସାରେ କିଣା ହୋଇଥିବା ଦାର୍ଜିଲିଙ୍ଗ ଚାହା କପେ ଚଳିବ?''

ଅନୁପମ ସାମ୍ନାକୁ ଝୁଙ୍କି ବସି ଚଟ୍ କରି ପଚାରି ଦେଲା, ''କାହା ଝାଳବୁହା

ପଇସା ? ମୋର ନା ତୁମର ? ତୁମର ଯଦି ହୁଏ, କୌଣସି ଆପତ୍ତି ନାହିଁ। ମୋର ହେଲେ ଭାବିବାକୁ ପଡ଼ିବ।''

ଗୋଟିଏ ସ୍ନିଗ୍ଧ ଚାହାଣୀରେ ଅନୁପମକୁ କୁତୁକୁତୁ କରେଇ ଦେଇ ପୂର୍ଣ୍ଣିମା ଉଠିଗଲା। ନିଜ ହାତରେ ଚାହା କରିଆଣି ଗୋଟିଏ କପ୍ ସ୍ୱାମୀ ହାତରେ ଧରେଇ ଦେଲା ସେ।

ଚାହାର ମିଠା ବାସ୍ନାରେ ଲୁଚିଯାଉଥିଲା କିଛି ସମୟ ଆଗର ଅସ୍ୱସ୍ତିକର ଘଟଣାଟା। ତଥାପି ପୂର୍ଣ୍ଣିମା ସେଇ କଥା ପକେଇଲା, ''ଜାଣ, ଏଇ ଭଳିଆ ଘଟଣା ପ୍ରାୟ ସବୁଦିନ ଦେଖି ଦେଖି ଆଉ ଭଲ ଲାଗୁନି। ...ଆଜି ଗୋଟିଏ ରୋଗୀ ଆସିଥିଲା। ଫାଷ୍ଟ ପ୍ରେଗ୍‌ନାନ୍‌ସି। କିନ୍ତୁ ଟ୍ରିପ୍‌ଲେଟ୍‌ସ ପେଟରେ। ଏମିତି ଏକାଠି ତିନିଟା ପିଲା ହେବା ଆମର ଏହା ଭିତରେ କେବେ ହୋଇନି। ମୁଁ ଭାବିଲି ଆମ ଷ୍ଟୁଡେଣ୍ଟମାନଙ୍କ ପାଇଁ ଏଇଟା ଗୋଟିଏ ବଡ ସୁଯୋଗ। ତେବେ ପେସେଣ୍ଟର ସ୍ୱାମୀ କହିଲା ଯେ ପ୍ରାଇଭେଟ୍ ରୁମ୍ ନ ମିଳିଲେ ସେ ସ୍ତ୍ରୀକୁ ଏଠି ରଖାଇବ ନାହିଁ। ରୁମ୍ ଖାଲି ଥିଲା। କିନ୍ତୁ ଅଧଘଣ୍ଟା ପରେ ଆଡମିନିଷ୍ଟ୍ରେଟର୍ ଫୋନ୍ କରି କହିଲେ ଯେ କୋଉ ମିନିଷ୍ଟରଙ୍କର ଭଉଣୀ ଆସିବେ। ତାଙ୍କୁ ରୁମ୍ ଦିଆଯିବ। ବାସ୍, ମୋ ପେସେଣ୍ଟକୁ ନେଇ ତା' ସ୍ୱାମୀ ପ୍ରାଇଭେଟ୍ ହସ୍‌ପିଟାଲକୁ ଚାଲିଗଲା।''

''କି ଆଶ୍ଚର୍ଯ୍ୟ ! ତୁମେ ଆଡ୍‌ମିନିଷ୍ଟ୍ରେଟରଙ୍କୁ କିଛି କହିଲ ନାହିଁ? ଥରେ ରୁମ୍ ଦେଇ ପୁଣି ମନା କରିଦେଲେ ?''

''ସେ ବି ନାଚାର ! ମୁଁ ନିଜେ ଯାଇ ପଚାରିଥିଲି। ସେ କ'ଣ କହିଲେ ଜାଣ ? ସେ କହିଲେ ଯେ ଯଦି ସେ ମିନିଷ୍ଟରଙ୍କ ଭଉଣୀଙ୍କୁ ରୁମ୍ ନ ଦିଅନ୍ତି, ତେବେ ତାଙ୍କର କୋଉ ଛୋଟ ଜାଗାକୁ ବଦଳି ହୋଇଯିବ। ଏ ମିଠା ଧମକ ସେ ପାଇ ସାରିଛନ୍ତି। ତାଙ୍କର ହୁଏତ ଆପତ୍ତି ନାହିଁ। ହେଲେ ଏଇ ସେଦିନ ବଦଳି ହୋଇ ଏଠିକୁ ଆସିଲେ। ତାଙ୍କ ପୁଅର ପୁଣି ସ୍କୁଲର ଶେଷ ବର୍ଷ। କେତେଟା ସ୍କୁଲ ବଦଳେଇବ ସିଏ ?...ଛାଡ। ଏମିତିଆ କଥା ସବୁ ପକେଇଲେ ବଡ ବେଶୀ ଡିପ୍ରେସ୍‌ଡ୍ ଲାଗିବ। ମୁଁ ଆସୁଛି। ରାଉଣ୍ଡର ବେଳ ହୋଇଗଲାଣି।'' ପୂର୍ଣ୍ଣିମା ତରବର ହୋଇ ବାହାରିଗଲା।

ସେଇ ଯେ ବାହାରିଗଲା, ଫେରୁ ଫେରୁ ରାତି ସାଢେ ସାତ। କ୍ଲିନିକ୍‌ରୁ

ଫେରିବା ବାଟରେ ଅନୁପମ ହିଁ ତାକୁ ଘରକୁ ନେଇ ଆସେ। ଘରେ ପଶୁ ପଶୁ ହିଁ ଶ୍ୱେତାର ବାହାନା ଆରମ୍ଭ ହୋଇଯାଏ। ''କାହିଁ ଏତେ ଡେରି କଲ? ...ମୋ ଚକଲେଟ୍ କାହିଁ? ଆଜି ମୁଁ ଦିଇଟା ଗପ ଶୁଣିବି।'' ଏମିତି କାହା ସାଙ୍ଗରେ କାହାର ତାଳ ନଥିବା କେତେ କଥା।

ଆଜି ମଧ୍ୟ ସେ ସେଇମିତି ଆରମ୍ଭ କରିଥିଲା। ତା'ରି କଥା ଶୁଣୁ ଶୁଣୁ ପୂର୍ଣ୍ଣିମା ଧୂଆଧୂଇ ହେଲା। ଲୁଗା ବଦଳେଇ ଆସିଲା।

ତା' ସାମ୍ନାରେ କଫି ଟେବୁଲ୍ ଉପରେ ଜଳଖିଆ ରଖୁ ରଖୁ କମଳା କହିଲା, ''ମା' ମ, ବୁଢାଟାଏ କିଏ ଦୁଇଥର ଆସି ଫେରିଲାଣି।''

''କୋଉ ବୁଢା?''

''ମୁଁ କି ଚିହ୍ନିଛି? କ'ଣ କହିଲା ନରସିଂହପୁରରୁ ନା କୋଉଠୁ ଆସିଛି। କୋଉ ମଲ୍ଲୀର ବାପ। କ'ଣ ଜାଣ ନାଁଟା କହିଲା- ସଦାଶିବ ନା ଗଦାଧର...''

''ଓହୋ'' ପୂର୍ଣ୍ଣିମା ଅନୁପମକୁ ଚାହିଁଲା, ''ଏ ସେଇ ମଲ୍ଲୀର ବାପା। କହୁ ନ ଥିଲି ସେଦିନ ମଲ୍ଲୀ କଥା। ଶାଶୁଘରେ...''

ଗରୀବ ଚାଷୀଟିଏ ଗଦାଧର ବିଶ୍ୱାଳ। ଗୋଟିଏ ବୋଲି ଝିଅ ତା'ର ମଲ୍ଲୀ। ବାହାଘରର ବାଇଶ ବର୍ଷ ପରେ ଜନ୍ମ ବୋଲି ସ୍ୱାମୀ ସ୍ତ୍ରୀ ଦୁଇଜଣ ଆଖିର ମଣି କରି ରଖିଥିଲେ ତାକୁ। ମଲ୍ଲୀ ଉଣେଇଶ ବର୍ଷର ହେବା ପରେ ଭଲ ଘର, ଭଲ ବର ଦେଖି ବାହା ମଧ୍ୟ ଦେଇଥିଲେ। ସବୁ ଠିକ୍ ଚାଲିଥିଲା। ଶାଶୁଘରେ ଆଦର ଯତ୍ନରେ ମଲ୍ଲୀ ଚଳୁଥିଲା। କିନ୍ତୁ ଗୋଟାଏ ବିଷୟ ନେଇ ସମସ୍ତେ ଟିକିଏ ମନସ୍ତାପରେ ଥିଲେ। ମଲ୍ଲୀ ପେଟର ପିଲା କେଇମାସ ଭିତରେ ନଷ୍ଟ ହୋଇଯାଉଥିଲେ। ବଡ ଡାକ୍ତରଖାନାରେ ଦେଖାଇବା ପରେ ଜଣାପଡିଲା ଯେ ମଲ୍ଲୀ ଦେହରେ କିଛି ଗୋଟିଏ ଅସୁବିଧା ଅଛି; ଯେଉଁଥି ପାଇଁ ସେ ନଅମାସ ଗର୍ଭ ସମ୍ଭାଳିବାକୁ ଅକ୍ଷମ। ଏକଥା ଜଣାପଡିବା ପରେ ହଠାତ୍ ମଲ୍ଲୀର ଆଦର କମିଗଲା। ତା' ଶାଶୁଘରେ ପୁଅକୁ ଆଉଥରେ ବାହା କରିବା କଥା ଚିନ୍ତା କରିବା ଆରମ୍ଭ କରିଦେଲେ। ଠିକ୍ ଏଇମିତିକା ସମୟରେ ମଲ୍ଲୀକୁ ନେଇ ଗଦାଧର ବିଶ୍ୱାଳ ଆସିଥିଲା ପୂର୍ଣ୍ଣିମା ପାଖକୁ। ଆଉ ପୂର୍ଣ୍ଣିମାର ଚିକିତ୍ସାରେ ଯତ୍ନରେ ପୁଅଟିଏ କୋଳରେ ଧରି ଦଶଦିନ ତଳେ ଗାଁକୁ ଫେରିଯାଇଛି।

ତେବେ? ପୁଣି ତା'ର କ'ଣ ଅସୁବିଧା ହେଲା କି? କିଛି ତ ସେମିତି

ହେବା କଥା ନୁହଁ। ପୂର୍ଣ୍ଣିମା ଟିକିଏ ଅନ୍ୟମନସ୍କ ହୋଇପଡ଼ିଲା।

କମଳା ପୁଣି ଆସି କବାଟ ପାଖରେ ଠିଆ ହେଲା।

''ମା' ମ, ସେଇ ବୁଢ଼ା ଆଉଥରେ ଆସିଛି।''

''ଆଚ୍ଛା, ମୁଁ ଆସୁଛି, ତୁ ତାକୁ ବସିବାକୁ କହ।''

ଦାଣ୍ଡରେ କେବେ କେମିତି ଘରକୁ ଚାଲି ଆସୁଥିବା ରୋଗୀଙ୍କ ପାଇଁ ବେଞ୍ଚ ପଡ଼ିଛି। ଅଥଚ ସେଇ ବେଞ୍ଚଠାରୁ ଦୂରରେ କାନ୍ଥ ସାଙ୍ଗରେ ପ୍ରାୟ ମିଶିଯାଇ ମାଟିରେ ବସିଛି ଗଦାଧର ବିଶ୍ୱାଳ। ଅଧା ମଇଳା ଧୋତି ସାଙ୍ଗରେ ଠାଏ ଠାଏ କଣା ହୋଇଯାଇଥିବା ଗଞ୍ଜିଟିଏ। କାନ୍ଧରେ ଚଦର। ପାଖରେ ମଇଳା କନା ଗୁଡ଼ା ହୋଇ ପୁଟୁଳିଟିଏ।

ପୂର୍ଣ୍ଣିମାକୁ ଦେଖି ଉଠି ଆସି ଅଣ୍ଟା ବାଙ୍କି ପ୍ରଣାମ କଲା ଗଦାଧର, ''ମା'... ଡାକ୍ତରାଣୀ ମା' ମୋର'' ତଣ୍ଟି ଢକେଇ ଆସୁଛି। ଆଖି ଦୁଇଟାରେ ପାଣି ଜମି ଆସିଲାଣି।

''କ'ଣ ହେଲା ?'' ସାମାନ୍ୟ ବ୍ୟସ୍ତ ଗଳାରେ ପୂର୍ଣ୍ଣିମା ପଚାରିଲା, ''ଝିଅ ନାତି ଭଲ ଅଛନ୍ତି ତ ?''

''ହଁ ମା' ସବୁ ଭଲ।'' ଚଦରରେ ଆଖି ପୋଛିଲା ଗଦାଧର, ''ମା' ଗୋ, ତମ ଯୋଗୁ ମୋ ଝିଅର ଭାଗ୍ୟ ଫେରିଲା। ତା' ଶାଶୁଘର ଲୋକ ଆସିଥିଲେ। କେତେ ଆଦର। କେତେ ଦରବ ନେଇ ଆସିଥିଲେ ସେମାନେ। ଶାଶୁ ତ ତା' ପାଖ ଛାଡୁ ନାହାନ୍ତି। ସବୁ ତମ ପାଇଁ ମା'।''

''ଆଚ୍ଛା ଆଚ୍ଛା ଠିକ୍ ଅଛି।'' ପୂର୍ଣ୍ଣିମା ସ୍ୱସ୍ତିର ନିଶ୍ୱାସ ନେଲା। ଏଇ ଖବର ତେବେ ଦେବାକୁ ବୁଢ଼ା ଆସିଥିଲା ?

ଆହା କି ସରଳିଆଟେ ସତରେ।

''ହଉ ମଉସା, ତୁମେ ଏବେ ଯାଅ। ମୁଁ ଯାହା ଯାହା କହିଥିଲି କରିବ। ନାତିର ଅଯତ୍ନ କରିବ ନାହିଁ। ମାସେ ପରେ ଝିଅକୁ ଡାକ୍ତରଖାନାକୁ ଆଣି ମତେ ଦେଖାଇବ।'' ପୂର୍ଣ୍ଣିମା ନରମ ସ୍ୱରରେ କହିଲା। କେବଳ ଏତିକି ଖବର ଦେବା ପାଇଁ ଜଣେ ଏତେ ଗୁଡ଼ାଏ ବସ୍ ଖର୍ଚ୍ଚ କରି ପକେଇଲା ! ଗରୀବ ଚାଷୀଟିଏ, କେତେ ବା ଆୟ ?

ଆହା !

ପୂର୍ଣ୍ଣିମା ଭିତରକୁ ଯିବା ପାଇଁ ଗୋଡ ବଢେଇଲା। ଗଦାଧର କିନ୍ତୁ ଉଠିଲା ନାହିଁ।

''ମା'...'' କେମିତି ମିଳେଇ ଯାଇ କହି ଉଠିଲା ସେ। ପୂର୍ଣ୍ଣିମା ରହିଗଲା, ''ହଁ, କ'ଣ ହୋଇଛି କି?''

ଏଥର ଗଦାଧର ସାହସ ପାଇଲା। ଉଠି ଆସି ପାଖରେ ଥିବା ମଇଳା ପୁଟୁଳିଟାକୁ ପୂର୍ଣ୍ଣିମା ପାଦ ତଳେ ରଖିଦେଲା। ''ମା, ତମ ପାଇଁ ଏ ବୁଢା ପୁଅ ଏଇଟା ନେଇ କରି ଆସିଛି। ତମେ ଗ୍ରହଣ କର ମା'।''

ହଠାତ୍ ପୃଥିବୀଟା କ'ଣ ସୂର୍ଯ୍ୟ ଚାରିପାଖରେ ଘୂରୁ ଘୂରୁ ମୁହୂର୍ତ୍ତେ ସ୍ତବ୍ଧ ହୋଇଗଲା କି?

ପୂର୍ଣ୍ଣିମା ଯେମିତି କିଛି ଶବ୍ଦ ଶୁଣିପାରୁ ନାହିଁ, କିଛି କଥା ବୁଝିପାରୁ ନାହିଁ। ଦିନ ଯାକର ଘଟଣା ସବୁ ଏକାଠି ହୋଇ କେମିତି ଅଣନିଶ୍ୱାସୀ କରି ପକାଉଛନ୍ତି ତାକୁ।

ଶେଷରେ, ଶେଷରେ ଏଇ ସରଳ ବୁଢାଟି ମଧ...

ପୂର୍ଣ୍ଣିମାର ନିଜ ଉପରେ ସନ୍ଦେହ ହେଲା। ସତରେ କ'ଣ ତା' ଆଖିରେ, ତା' ବ୍ୟବହାରରେ ଗୋଟିଏ ଲୋଭୀ ସତ୍ତା ସବୁବେଳେ ଝଲମଲ କରୁଛି। କାହିଁକି, ତେବେ କାହିଁକି ଏମିତି?

ଏ ଗଦାଧର ବିଶ୍ୱାଳ ପୁଣି ଏତେଟା ସାହସ କଲା! କେମିତି?

ଖୁବ୍ କମ୍ ରାଗୁଥିବା ପୂର୍ଣ୍ଣିମାର ଦେହ ଭିତରଟା ଯେମିତି ଗୋଳେଇ ହୋଇଗଲା। ମୁଣ୍ଡ ଭିତରେ ବିସ୍ଫୋରଣଟାଏ ହୋଇଗଲା କି? ସେ ଚିତ୍କାର କରି ଉଠିଲା, ''ଚାଲିଯାଅ। ଚାଲିଯାଅ ଏଠୁ। ନେଇଯାଅ ତୁମର ଜିନିଷ ସବୁ। ତୁମର ସାହସ କେମିତି ହେଲା?''

ସ୍ୱୀର ପାଟିରେ ଭିତରୁ ଅନୁପମ ଉଠି ଆସିଲା।

''କ'ଣ ହୋଇଛି?''

ତଟସ୍ଥ ଗଦାଧର ଦୂରକୁ ଛିଟିକି ଯାଇଛି ସେତେବେଳକୁ। ତାକୁ ଓ ତା' ପାଖରେ ଥିବା ପୁଟୁଳି ଦେଖି ଅନୁପମ କିଛି କିଛି ଅନୁମାନ କରିପାରୁଥିଲା।

ସେ କଠିନ ସ୍ୱରରେ ଗଦାଧରକୁ ପୁଣି ପଚାରିଲା, ''କ'ଣ ହୋଇଛି? କ'ଣ ନେଇକରି ଆସିଛ? କାହିଁକି ତୁମେ ସବୁ ଏମିତି କର?''

ହାତ ଯୋଡି ପ୍ରାୟ କାନ୍ଦ କାନ୍ଦ ହୋଇଗଲା ଗଦାଧର, ''ରାଗନି ବାବୁ, ରାଗନି ।''

ଥର ଥର ହାତରେ ପୁଟୁଳି ଖୋଲୁ ଖୋଲୁ ସେ କହିପକେଇଲା, ''ହୀରା ଜହରତ କାହୁଁ ପାଇବି ବାବୁ ? ଘର ବାଡିଆଡେ ପାଟକପୁରା କଦଳୀ ଗଛଟାଏ । କେବେ ଛାଣ ଲଗେଇଥିଲି । ଏତେଦିନକେ ପ୍ରଥମ କାନ୍ଦି ପଡିଲା । ମଲ୍ଲୀ ମା' ଆଜି ସେଇଟାକୁ ବିକ୍ରି କରିବାକୁ ବଜାରକୁ ନେଇ ଯାଉଥିଲା । ମୁଁ କହିଲି, 'ଗଛର ପ୍ରଥମ ଫଳ । ମତେ କେଇଟା ଦେ, ମୁଁ ଡାକ୍ତରାଣୀ ମା'କୁ ଦେଇ ଆସିବି' । ସେଇ ଛଅଟା କଦଳୀ ନେଇ ଆସିଛି ବାବୁ, ମୋ ମା' ପାଇଁ ।''

ପୁଟୁଳି ଖୋଲା ସରିଥିଲା ସେତିକି ବେଳକୁ । ଦୁଇ ହାତରେ ନୈବେଦ୍ୟ ଦେବା ଭଙ୍ଗୀରେ ଗଦାଧର ବିଶ୍ୱାଳ ଟେକି ଧରିଥିଲା ଛଅଟି ପାଚିଲା ପାଟକପୁରା କଦଳୀ । □□

# ଅନ୍ତଃସ୍ୱର

ଦୁଇ ବର୍ଷ ନିକୁଛିଆ ଭଡ଼ା ଘରେ ରହିବା ପରେ ବିଭୂଦତ୍ତଙ୍କୁ କ୍ୱାଟର୍ ମିଳିଲା। ପରିବାର ଓ ଜିନିଷପତ୍ର ନେଇ କ୍ୱାଟରକୁ ଉଠିଯିବା ପୂର୍ବରୁ ସେ ଆଗ ଦିନେ ଯାଇ ଭଲ ଭାବରେ ସବୁ ଦେଖି ଆସିଲେ। ପାଣି, ବିଜୁଳିର ସୁଚାରୁ ବ୍ୟବସ୍ଥା ଅଛି କି ନାହିଁ? ଛାତରୁ ପାଣି ଗଳୁନି ତ? କାନ୍ଥ, କବାଟ ରଙ୍ଗ ହୋଇଛି ତ?

ବିଭୂଦତ୍ତ ମଣିଷଟି ଏମିତି, ସବୁବେଳେ ସବୁଦିଗକୁ ଦୃଷ୍ଟି। ହେଲେ ଏଇଭଳି ମଣିଷଟି କ୍ୱାଟର୍ ଦେଖିବାବେଳେ ତା'ର ଆଖପାଖ ଅଞ୍ଚଳ ତଦାରଖ କରିବା କଥା କେମିତି ଭୁଲିଗଲା, ସେଇଟା ହିଁ ଆଶ୍ଚର୍ଯ୍ୟ। କେବଳ ସେ ନୁହଁ, ତାଙ୍କ ସ୍ତ୍ରୀ, ପୁଅ, ଝିଅ - କାହାର ଏ କଥାଟା ମନେ ପଡ଼ିଲା ନାହିଁ। ବାଇଶ ବର୍ଷର ବଡ଼ ପୁଅ ଶ୍ରୀକାନ୍ତ କଥା ଅଲଗା। ବାପା ଯେତିକି ସାବଧାନ, ପୁଅ ସେତିକି ବେପରୁଆ। ସେ ଉପରଠାଉରିଆ ଟିକିଏ ଆଖି ବୁଲେଇ ନେଇ କହିଲା, ''ହଁ ଚଳିବ।''

ସୁନାନାକୀ ଗେହ୍ଲୀ ଝିଅ ଲୁସି ତ ରୀତିମତ ଖୁସି ହୋଇଗଲା। କହିଲା, ''ବାଃ, କେତେ ବଡ଼ କ୍ୱାଟର୍! ବାପା, ମୁଁ ଏବେଠୁଁ କହିଦେଉଛି, ମୋର ଏଠି ଗୋଟାଏ ଅଲଗା ରୁମ୍ ରହିବ। ଜେଜେମା' ସାଙ୍ଗରେ ମୁଁ ରୁମ୍ ସେଆର୍ କରି ପାରିବିନି। ସେ ରାତିରେ ଉଠି ବାରମ୍ବାର ପାନ କୁଟି କୁଟି ଖାଉଛି; ସେଥିରେ ମୋର ନିଦ ଭାଙ୍ଗି ଯାଉଛି। କଲେଜରେ ଖାଲି ହାଇ ମାରି ମାରି

ବେଳ ଯାଉଛି, ଲେକ୍‌ଚର୍ ଶୁଣିବି କେମିତି ?'' ନିଜର ଯେଉଁ କୋଠରୀଟି ହୋଇପାରେ, ସେଇଟିକୁ ଦେଖି ନେଇ ଲୁସି ବାହାର ବାରଣ୍ଡାକୁ ଚାଲିଗଲା । ଘରର ଅନ୍ୟାନ୍ୟ ଅଂଶରେ ତା'ର ଆଗ୍ରହ ନାହିଁ ।

ସ୍ତ୍ରୀ ଅନୁରାଧା ହିଁ ଖୁଣ୍ଟିନାଣ୍ଟି ଦେଖିବା ଲୋକ । ଯେତେ ଯାହା ହେଲେ ତାଙ୍କୁ ଇ ବେଶୀ ସମୟ ଘର ଭିତରେ ରହିବାକୁ ହେବ; ସଂସାର ଚଳେଇବାକୁ ହେବ । ସେ ଦାଣ୍ଡ ବାରଣ୍ଡାରୁ ଆରମ୍ଭ କରି ଶୋଇବା ଘର, ରୋଷେଇ ଘର, ଗାଧୁଆ ଘର, ଏମିତିକି ବାଡ଼ିପଟ ସଜନା ଗଛ ମଧ୍ୟ ଟିକିନିଖି କରି ଦେଖିଲେ । ଛୋଟ ଛୋଟ କାମର ତାଲିକା ମନ ମଧ୍ୟରେ ସାଇତି ରଖିଲେ, ଯେଉଁଗୁଡ଼ାକ କି ସ୍ୱାମୀଙ୍କୁ କହି ଆଗ କରେଇବାକୁ ହେବ । ତଥାପି ତାଙ୍କର ଶ୍ୱାନ ଦୃଷ୍ଟିରୁ କଥାଟା ଛପିଗଲା !

ସମସ୍ତଙ୍କର ସମ୍ମତି ନେଇ ବିଭୂଦତ୍ତ କ୍ୱାଟର୍ ପସନ୍ଦ ହେବା କଥାଟା ଅଫିସ୍‌ରେ ଜଣେଇଦେଲେ । ତାଙ୍କ ମୁଣ୍ଡରୁ ମସ୍ତବଡ଼ ଗୋଟାଏ ବୋଝ ଖସି ଯାଇଥିଲା ସେଦିନ । ଦୁଇବର୍ଷ ତଳେ ଏ ସହରକୁ ତାଙ୍କର ବଦଳି ହୋଇଛି । ଚାକିରି ଜୀବନର ବାକୀ ଅଂଶ ଏଇଠି କଟେଇଦେବାକୁ ହେବ । ହେଲେ ଏଠି କ୍ୱାଟରର ଏତେ ଅସୁବିଧା ! ଅଗତ୍ୟା ଦୁଇବର୍ଷ କାଳ ପକେଟରୁ ପଇସା ଦେଇ ଘର ଭଡ଼ା ନେବାକୁ ହେଲା । ଯାହେଉ, ଶେଷରେ ମିଳିଲା ତ କ୍ୱାଟର୍ ! ଏଥର ଚାକିରିର ବାକୀ ଛଅବର୍ଷ ଏଠି ଆରାମରେ କଟିଯିବ । ଏବେ ଯେତେ ଶୀଘ୍ର ହେଉ ଉଠି ଆସିବା କଥା ।

ବିଭୂଦତ୍ତଙ୍କର ମନ ଏମିତି ଖୁସି ହୋଇଯାଇଥିଲା ଯେ ସେ ଆଉ ଅଧିକ କିଛି ଭାବିପାରିଲେ ନାହିଁ କି ଅଧିକ ଖୋଜଖବର ନେଲେ ନାହିଁ । ଯଦି ପାଖ ପଡ଼ୋଶୀଙ୍କୁ ପଚାରି ଥାଆନ୍ତେ, ଅଫିସରେ ଖୋଳାତଡ଼ା କରି ବୁଝି ଥାଆନ୍ତେ ତାଙ୍କ ପୂର୍ବରୁ ଏ ଘରେ ରହୁଥିବା ମଣିଷଟିର ସୁବିଧା, ଅସୁବିଧା, ତେବେ ଘଟଣାଟା ଜଣା ପଡ଼ି ଯାଇଥାଆନ୍ତା । ଆଉ ଏ କ୍ୱାଟରକୁ, ଏ କଲୋନୀକୁ ଆସିବାର ନାଁ ଉଠାଇ ନଥାଆନ୍ତେ ବିଭୂଦତ୍ତ ।

କିନ୍ତୁ ତା' ତ ହେଲା ନାହିଁ ।

ଜିନିଷପତ୍ର ବନ୍ଧାବନ୍ଧି ଚାଲିଲା, ନୂଆ କ୍ୱାଟରକୁ ଆସିବାର ଆୟୋଜନ ବେଶ୍ ଜୋରସୋରରେ ଆରମ୍ଭ ହୋଇଗଲା । ପରିବାର ନେଇ ନୂଆ ଘରେ ପଶିବାର ଗୋଟାଏ ସପ୍ତାହ ପୂର୍ବରୁ ଶାନ୍ତିପୂଜାଟିଏର ବ୍ୟବସ୍ଥା କଲେ ବିଭୂଦତ୍ତ ।

ସେ ଏ ପୂଜାପୂଜିରେ ବିଶ୍ୱାସ କରନ୍ତି ନାହିଁ। ହେଲେ ଘର ଭିତରେ ମା' ଓ ସ୍ତ୍ରୀ ଯେଉଁ ନିୟମ ଲାଗୁ କରି ରଖିଛନ୍ତି ତା'ର ବିରୋଧ କରି ଅଯଥା ଅଶାନ୍ତି କାହିଁକି ବଢ଼େଇଥାଆନ୍ତେ ?

ପୂଜାଦିନ ସକାଳବେଳଟାରେ ପାଞ୍ଜିରେ ବେଳାବେଳି ନେଇ କ'ଣ ଗଣ୍ଡଗୋଳ ଥିଲା। ସେଥିପାଇଁ ପୁରୋହିତ ଦିନ ଗୋଟାଏକୁ ପୂଜାର ସମୟ ରଖିଥିଲେ। ରବିବାର କଥା, ତେଣୁ ଅସୁବିଧା ନାହିଁ। ଦିନ ବାରଟାବେଳେ ସ୍ତ୍ରୀ ପିଲାଙ୍କୁ ଧରି ପହଞ୍ଚିଗଲେ ବିଭୁଦତ୍ତ। ତାଙ୍କ ପାଖରେ ରହୁଥିବା ବୟାଅଶୀ ବର୍ଷର ମା' ଏସବୁ ବିଷୟରେ ଅଧିକ ତତ୍ପର। କିନ୍ତୁ ପୂର୍ବଦିନ ଏକାଦଶୀର ନିର୍ଜଳା ଉପବାସ କରି ଅସୁସ୍ଥ ହୋଇ ପଡ଼ିଥିଲେ ସେ। ଆଉ ଏତେଗୁଡ଼ାଏ ବାଟ ଆସିଥାଆନ୍ତେ କେମିତି ?

ପରେ ଅଦୃଶ୍ୟକୁ ବହୁତ ଧନ୍ୟବାଦ ଦେଇଥିଲେ ବିଭୁଦତ୍ତ। ମା' ଆସିଥିଲେ ସେଦିନ ନିଶ୍ଚୟ ବଡ଼ ଧରଣର ଗୋଟିଏ ଅଘଟଣ ହୋଇଯାଇଥାଆନ୍ତା। ବୟାଅଶୀ ବର୍ଷର ଦୁର୍ବଳ ଶରୀର କ'ଣ ଏମିତି ଆଘାତଟିଏ ସହି ପାରିଥାଆନ୍ତା ?

ସେଦିନ ପୁରୋହିତ ସବୁ ସାଜସରଞ୍ଜାମ ଧରି ଠିକ୍ ସାଢ଼େ ବାରଟାରେ ଆସି ପହଞ୍ଚି ଯାଇଥିଲେ। ପୂଜା ଜିନିଷ ସଜଡ଼ା ସଜଡ଼ିରେ କୋଡ଼ିଏ ପଚିଶ ମିନିଟ୍ ଲାଗିଗଲା। ତା'ପରେ ପୂଜା। ଗଣେଶ ବନ୍ଦନା ଦେଇ ଗମ୍ଭୀର ଗଳାରେ ପୁରୋହିତ ଆରମ୍ଭ କଲେ "ନମୋ ଗଣେଶ ବିଘ୍ନେଶ..."

ଆଉ ଅଧିକ ବାଟ ଯିବା ପୂର୍ବରୁ ହଠାତ୍ ମାଇକ୍ରୋଫୋନ୍‌ର ଖଡ଼ ଖଡ଼ ଶବ୍ଦ ଦୋହଲାଇ ଦେଲା ସମସ୍ତଙ୍କୁ। ଠିକ୍ ପରେ ପରେ ବେସୁରିଆ ମୋଟା ସ୍ୱରରେ ଭାସି ଆସିଲା, "ଆଲ୍ଲା ହୋ... ଆକବର ଆଲ୍ଲା... ହୋ... ଆକବର୍..."

ପୁରୋହିତଙ୍କ ଓଠରେ ମନ୍ତ୍ର ସେଇମିତି ଅଧା ହିଗଲା। କେମିତି ବିକୃତ ହୋଇଗଲା ମୁହଁଟା ତାଙ୍କର। ଆଖି ଖୋଲି ବାଁ ପଟ ଝର୍କା ଆଡୁ ସେ ବିରକ୍ତିର ଦୃଷ୍ଟିଟିଏ ବୁଲେଇ ଆଣିଲେ। ସେଇବାଟ ଦେଇ ଶବ୍ଦଗୁଡ଼ାକ ଠେଲିଠାଲି ହୋଇ ଭିତରକୁ ପଶି ଆସୁଥିଲା।

ଶବ୍ଦର ଉପଦ୍ରବ ଶ୍ରୀକାନ୍ତକୁ ଛୁଇଁ ପାରିଲା ନାହିଁ। ବାହାର ବାରଣ୍ଡାର ସିଢ଼ିରେ ବସି କାନରେ ୱାକ୍‌ମ୍ୟାନ୍ ଲଗାଇ ସେ କ'ଣ ଗୋଟାଏ ଗୀତ ଶୁଣୁଥିଲା। କିନ୍ତୁ ଚିଡ଼ିଗଲା ଲୁସି। ସେଇଠି ବାରଣ୍ଡାରେ ଭାଇନା ପାଖରେ ବସି ସେ ସିନେମା ପତ୍ରିକାଟିଏ ପଢୁଥିଲା। ଅକ୍ଷୟ କୁମାର, ରବିନା ଟଣ୍ଡନ୍‌ର ପ୍ରେମ କାହାଣୀ

ପଢ଼ିବାବେଳେ ଏମିତି ବେସୁରିଆ ସ୍ୱର ଆସି ରସଭଙ୍ଗ କଲେ ବିରକ୍ତ ଲାଗିବ ନାହିଁ ?

''ଧେତ୍ ତେରିକା !'' ମନକୁ ମନ କଥାଟା କହିଦେଇ ସେ ପୁଣି ଫେରିଗଲା ପତ୍ରିକାକୁ। ପୂର୍ବପରି ନିଜ ଚାରିପଟ ପୃଥିବୀର ଉପସ୍ଥିତି ଭୁଲିଗଲା ସେ।

ଲୁସି ପରି ହେଲେ ନିଶ୍ଚିନ୍ତ ହୋଇ ପାରିଥାଆନ୍ତେ ବିଭୂଦତ୍ତ ଓ ଅନୁରାଧା। 'ଆଜାନ୍'ର ପ୍ରଥମ ଶବ୍ଦଟି ଶୁଣିବା ବେଳେ ଯେଉଁ ଚଡ଼କ ସେମାନଙ୍କ ମୁଣ୍ଡରେ ପଡ଼ିଥିଲା, ତା'ର ପ୍ରକୋପରେ ମାଟିରେ ଧସିଯାଇଛନ୍ତି ଯେମିତି ସେମାନେ।

ମସ୍‌ଜିଦ୍ ! ଏଠି ମସ୍‌ଜିଦ୍ ଆସିଲା କେଉଁଠୁ ?

ଏଇଟା ତ ତାଙ୍କ ଅଫିସ୍‌ର କଲୋନୀ। କ୍ୱାଟରଗୁଡ଼ିକ ଛଡ଼ା କେବଳ ଗୋଟିଏ କ୍ଲବ୍ ଘର ରହିଛି କଂପାଉଣ୍ଡ ଭିତରେ। ମନ୍ଦିର, ମସ୍‌ଜିଦ୍ ବା ଚର୍ଚ୍ଚ ରହିବାର କଥା ନୁହଁ। ତେବେ କେଉଁଠୁ ଆସିଲା ଏମ ' ।ଜାନ୍'ର ସ୍ୱର ? ସତ ଘଟଣା ଜାଣିବାକୁ ବେଶୀ ବେଳ ଲାଗି ନ ଥିଲା ! କଲୋନୀରେ ସିନା ମସ୍‌ଜିଦ୍ ନାହିଁ, କିନ୍ତୁ କଲୋନୀ ବାହାରେ କ'ଣ ରହିବାକୁ ମନା ? ଯେଉଁଠି ତାଙ୍କର ଘର ଶେଷ ହୋଇଛି, ସେଇଠି ପାଚିରୀକୁ ଲାଗି ଟିକିଏ ଖୋଲା ଜାଗା। ତାକୁ ଡେ଼ଇଁଲେ ଶାଗୁଆ ରଙ୍ଗର ଯେଉଁ ଘରଟା ଦେଖାଯାଏ, ସେଇଟା ହିଁ ମସ୍‌ଜିଦ୍। ଅନ୍ୟାନ୍ୟ ମସ୍‌ଜିଦ୍ ଭଳି ବିରାଟ ଗମ୍ବୁଜ ନାହିଁ, ମିନାର୍ ନାହିଁ, କିନ୍ତୁ ସେଇଠି ଆଜାନ୍ ହୁଏ, ପାଞ୍ଚ ଥର ନମାଜ୍ ପଢ଼ା ହୁଏ, ଶୁକ୍ରବାର ଦିନ ଖୁତ୍‌ବା ମଧ୍ୟ ହୁଏ।

ଏଇଟା ପୁଣି ଯା ଭିତରେ ନିର୍ମାଣ ହୋଇଥିବା ନୂଆ ମସ୍‌ଜିଦ୍‌ଟିଏ ନୁହଁ, କେଉଁ ପୁରୁଣା ଅମଳରୁ ରହି ଆସିଛି। କଲୋନୀର ସବୁ ଘରୁ ଆଜାନ୍ ଶୁଣି ହୁଏ, କିନ୍ତୁ ବିଭୂଦତ୍ତ ନେଇଥିବା ଘର କଥା ଅଲଗା। କ୍ୱାଟରର ପ୍ରାୟ ପଛ ପାଖକୁ ଯେ ରହିଛି ମସ୍‌ଜିଦ୍‌ଟା ! ଆଉ ଯେଉଁ ମାଇକ୍ରୋଫୋନ୍‌ରେ ଆଜାନ୍ ପଢ଼ା ହୁଏ, ତା'ର ସ୍ପିକର୍‌ଟା ରହିଛି ଠିକ୍ ବିଭୂଦତ୍ତଙ୍କର ଘର ଆଡ଼କୁ ମୁହଁ କରି। ଘରର ସବୁ କୋଣରେ ପ୍ରତିଧ୍ୱନିତ ହୋଇଯାଏ ନମାଜ୍ ପାଇଁ ଇମାମ୍‌ଙ୍କ ସ୍ୱରର ଆବାହନୀ।

ଅନୁରାଧା ଦୋଷ ଦେବା ଆଖିରେ ସ୍ୱାମୀଙ୍କୁ ଚାହିଁଲେ। ଏ କୁଆଡ଼େ ଅତି ପାରିବାର ଲୋକ, ସବୁ ଦେଖି ଚାହିଁ ନିଷ୍ପତ୍ତି ନିଅନ୍ତି ! ତା'ହେଲେ ଏମିତି ବଡ଼ ଭୁଲ୍‌ଟାଏ କରିଦେଲେ କେମିତି ? ଏବେ କ'ଣ ହେବ ? ସତେ କ'ଣ

ଓଲଟାଇ ହେବ କିଛି ଦିନ ଆଗରୁ ନେଇଥିବା ନିଷ୍ପତ୍ତିଟିକୁ ? ନା, ଅନୁରାଧା ଜାଣନ୍ତି, ତା'ର ଆଉ ସମ୍ଭାବନା ନାହିଁ। ଭଡ଼ାଘର ମାଲିକ ନୂଆ ଭଡ଼ାଟିଆ ଠିକ୍ କରି ସାରିଛି। ଅଫିସ୍‌ରେ ନିଜର ସମ୍ମତି ଦେଇ ସାରିଛନ୍ତି ବିଭୁଦତ୍ତ। ଏହାପରେ କ'ଣ ପଛକୁ ଫେରିଯାଇ ହୁଏ ?

ସେ ଓଠ କଣକୁ ଦାନ୍ତରେ ଚାପି ନେଇ ଚୁପ୍ ରହିଗଲେ। ତାଙ୍କର କିଛି କହିବାର, କରିବାର ନାହିଁ। ଭୋଗିବା ଲୋକ ଭୋଗନ୍ତୁ !

ବିସ୍ମୟ ଓ ବିରକ୍ତିର ଆବେଶଟା କଟିଯିବା ପରେ ବିଭୁଦତ୍ତଙ୍କର ବଡ଼ ରାଗ ହେଲା। ତାଙ୍କର ତ ଭୁଲ୍ ରହିଛି ନିଶ୍ଚୟ। କିନ୍ତୁ ସେ କ'ଣ ଜାଣିଶୁଣି ଏପରି କରିଛନ୍ତି ? ଅଥଚ ଅନୁରାଧାଙ୍କର ଏ ଦୋଷ ଦେବା ଭଳି ଚାହାଣୀ ଦେଖ ! ସେଥିରେ ପୁଣି ରାଗିକରି ମୁହଁଟା ଏଡ଼େ ଭାରୀ ! କାହିଁ, ସେ ବି ତ ସେଦିନ ଟିକିନିଖି କରି ଘରର ନାଡ଼ି ନକ୍ଷତ୍ର ଟିପି ଦେଖୁଥିଲେ। ତାଙ୍କ ଆଖିରୁ କେମିତି ବାଦ୍ ପଡ଼ିଗଲା ଏତେବଡ଼ ବିଷୟଟା ? ବଡ଼ ବଙ୍ଗ୍ଳୋଘର ଦେଖି ଏତେଟା ଖୁସି ହେବା ଭଳି ସେଦିନ କ'ଣ ଥିଲା ? ଯଦି ଅତିରିକ୍ତ ଉଲ୍ଲାସରେ ସେ କେଉଁଠି ଶାଗ ପଟାଳି କରିବେ, କେଉଁଠି ଭେଣ୍ଡି, ବାଇଗଣ ଲଗାଇବେ - ଏସବୁର ଯୋଜନା କରି ନ ଥାଆନ୍ତେ, ଠିକ୍ ତାଙ୍କ ଆଖିରେ ପଡ଼ିଥାଆନ୍ତା ପାଚିରୀଠୁଁ ଅଳ୍ପ ଦୂରରେ ରହିଥିବା ଶାଗୁଆ ମସ୍‌ଜିଦ୍‌ଟା। ଏବେ ହେବ କ'ଣ ?

ଓଃ, ବଡ଼ ଭୁଲ୍ ହୋଇଗଲା।

ଦୁଇ ଆଖି ଉପରେ ହାତ ରଖିଲେ ବିଭୁଦତ୍ତ। ନା, ମସ୍‌ଜିଦ୍ ପ୍ରତି ତାଙ୍କର କୌଣସି ବିଦ୍ୱେଷ ନାହିଁ। ମୁସଲ୍‌ମାନ୍ ଧର୍ମ ପ୍ରତି ମଧ୍ୟ କୌଣସି ଆକ୍ରୋଶ ନାହିଁ। ଯିଏ କୌଣସି ଧର୍ମ ଫର୍ମରେ ବିଶ୍ୱାସ ରଖେ ନାହିଁ, ତା'ର ପୁଣି କି ଆକ୍ରୋଶ ? ଅନୁରାଧା ମଧ୍ୟ ଏସବୁ ବିଷୟରେ ବଡ଼ ବୁଝିବା ସୁଝିବା ମଣିଷ। ଘରେ ଠାକୁର ପୂଜା କଲେ ମଧ୍ୟ କେଇଟା ବ୍ରତ ଓପାସ ମାନିଲେ ମଧ୍ୟ ସେ ନିଜ ଧର୍ମକୁ ବଡ଼ ବୋଲି କେବେ ଧରି ବସି ନାହାନ୍ତି। ଅଯଥା ଯୁକ୍ତି କରିନାହାନ୍ତି।

ସବୁ ଅସୁବିଧାଟା ହୋଇଛି ବୁଢ଼ୀ ମା'ଙ୍କୁ ନେଇ। ବିଭୁଦତ୍ତଙ୍କର ମା' ସାରା ଜୀବନ ଗାଁରେ କଟେଇ ଦେଇଛନ୍ତି। ଛୁଆଁଛୁତି ବାରଣ, ରକ୍ଷଣଶୀଳ ପରିବେଶ ଭିତରେ ଏତେ ଗୁଡ଼ାଏ ବର୍ଷ ବିତେଇ ଦେବା ପରେ ହଠାତ୍ କରି କ'ଣ ଅନ୍ୟରକମ ହୋଇ ହୁଏ ? ମା'ଙ୍କର କଳପାଣି, ଚମଡ଼ା ଜୋତା - ଏସବୁରେ

ଏତେ ବିତୃଷ୍ଣା ଯେ ବାପା ଚାଲିଯିବା ପରେ ମଧ୍ୟ ସେ ସହରକୁ ଆସି ବିଭୂଦତ୍ତଙ୍କ ପାଖରେ ରହିବାକୁ ରାଜି ହୋଇ ନ ଥିଲେ। ଦିନେ ଓଳିଏ କଥା ଅଲଗା, କିନ୍ତୁ ପେଡ଼ି ପୁଟୁଳା ବାନ୍ଧି ସବୁଦିନ ପାଇଁ ସହରରେ ଆସ୍ଥାନ? ନା- ଅସମ୍ଭବ! ଅନ୍ତତଃ ହାତଗୋଡ଼ ଚଳୁଥିବା ପର୍ଯ୍ୟନ୍ତ ଆଦୌ ନୁହଁ। ଗାଁ ଘରେ ଇଷ୍ଟଦେବ ଅଛନ୍ତି, ଶାଳଗ୍ରାମ ଅଛନ୍ତି। ପୁଣି ତାଙ୍କ ଘରକୁ ଲାଗି ବିଭୂଦତ୍ତଙ୍କ ଜେଜେ ତିଆରି କରେଇ ଦେଇଥିବା ଶିବମନ୍ଦିର ମଧ୍ୟ ରହିଛି। ସେସବୁ ଖବର ବୁଝିବ କିଏ? ସବୁଦିନ ସକାଳୁ ଉଠି ପୋଖରୀରେ ମୁଣ୍ଡ ଧୋଇ ଗାଧୋଇ ଶିବମନ୍ଦିରରେ ମୁଣ୍ଡିଆ ମାରିବାଟା ତାଙ୍କର ନୂଆବୋହୂ କାଳରୁ ଅଭ୍ୟାସ। ଏତେ ସହଜରେ କ'ଣ ସେ ଅଭ୍ୟାସ ଛାଡ଼ି ହୁଏ?

କିନ୍ତୁ ଦିନେ ଛାଡ଼ିବାକୁ ହେଲା। ଗାଁରୁ ସବୁଦିନ ପାଇଁ ବାହାରି ଆସିବାକୁ ହେଲା। ଏଇଟା ଦୁଇବର୍ଷ ତଳର କଥା। ହଠାତ୍ ଦିନେ ବିଭୂଦତ୍ତଙ୍କ ପାଖରେ ଖବର ପହଞ୍ଚିଥିଲା ଯେ ମା'ଙ୍କର ହାର୍ଟ ଆଟାକ୍ ହୋଇଛି। ଗାଁକୁ ଆସି ସେ ମା'ଙ୍କର ଯେଉଁଭଳି ଅବସ୍ଥା ଦେଖିଲେ, ସେଥିରେ ସେ ତାଙ୍କୁ ଏକା ଛାଡ଼ି ଆସିଥାଆନ୍ତେ କେମିତି? ତାଙ୍କର କୌଣସି କଥା ନ ଶୁଣି ନିଜ ପାଖକୁ ନେଇ ଆସିଲେ। ଅସୁସ୍ଥ ମଣିଷଟି ସେତେବେଳେ ବେଶୀ ଯୁକ୍ତି କରିବାର ଅବସ୍ଥାରେ ନ ଥିଲେ, ନହେଲେ ଏତେ ସହଜରେ ବୋଧହୁଏ ସହର ଆସି ପୁଅ ସଂସାରରେ ରହିଯିବା ପାଇଁ ରାଜି ହୋଇ ନ ଥାଆନ୍ତେ। ଇଷ୍ଟଦେବ, ଶାଳଗ୍ରାମଙ୍କର ପୂଜା ବ୍ୟବସ୍ଥା କରାଗଲା। ମନ୍ଦିରର ଦେଖାଶୁଣା ଭାର ଗାଁର ଆଉ ଦୁଇଜଣଙ୍କୁ ଦିଆଗଲା। ତା'ପରେ ସହର ଆସିବାକୁ ପାଦ ବଢ଼େଇଲେ ବିଭୂଦତ୍ତଙ୍କର ମା'।

ବିଭୂଦତ୍ତ ମଧ୍ୟ ପ୍ରଥମରୁ ବଡ଼ ସାବଧାନ ହୋଇଯାଇଥିଲେ। ନିଜର ନାସ୍ତିକ ମନଟିକୁ ଚେଷ୍ଟା କରି ଟିକିଏ ସହନଶୀଳ କରେଇ ଦେଇଥିଲେ। ମା'ଙ୍କ ମନରେ ଯେମିତି କଷ୍ଟ ନ ହୁଏ, କୌଣସି ଧକ୍କା ଯେମିତି ନ ପାଆନ୍ତି ସେ।

ଦିନା କେତେ ସବୁ ଠିକ୍ ଚାଲିଲା। କିନ୍ତୁ ଦେହ ଟିକିଏ ସୁସ୍ଥ ହେବା ମାତ୍ରକେ ବୁଢ଼ୀଙ୍କର ଆରମ୍ଭ ହୋଇଗଲା ପୂର୍ବର ସେଇ କଠିନ ରୁଟୀନ୍। ସୋମବାର, ଗୁରୁବାର, ନିର୍ଜଳା ଏକାଦଶୀ, ବ୍ରତ ଓପାସ। ଅନୁରାଧା ବେଳେବେଳେ ଲଜ୍ଜିତ ହୋଇପଡ଼ନ୍ତି। ଗୁରୁବାରଟାକୁ ଛାଡ଼ିଦେଲେ ଅଧିକ କିଛି ମାନି ପାରନ୍ତି ନାହିଁ ସେ। ଅଥଚ ତାଙ୍କ ସାମ୍ନାରେ ଏତେ ବୟସରେ ଶାଶୂ କେତେ ସବୁ କରୁଛନ୍ତି!

ବୁଢ଼ୀ ପାକୁଆ ପାଟିରେ ହସନ୍ତି, ''ଆଲୋ, ତୁ ଏତେ ଭାବି ହେଉଛୁ

କାହିଁକି ବା ? ମତେ ମୋ ଶାଶୁ ଏସବୁ ଧରେଇ ଦେଇଥିଲେ ଷାଠିଏ ସତୁରୀ ବର୍ଷ ତଳେ। ସେଥିପାଇଁ ଧରି ବସିଛି। ତତେ କ'ଣ ତୋ ଶାଶୁ ଏସବୁ ମୁଣ୍ଡେଇବାକୁ କହୁଛି ଯେ ତୁ ସେସବୁ କରିବାକୁ ଯିବୁ ?''

ନିଜ ରସିକତାରେ ନିଜେ ହସି ହସି ଗଡ଼ି ଯାଆନ୍ତି ସେ।

ଅନୁରାଧାଙ୍କର ଆଖି ବାମ୍ପେଇ ଉଠିଲା। ଏଭଳି ଜଣେ ଭଲ ମଣିଷକୁ ଧରି ଆଣି ଏମିତି ଶାସ୍ତି ଦେବାକୁ ହେବ ? ଯେଉଁ ମଣିଷ ନିର୍ମାଲ୍ୟ ପାଟିରେ ନ ଦେଇ ପାଣି ଛୁଏଁନି, ଜପ ତପରେ ଦିନଟା କଟାଇ ଦିଏ, ସେହି ମଣିଷର ପ୍ରତ୍ୟେକ ଦିନ ଆରମ୍ଭ ହେବ ଅଶାନ୍ତିରେ ? ନିଦ ଭାଙ୍ଗୁ ଭାଙ୍ଗୁ ଯଦି ତାଙ୍କ କାନରେ ପଡ଼େ ଆଜାନ୍...! ନମାଜ୍ ପାଇଁ ଆହ୍ୱାନ କରି ଇମାମ୍‌ଙ୍କର 'ଆଲ୍ଲା ହୋ ଆକ୍‌ବର୍' ଡ଼ାକଟା...! କେମିତି ଲାଗିବ ତାଙ୍କୁ ? ଏଇଟା ଯେ ଚାଲିବ ସବୁଦିନ। ସେ ପୁଣି ଦିନରେ ଥରେ ନୁହେଁ, ପାଞ୍ଚ ପାଞ୍ଚ ଥର। କେମିତି ଗ୍ରହଣ କରିବେ ମା' ଏ କଥାଟା ? ତାଙ୍କର ଦୁର୍ବଳ ହୃଦୟ ଉପରେ ଆଘାତ ଲାଗିବନି ତ ?

କୌଣସି ମତେ ପୂଜା ସାରି, ଦକ୍ଷିଣା ଅଣ୍ଟିରେ ବାନ୍ଧି ପୁରୋହିତ ଚାଲିଗଲେ। ଏଥର ସ୍ୱାମୀଙ୍କୁ ଧରିଲେ ଅନୁରାଧା, ''ତୁମେ ଅନ୍ୟ କିଛି ବ୍ୟବସ୍ଥା କରିପାରିବ ନାହିଁ ? ଏଠି ତ ଜମା ରହି ହେବ ନାହିଁ।''

''କହିଦେଲେ ଖାଲି ବ୍ୟବସ୍ଥା ହୋଇଯିବ ନା କ'ଣ ? ଏତେ କଷ୍ଟରେ କ୍ୱାଟର୍ ମିଳିଛି, ଏମିତି ଛାଡ଼ିଦେବି ? ସମସ୍ତଙ୍କୁ ଟିକିଏ ଆଡ଼୍‌ଜଷ୍ଟ କରିବାକୁ ପଡ଼ିବ। ଏତେ କନ୍‌ଜରଭେଟିଭ୍ ହେଲେ ଚଳିବ କେମିତି ?'' ନିଜ ବିବଶତା ରାଗ ହୋଇ ବିଭୁଦତ୍ତଙ୍କର ଆଖିରୁ ଛିଟିକି ପଡ଼ିଲା।

ଏଥର ଅନୁରାଧା ଚିଡ଼ିଗଲେ, ''ଏଠି ମୋ ଆଡ଼୍‌ଜଷ୍ଟ କରିବା କଥା ପଡ଼ିଛି କାହିଁକି ? ମୋର ଅସୁବିଧା ହେଉଛି କି ? ମୁଁ କଟକ ଖଟ୍‌ବିନ୍ ସାହିର ଝିଅ। ଆଜାନ୍ ଶୁଣିବାର ଅଭ୍ୟାସ ପିଲାଦିନରୁ ଅଛି। ମତେ ଖୁଣ୍ଟା କାହିଁକି ଦେଉଛ ? ମା'ଙ୍କ ବିଷୟ ଭାବିକରି ମୁଁ ଏ କଥା କହିଥିଲି। ଏଠି କେମିତି ମା'ଙ୍କୁ ରଖେଇବ ରଖାଅ।''

ଦୁମ୍ ଦୁମ୍ ହୋଇ ଗେଟ୍ ପାଖକୁ ଚାଲିଗଲେ ସେ। କିଛି ସମୟ ଚୁପ୍ ହୋଇ ସେଠି ରହିବା ପରେ ସ୍ତ୍ରୀ ପଛେ ପଛେ ବିଭୁଦତ୍ତ ବାହାରକୁ ଆସିଲେ। ଛାତି ଭିତରଟା ମଛି ହୋଇ ଯାଉଥିଲା ତାଙ୍କର। ନିଜ ମନତଳର ଭୂତ ଖାଇ

ଗୋଡ଼ାଉ ଥିଲା ତାଙ୍କୁ। ହେଲେ କ'ଣ କରିବେ ସେ? ଅନ୍ୟ ଉପାୟ କ'ଣ ଅଛି?

ଶେଷରେ ଜିନିଷପତ୍ର ବନ୍ଧାବନ୍ଧି ହେଲା। ଟ୍ରକ୍ ଆସିଲା, ଜିନିଷପତ୍ର ବୁହା ହେଲା। ଧୂଳିମଳିରେ କାଳେ ମା'ଙ୍କୁ ଅଧିକ କଷ୍ଟ ହେବ, ସେଥିପାଇଁ ଜଣେ ଜଣାଶୁଣାଙ୍କ ଘରେ ବିଭୁଦତ୍ତ ତାଙ୍କୁ ରଖେଇ ଆସିଥିଲେ। ଜିନିଷପତ୍ର କ୍ୱାଟରରେ ଟିକିଏ ବାଗେଇ ନେବା ପରେ ରାତି ନଅଟାବେଳେ ତାଙ୍କୁ ଯାଇ ନେଇ ଆସିଥିଲେ।

ଦିନସାରା ଖଟି ଖଟି ଉଭୟ ବିଭୁଦତ୍ତ ଓ ଅନୁରାଧା କ୍ଳାନ୍ତ। ବିଛଣାରେ ପଡ଼ିଯିବା ମାତ୍ରକେ ଆଖି ବନ୍ଦ ହୋଇଯିବା କଥା। ସେମାନଙ୍କର ବୟସ ବି ତ ନିହାତି କମ୍ ନୁହଁ। ହେଲେ ନିଦ କାହିଁ? ଆଗାମୀ ସକାଳର ଚିନ୍ତାରେ ଯେ ଦୁହେଁ ମ୍ରିୟମାଣ। ଏମିତିରେ କ'ଣ ନିଦ ଆସେ?

''ମା'ଙ୍କୁ ପ୍ରଥମରୁ କହିଦେବା ଉଚିତ ଥିଲା।'' ବିଭୁଦତ୍ତ କେତେବେଳକେ ରହି ରହି କହିଲେ।

ଜୋରରେ ନିଶ୍ୱାସ ନେଲେ ଅନୁରାଧା, ''ଥରେ ତାଙ୍କ କାନରେ ଏ କଥାଟା ପକେଇଥିଲେ, ତୁମେ ଭାବୁଛ ସେ ଏଠି ପାଦ ଦେଇ ଥାଆନ୍ତେ? ବୟସ ସିନା ହୋଇଛି, ହେଲେ ମନଜୋର ତ ସେଇମିତି। ସେ ନିଶ୍ଚୟ ଗାଁକୁ ଫେରି ଯିବା ପାଇଁ ଜିଦି ଧରି ବସିଥାଆନ୍ତେ ବା ନରିଙ୍କ ପାଖକୁ ଯିବା ପାଇଁ ଟିକେଟ କଟାଇ ନେଇଥାଆନ୍ତେ।''

କିଛି ସମୟ ପାଇଁ ଚୁପ୍ ହୋଇଗଲେ ବିଭୁଦତ୍ତ। ଅନୁରାଧା ଭୁଲ କହିନାହାନ୍ତି। ନିଜ ଧର୍ମ, ଆଚାରରେ ଟିକିଏ ଏପାଖ ସେପାଖ ହେବାର ଆଶଙ୍କା ହୋଇଥିଲେ ମା' ଆଉ ତାଙ୍କ ପାଖରେ ରହି ନ ଥାଆନ୍ତେ। ନିଶ୍ଚୟ ଚାଲିଯାଇଥାଆନ୍ତେ ସାନଭାଇ ନରହରି ପାଖକୁ।

ଦୀର୍ଘନିଶ୍ୱାସ ନେଲେ ସେ। ମା' ଆଖିରେ ଦୁଇ ପୁଅ ସମାନ। ଯେମିତି ବିଭୁ, ସେମିତି ନରି। ହେଲେ ବିଭୁଦତ୍ତ କେମିତି ମା'ଙ୍କୁ ସାନଭାଇ ଘରକୁ ଯିବା ପାଇଁ ଛାଡ଼ି ଦେବେ? ସେ କ'ଣ ଜାଣିନାହାନ୍ତି ତା' ଘର ସଂସାର କଥା? ନରିଟା ସବୁଦିନ ଭୀରୁ ଥିଲା, ପୁଣି ଅନୀମାକୁ ବାହା ହେବା ଦିନଠାରୁ କାଉଁରିକାଠିଛୁଆଁ ମେଣ୍ଢା ହୋଇଯାଇଛି। ନିଜର କୌଣସି ମତ ନାହିଁ, ଭଲ ମନ୍ଦ ବିଚାର କରିବାର ଆଗ୍ରହ ନାହିଁ। ଆଉ ଅନୀମାଟା ଯେଉଁ ଅଖାଡୁଆ ସ୍ତ୍ରୀଲୋକ, ତା' ଦେଖାଚାହାଁରେ ପୁଣି ସେ ମା'ଙ୍କୁ ଛାଡ଼ି ଦେବେ କେମିତି?

ତା' ଘର ଚଳିବାରେ ଟିକିଏ ଏପାଖ ସେପାଖ ହେଲେ ସେ ଅପମାନ ଦେବା ଭଳି, ବାଧିବା ଭଳି କଥାମାନ ଶୁଣେଇଦେଇଯିବ। ସେ ସମ୍ମାନାସ୍ପଦ କେହି ହେଉ ବା ତା' ଘରେ କାମ କରୁଥିବା ମଣିଷଟି ହେଉ। ନିଜେ ବିଭୂଦତ୍ତ ସେ ଅପମାନର 'ଡୋଜ୍' ଅଳ୍ପମାତ୍ରାରେ ଥରେ ଅଧେ ପାଇଛନ୍ତି। ସେଥିପାଇଁ ନିହାତି ଦରକାର ନ ହେଲେ ସାନଭାଇ ଘରକୁ ଯାଆନ୍ତି ନାହିଁ। ସେହି ମାଇପବୋଲଇଙ୍କରା ନରି ଘରକୁ ପୁଣି ମା'ଙ୍କୁ ଛାଡ଼ିଦେବେ ?

''ଦେଖାଯାଉ, କାଲିକି କ'ଣ ହଉଛି !''

ବାଁ କଡ଼ ମାଡ଼ିଲେ ବିଭୂଦତ୍ତ। ଆଖି ବୁଜି ପଡ଼ି ରହୁ ରହୁ କେତେବେଳେ ସତରେ ନିଦ ହୋଇଗଲା। ଯାତ୍ରୁ ସ୍ୟାତ୍ରୁ ଚିନ୍ତା କରୁ କରୁ ତାଙ୍କରି ଭଳି ଶୋଇ ପଡ଼ିଲେ ଅନୁରାଧା।

କ'ଣ ହେଲା ? ହଠାତ୍ ନିଦଟା କାହିଁକି ଭାଙ୍ଗିଗଲା ? ବ୍ୟସ୍ତ ହୋଇ ବିଛଣାରେ ଉଠି ବସିଲେ ଅନୁରାଧା। ବାହାରେ ଝିଲିମିଲି ଅନ୍ଧାର। ଫର୍ଚ୍ଚା ହେବାକୁ ବେଶୀ ଡେରି ନାହିଁ। କିନ୍ତୁ ଏତେ ସକାଳୁ ତ ସେ କେବେ ଉଠନ୍ତି ନାହିଁ! ନିଦ ଭାଙ୍ଗି ଗଲା କାହିଁକି ?

ହଠାତ୍ ସେଇ ପୂର୍ବଦିନର ସ୍ୱର ଭାସି ଆସିଲା, ''ଆଲ୍ଲା... ହୋ... ଆକବର୍... ଆଲ୍ଲା...।''

ଗୋଟିଏ ଅଜଣା ଆଶଙ୍କା ଚାପି ଧରିଲା ଅନୁରାଧାଙ୍କୁ। କ'ଣ ହେବ ? କ'ଣ ହେବ ଏବେ ? ମା' କ'ଣ ଶୋଇ ରହିଛନ୍ତି ନା ଉଠିକରି ଜପ କରୁଛନ୍ତି ? ଯଦି ଆଜାନ୍‌ରେ ତାଙ୍କର ଜପ ବ୍ୟାହତ ହୁଏ...!

କୋଠରୀ ଭିତରୁ ଏକା ଏକା ବାହାରି ଯିବା ପାଇଁ ଅନୁରାଧାଙ୍କର ସାହସ ହେଲା ନାହିଁ। ସେ ପର୍ଯ୍ୟନ୍ତ ନିଘୋଡ଼ ନିଦରେ ଶୋଇ ରହିଥିବା ସ୍ୱାମୀଙ୍କୁ ଆସ୍ତେ ହଲେଇଦେଲେ ସେ, ''ହଇହୋ ଶୁଣୁଛ, ହେଇଟି ଉଠମ।''

''କ'ଣ ହେଲା ?'' ବିଭୂଦତ୍ତଙ୍କର ଆଖିପତା ଦିଇଟା ଯେମିତି କିଏ ଅଠା ଦେଇ ଲଗେଇ ଦେଇଛି।

''ହେଇଟି, ଆଜାନ୍ ଆରମ୍ଭ ହେଲାଣି।''

ଆଜାନ୍ !! ଚମକି ପଡ଼ି ଆଖି ମେଲିଲେ ସେ। ସତରେ ତ। ଏବେ କ'ଣ ହେବ ?

''ମା' ଉଠିଲାଣି ?''

"ସେ ତ ଭୋରରୁ ଉଠିବା ଲୋକ। ହୁଏତ ଉଠି ସାରିବେଣି। ମୋର ସାହସ ହେଉ ନାହିଁ ଯାଇ ଦେଖିବାକୁ। ତୁମେ ଯାଅ।"

"ମୁଁ? ହଉ।" ପଥର ଭଳି ପାଦ ଦିଇଟାକୁ ବିଭୁଦତ୍ତ ବିଛଣା ଉପରୁ ତଳକୁ ଆଣିଲେ। ସେଇଠି ରଖା ହୋଇଥିବା ହାୱାଇ ଚଟିରେ ପାଦ ଗଳେଇଲେ। ଧୀରେ ଧୀରେ ନିଜ ବେଡ୍‌ରୁମ୍‌ରୁ ବାହାରି ଆସିଲେ ସେ। ତଥାପି ଯେମିତି କିଏ ତାଙ୍କ ପାଦକୁ ବାନ୍ଧି ପକାଉଥିଲା, ପଛରୁ ଜୋର ଦେଇ ଟାଣି ଧରିଥିଲା।

ମନରେ ଜୋର ଆଣି ସେ ଚାଲିଲେ। ଲୁସି ରୁମ୍ ଟପିଲେ ମା'ର କୋଠରୀଟି। ସେଇଠୁ ଭାସି ଆସୁଛି ଠକ୍ ଠକ୍ ଶବ୍ଦ। ଛୋଟ ହେମଦସ୍ତାରେ ପାନ କୁଟିବାର ଶବ୍ଦ। ମା' ତାହେଲେ ଉଠି ସାରିଛି?

ବିଭୁଦତ୍ତ ଆତଙ୍କିତ ହୋଇପଡ଼ିଲେ। ତଥାପି ସ୍ୱରକୁ ଯଥା ସମ୍ଭବ ସାଧାରଣ କରି ମା'ଙ୍କ ଘର ଭିତରେ ପାଦ ଦେଇ ପଚାରିଲେ, "ଏତେ ସକାଳୁ ପାନ କାହିଁକି କୁଟୁଛୁ, ମା'?"

"ଦେଖୁନୁରେ... ଏ ପାନଗୁଡ଼ାକ ଶୁଖି କି ଅବସ୍ଥା ହେଲାଣି! ଖାଲି ତଣ୍ଟିରେ ଅଟକୁଛି। ସେ ଶ୍ରୀକାନ୍ତଟା କୋଉ କାମର ହେଲା ନାହିଁ। ସେଦିନ ପାନ ଆଣିବାକୁ କହିଲି ଯେ ଶୁଖିଲା ପାନଗୁଡ଼ାକ ପଇସା ଦେଇ କିଣି ଆଣିଲା।"

"ତାକୁ ଆଉ କହିବୁନି। ତା' କାମ ତ ଜାଣିଛୁ। ମୁଁ ଆଜି ଅଫିସ୍‌ରୁ ଫେରିବାବେଳେ ପାନପତ୍ର ନେଇ ଆସିବି।"

ବଡ଼ ମନଯୋଗ ଦେଇ ପାନ କୁଟୁକୁଟୁ ହଠାତ୍ ବୁଢ଼ୀଙ୍କର ହାତ ଅଟକିଗଲା।

ଏଇ ତ... ଆରମ୍ଭ ହେଲା। ନିଜକୁ କଠିନ କରି ବିଭୁଦତ୍ତ ପ୍ରସ୍ତୁତ ହୋଇ ରହିଲେ।

ପେଜୁଆ ଆଖି ଦିଇଟାକୁ ପୁଅ ଉପରେ ରଖିଲେ ବିଭୁଦତ୍ତଙ୍କର ମା'। କହିଲେ, "ହଇରେ ବାପା, ଏଠି ଆଖପାଖରେ ମନ୍ଦିର କେଉଁଠି ଅଛି କିରେ?"

ମନ୍ଦିର! ଏ ପ୍ରଶ୍ନ ଅନ୍ତତଃ ବିଭୁଦତ୍ତ ଶୁଣିବେ ବୋଲି ଆଶା କରି ନ ଥିଲେ। ଟିକିଏ ଭାବିବା ଭଳି ହୋଇ କହିଲେ, "କେଜାଣି? ମୋ ଜାଣିବାରେ ନାହିଁ। ତୁ ଯଦି କହିବୁ, ପଚାରି ବୁଝିବି। କାହିଁକି କ'ଣ ହେଲା କି?"

"ନାଇଁ ଯେ ଆଜି ସକାଳୁ ସକାଳୁ ଛପ କରିବାବେଳେ ମନେହେଲା କିଏ ଯେମିତି ଗୀତା ପାଠ କରୁଛି। କି ଗମ୍ଭୀର ସ୍ୱର! କି ଭକ୍ତି! ମୋ କାନରେ ଅମୃତ ଢ଼ାଳି ହୋଇଗଲାରେ, ବିଭୁ।"

ବିଭୁଦତ୍ତ ଆଗେଇ ଯାଇ ଧପ୍ କରି ମା'ଙ୍କର ବିଛଣାରେ ବସି ପଡ଼ିଲେ। ମା' ତାହେଲେ ଆଜାନ୍ ଶୁଣି ଗୀତାପାଠ ବୋଲି ଧରି ନେଇଛନ୍ତି? ଆଜିକାଲି କ'ଣ କାନରେ ଟିକିଏ କମ୍ ଶୁଣୁଛନ୍ତି କି ମା'? ଅସମ୍ଭବ କ'ଣ, ବୟାଅଶୀ ବର୍ଷ ବୟସ ହେଲାଣି ଯେତେବେଳେ।

ମନଟା ହାଲୁକା ହୋଇଗଲା ବିଭୁଦତ୍ତଙ୍କର। ଯା ହେଉ, ଗୋଟିଏ ବଡ଼ ସମସ୍ୟାର ସମାଧାନ ହୋଇଗଲା। ଏଥର କିଛି ନ କହି ଚୁପ୍ ରହିଗଲେ ଚଳିଯିବ। ଅନୁରାଧାଙ୍କୁ, ପିଲାଙ୍କୁ ଯାଇ ଚେତେଇ ଦେବେ ସେ। କେହି ଯେମିତି ମସ୍‌ଜିଦ୍ ରହିଥିବା କଥାଟା ମା'ଙ୍କ କାନରେ ନ ପକାନ୍ତି। ମା' ଯଦି ମନେ ମନେ ମନ୍ଦିରର ଗୀତାପାଠ ଶୁଣୁଛନ୍ତି ଭାବି ଉତ୍‌ଫୁଲ୍ଲିତ ହେଉଛନ୍ତି, ତେବେ କ୍ଷତି କ'ଣ? ଗୁଡ଼ାଏ ଅଶାନ୍ତିରୁ ତ ମୁକ୍ତି ମିଳିଯିବ। ଖାଲି ଟିକିଏ ଚୁପ୍ ରହିଗଲେ ବା କେତେବେଳେ କେମିତି ତାଙ୍କ 'ହଁ'ରେ 'ହଁ' ମିଳେଇ ଦେଲେ ହୋଇଗଲା।

ହେଲେ... ହେଲେ ପାରିବେ ବିଭୁଦତ୍ତ? ମା'ଙ୍କୁ ଏମିତି ଗୋଟିଏ ମିଛ ଧାରଣା ନେଇ ରହିଯିବାକୁ ଦେଇ ପାରିବେ?

ହଠାତ୍ ମୁଣ୍ଡ ଭିତରେ କିଏ ଯେମିତି ପୁଳା ପୁଳା କାମୁଡ଼ି ପକେଇଲା ତାଙ୍କୁ। ଯେଉଁ ମା' ପଚାଶ ବର୍ଷ ତଳେ 'ସତ କହିବାକୁ କିଆଁ ଡ଼ରିବି, ସତ କହି ପଛେ ମଲେ ମରିବି'ର ମନ୍ତ୍ର ଧରେଇ ଦେଇଥିଲେ, ତାଙ୍କୁ ଇ ମିଛ କହିବେ ସେ? ନା- ସେ ପାରିବେ ନାହିଁ। ମା'ଙ୍କୁ ପାଖରେ ଧରି ରଖିବା ପାଇଁ ହେଉ ପଛକେ, ସେ ଏମିତି ଗୋଟିଏ ଭୁଲ୍ ଧାରଣାକୁ ତାଙ୍କ ଭିତରେ ସାଇତି ରଖିବାକୁ ଦେବେ ନାହିଁ। ଦେଇ ପାରିବେ ନାହିଁ। ତେଣିକି ମା' ଯାହା ଇଚ୍ଛା ତାହା କରନ୍ତୁ। ତାଙ୍କ ଉପରେ ବିରକ୍ତ ହେବେ ତ ହୁଅନ୍ତୁ। ନିଜ ଜିନିଷପତ୍ର ବାନ୍ଧି ନରି ପାଖକୁ ଚାଲିଯିବେ ତ ଯାଆନ୍ତୁ।

''ମା', ତତେ ଗୋଟିଏ କଥା କହିନି ଏ ଯାଏଁ।''

ବୁଢ଼ୀ ସେମିତି ପାନ କୁଟୁ କୁଟୁ ଉପରକୁ ଚାହିଁଲେ।

ବିଭୁଦତ୍ତ ଗଳା ଝାଡ଼ି ନେଇ କହିଲେ, ''ଏ କ୍ୱାଟର୍ ପାଇବା ପରେ ପୂଜା କରେଇବା ଦିନ ମୁଁ ଜାଣିଲି ଯେ ଏହାର ଠିକ୍ ପଛରେ, 'ବାଡ଼ିପଟ ରାସ୍ତା ସେ ପାଖରେ ମସ୍‌ଜିଦ୍‌ଟାଏ ଅଛି। ମୋର ସେତେବେଳେ ଆଉ କରିବାର କିଛି ନ ଥିଲା...। ଆଜି ତୁ ଯେଉଁଟାକୁ ମନ୍ଦିରର ଗୀତାପାଠ ବୋଲି ଭାବି

ନେଇଛୁ, ସେଇଟା ପ୍ରକୃତରେ ମସ୍‌ଜିଦ୍‌ର ଇମାମ୍‌ଙ୍କ ସ୍ୱର। ସକାଳୁ ଆଜାନ୍ କରୁଥିଲେ ସେ।''

ସତ କଥା କହିଦେଇ ବିଭୁଦତ୍ତଙ୍କୁ ବଡ଼ ହାଲୁକା ଲାଗୁଥିଲା। କ'ଣ କହିବେ ମା'? ତାଙ୍କର ରାୟ ଶୁଣିବା ପାଇଁ ଧୈର୍ଯ୍ୟର ସହ ସେ ଅପେକ୍ଷା କରି ରହିଲେ। କବାଟ ସେ ପାଖରେ ଠିଆ ହୋଇ ରହିଛନ୍ତି ଅନୁରାଧା। ମା' ସିନା ଦେଖି ପାରୁ ନାହାନ୍ତି, ବିଭୁଦତ୍ତ ଠିକ୍ ଦେଖି ପାରୁଛନ୍ତି ତାଙ୍କ ସ୍ତ୍ରୀଙ୍କର ଶାଢ଼ିର ନେଳିଆ କାନି। ସେ ମଧ୍ୟ ମା'ଙ୍କର ନିଷ୍ପତ୍ତି ଶୁଣିବା ପାଇଁ ଅପେକ୍ଷା କରି ରହିଛନ୍ତି। ସେଇ ଆଡ଼େ ଥରେ ଚାହିଁଦେଇ ବିଭୁଦତ୍ତ ମୁଣ୍ଡ ତଳକୁ ପୋତିଦେଲେ।

କିଛି ସମୟ ଚୁପ୍ ରହିବା ପରେ କଥା କହିଲେ ବୁଢ଼ୀ।

''ସତେ? ମସ୍‌ଜିଦ୍‌ଟାଏ ଅଛି ଏଠି? ବଡ଼ ପ୍ରତ୍ୟକ୍ଷ ହୋଇଥିବରେ ଏଇ ମସ୍‌ଜିଦ୍‌ର ପଠାଣ ଠାକୁର!''

''ପ୍ରତ୍ୟକ୍ଷ?'' ମା' ମୁହଁକୁ ଆଶ୍ଚର୍ଯ୍ୟ ହୋଇ ଚାହିଁଲେ ବିଭୁଦତ୍ତ।

''ପ୍ରତ୍ୟକ୍ଷ ଠାକୁର ନ ହେଲେ ଏମିତି ଭେଳିକି ଆଉ କରିବ କିଏ? ତୁ କହୁଛୁ ସକାଳୁ ଏଠି ମୁସଲମାନ୍‌ଙ୍କର ଡ଼ାକ ପଡ଼ିଥିଲା। କାଇଁ, ମୁଁ ତ ସେସବୁ କିଛି ଶୁଣିନି। ...ମନେହେଲା, ବଡ଼ ଗମ୍ଭୀର ଗଳାରେ କିଏ ଯେମିତି ଗୀତା ପାଠ କରୁଛି। ଏଇ ଦେଖୁନୁ, ଏବେ ବି ମୋର ରୁମ ଟାଙ୍କୁରି ଉଠୁଛି। ଛାତି କେମିତି କେମିତି ହୋଇ ଯାଉଛି।''

ପାନକୁଟା କଥା ଭୁଲି ଆଖି ବୁଜି ବିଭୋର ହୋଇ ବସି ରହିଥିଲେ ବିଭୁଦତ୍ତଙ୍କର ବୟାଅଶୀ ବର୍ଷର ବୁଢ଼ୀ ମା'। □□

# ସଂସ୍କାର

କ୍ଷତିରେ କ୍ଷତିରେ ପାଞ୍ଚବର୍ଷ ଚାଲିବା ପରେ ହଠାତ୍ ଦିନେ ପ୍ରୋଗ୍ରେସିଭ୍ ଆଡଭର୍ଟାଇଜିଙ୍ଗ୍ ଏଜେନ୍‌ସି ବନ୍ଦ ହୋଇଗଲା। ଏଇଭଳି ଯେ କିଛି ଗୋଟାଏ ଘଟିପାରେ, ଅନେକ ସେ କଥା ଆଗରୁ ଅନୁମାନ କରି ନେଇଥିଲେ ଏବଂ ସେଥିପାଇଁ ସୁଚିନ୍ତିତ ବ୍ୟବସ୍ଥା ମଧ୍ୟ କରି ରଖିଥିଲେ। କିଏ ନୂଆ ଚାକିରିରେ ଜଏନ୍ କରି ସାରିଥିଲା ତ କିଏ ଅନ୍ୟ ଚାକିରିର ଆପଏଣ୍ଟମେଣ୍ଟ ଲେଟର୍ ପକେଟ୍‌ରେ ଧରି ବୁଲୁଥିଲା। କିନ୍ତୁ ଏଇ ଦଳରେ ନ ଥିଲା ଶେଖର। ଏଜେନ୍‌ସିଟା ଯେ ଏମିତି ବିନା ନୋଟିସ୍‌ରେ ଉଠିଯିବ, ଏଭଳି ଗୋଟିଏ ସମ୍ଭାବନା କଥା ସେ ଆଦୌ ଚିନ୍ତା କରି ପାରି ନ ଥିଲା।

ବିମଳ, ରାଜୁ ଓ ପଟ୍ଟନାୟକ- ଏମାନେ ସବୁ ହସିଥିଲେ। ହସିବା କଥା ତ। ଏଜେନ୍‌ସିର ଲାଭ କ୍ଷତିର ଖବର ଆକାଉଣ୍ଟସ୍ ଅଫିସର୍ ଶେଖର ମିଶ୍ର ଛଡ଼ା ଆଉ କିଏ ଭଲ ଭାବରେ ଜାଣିବ? ଶେଖର ଯେ ଆର୍ଥିକ ଦୂରବସ୍ଥା କଥା ଜାଣି ନ ଥିଲା ତା' ନୁହେଁ। କିନ୍ତୁ ଗଣିତର ହିସାବ କରି କରି ତା' ମୁଣ୍ଡ ଏମିତି ଗୋଳିଆ ହୋଇ ଯାଇଥିଲା ଯେ ସେ ଆଗପଛ କିଛି ଭାବି ପାରି ନଥିଲା।

ବାସ୍- ଦିନେ ଚାକିରି ଚାଲିଗଲା। ପୂରା ଛଅଟା ମାସ ଘରେ ବେକାର ହୋଇ ବସିବାକୁ ପଡ଼ିଲା ତାକୁ। ନା- ଚଳିବାର ଅସୁବିଧା ନ ଥିଲା। ବାପାଙ୍କୁ

ମିଳିଥିବା ସରକାରୀ ଘରେ ରହୁଥିଲା । ବୋଉଙ୍କ ହାତ ରନ୍ଧା ଖାଉଥିଲା । ଏଇଟା ସେଇଟା ହାତଖର୍ଚ୍ଚ ପାଇଁ ନ ମାଗିଲେ ମଧ୍ୟ ବିଭିନ୍ନ ଆଳରେ ବାପା ପଇସା ଗୁଞ୍ଜି ଦେଉଥିଲେ ।

ତଥାପି ମନରେ କେଉଁଠି ଟିକିଏ ଅସ୍ୱସ୍ତି ରହିଯାଉଥିଲା ।

ଏଇମିତି ଗୋଟିଏ ସମୟରେ ଯେତେବେଳେ ସାମନ୍ତ ଆସୋସିଏଟ୍ସର ଆକାଉଣ୍ଟସ୍ ବିଭାଗରେ ଚାକିରିଟା ହୋଇଗଲା, ସେତେବେଳେ ସେ ଜଏନ୍ କରିବାରେ ଆଦୌ ଡେ଼ରି କରି ନ ଥିଲା । ନିଜ ଆତ୍ମବିଶ୍ୱାସ ଫେରି ପାଇଥିଲା ଶେଖର । ଆଉ ବୋଉ ସ୍ୱସ୍ତିର ନିଶ୍ୱାସ ନେଇଥିଲେ । ବଡ ପୁଅକୁ ବାହା କରିବାର ସ୍ୱପ୍ନ ପୁଣିଥରେ ଦେଖିବା ଆରମ୍ଭ କରି ଦେଇଥିଲେ ସେ ।

ହେଲେ ବାପା ?

ବଡ ଅସନ୍ତୁଷ୍ଟ ହୋଇ ପଡିଥିଲେ ବାପା । ହେବା କଥା, ପରେଶ ସାମନ୍ତଙ୍କ ଚରିତ୍ରଟା ତ ଏ ଛୋଟ ସହରରେ କାହାରି ଅଜଣା ନୁହେଁ !

''ତୋର କ'ଣ ସତରେ ଏଇମିତି ଗୋଟିଏ ଲୋକର ଏଜେନ୍ସିରେ ଚାକିରି କରିବା ଦରକାର ?''

ଶେଖରର ଥଟ୍ଟା କରିବାକୁ ଇଚ୍ଛା ହୋଇଥିଲା । ''ମୁଁ କ'ଣ ମାନୀ ଭଳି ସୁନ୍ଦରୀ ଝିଅଟିଏ ହୋଇଛି ଯେ ତୁମେ ଏତେ ଡ଼ରୁଛ ବାପା ?''

ନା- ବାପାଙ୍କୁ ତ ଆଉ ଏମିତି କହି ହୁଏ ନାହିଁ । ସେଥିପାଇଁ ଶାନ୍ତ ଭାବରେ କହିଥିଲା, ''ତାଙ୍କର ବ୍ୟକ୍ତିଗତ ରେପୁଟେସନ୍‌ରେ ଆମର ଯାଏ ଆସେ କେତେ ? ବିଜ୍ଞାପନ ଜଗତରେ ତାଙ୍କର ଗୋଟିଏ ନିଜସ୍ୱ ପ୍ରତିଷ୍ଠା ଅଛି । ସାମନ୍ତ ଏଜେନ୍ସିଜ୍ ପୁଣି ଦେଶର ପ୍ରଥମ କୋଡିଏଟି ଏଜେନ୍ସି ଭିତରୁ ଗୋଟିଏ ।''

ବାପା ଏ ଉତ୍ତରରେ ବିଶେଷ ସନ୍ତୁଷ୍ଟ ହୋଇ ପାରି ନ ଥିଲେ । ବହୁ ନାରୀଙ୍କ ସହିତ ସଂପର୍କ ରଖୁଥିବା ଏବଂ ମଦ ପିଇ ବିଭିନ୍ନ ସ୍ଥାନରେ ପଡି ରହୁଥିବା ପରେଶ ସାମନ୍ତର ସଂସ୍ଥାରେ ଯେ ତାଙ୍କ ପୁଅ କାମ କରିବ, ଏ କଥା ସେ ଠିକ୍ ମାନି ନେଇ ପାରୁ ନ ଥିଲେ । ରହି ରହି କହିଥିଲେ, ''ତା' ଠିକ୍ ଯେ ହେଲେ ଏଇଭଳି ଗୋଟିଏ ନୀତିହୀନ ମଣିଷ...''

ଓଃ, ପୁଣି ସେଇ ନୀତି, ଆଦର୍ଶର ଭାଷଣ । ଶେଖର ମନେ ମନେ ଗୁଣି ହେଲା : ଯାହା କରିବ କରିବ, ହେଲେ ସ୍ୱାଧୀନତା ସଂଗ୍ରାମୀ ପରିବାରରେ

ଆଦୌ ଇନ୍କ୍ଲୁ ହେବନି। କେବଳ ଲେକ୍ଚର୍ ଶୁଣି ଶୁଣି ଜୀବନ ଯିବ।

''ତୁମେ ଚିନ୍ତା କରନି, ବାପା। ସେମିତି କିଛି ଦେଖିଲେ ମୁଁ ତୁରନ୍ତ ଅନ୍ୟ ବ୍ୟବସ୍ଥା କରିବି।'' ଶେଖର ଆଲୋଚନା ଛିଣ୍ଡେଇ ଦେବା ପାଇଁ ତରବର ହୋଇ କହି ପକେଇଥିଲା ସେଦିନ।

ମାର୍ଚ୍ଚ ପହିଲାରୁ ସାମନ୍ତ ଆସୋସିଏଟ୍ସରେ ନୂଆ ଚାକିରି ଆରମ୍ଭ ହୋଇଥିଲା ତା'ର। ସେଇ ଠିକ୍ ଆଗର ଚାକିରି ଭଳି ଲାଭ କ୍ଷତି ହିସାବ ରଖିବାର ଦାୟିତ୍ୱ। ଶେଖରର ଯେଉଁଟା ଅତି ପ୍ରିୟ କାମ। ତେଣୁ ଚାକିରି ନେଇ ଅଶାନ୍ତିର ପ୍ରଶ୍ନ ଇ ନ ଥିଲା।

କିନ୍ତୁ...

ବେଳେବେଳେ 'କିନ୍ତୁ'ଟିଏ ଆସି ତା' ମନ ଭିତରଟାକୁ ଅସ୍ତବ୍ୟସ୍ତ କରିପକାଏ ମ୍ୟାନେଜିଂ ଡ଼ିରେକ୍ଟର ପରେଶ ସାମନ୍ତଙ୍କୁ ନେଇ। ଚାକିରିର କେଇଟା ମାସ ଭିତରେ ଶେଖର ବୁଝି ଯାଇଥିଲା ଯେ ସହରର କୋଡ଼ିଏଟା ଲୋକ ସାମନ୍ତଙ୍କୁ ନେଇ ଯେଉଁ ଫୁସୁର ଫାସର ହୁଅନ୍ତି, ସେଇଟା କେବଳ ଉଡ଼ା କଥା ନୁହଁ। ସେଥିରେ ସତ୍ୟତା ରହିଛି। ବିବାହିତ, ପୁଣି ଦଶବର୍ଷର ଓ ବାରବର୍ଷର ପିଲା ଦୁଇଟି ତାଙ୍କର। ଅଥଚ ଆଫେଆର୍‌ର ଯେମିତି ଅନ୍ତ ନାହିଁ। କିଛି ଲୁଚାଛପା ନୁହଁ, ଖୋଲାଖୋଲି ଭାବେ, ସମସ୍ତଙ୍କୁ ଦେଖାଇବା ଭଳି ଏସବୁ କରନ୍ତି ସେ। ସମାଜ ସମ୍ମୁଖରେ ନିଜର ସକ୍ଷମତାର ଡ଼ିଣ୍ଡିମ ପିଟି ଚାଲନ୍ତି ଯେମିତି!

ହେଃ, ନିଜକୁ ଧମକାଏ ଶେଖର। ସବୁବେଳେ ବାପାଙ୍କ ଭାଷଣ ଶୁଣି ଶୁଣି ସେ ବି କ'ଣ ଗୋଟାଏ ଆଦର୍ଶବାଦୀ ଜୀବ ହୋଇ ଯାଉଛି? ଅନ୍ୟ ମଣିଷମାନଙ୍କର ନୈତିକ ମୂଲ୍ୟବୋଧର ହିସାବ କରି ବସିଲେ, ସେ କ'ଣ ଏ ଦୁନିଆରେ ତିଷ୍ଠି ପାରିବ?

ମନକୁ ଦୃଢ କରି ଶେଖର କାମ କରି ଚାଲେ। ବେଶ୍ ଭଲ ହିଁ କଟୁଥିଲା ତା' ଦିନଗୁଡ଼ିକ। ତିନିମାସ ଭିତରେ ଚାକିରି ପର୍ମାନେଣ୍ଟ ହୋଇଗଲା। ପୁଣି ଛଅଟା ମାସ ପରେ ଏକ୍ଜେକ୍ୟୁଟିଭ୍‌ର ଅନ୍ୟମାନଙ୍କ ସହିତ ତା'ର ମଧ୍ୟ 'ସ୍ୟାଲେରି ରିଭିଜନ୍' ହୋଇଗଲା। ଏଥର ଭଲ ଦରମାଟିଏ ମିଳୁଥିଲା ଶେଖରକୁ।

ସେଦିନ ଶୁକ୍ରବାର। ଅନ୍ୟବାର ଅପେକ୍ଷା କାମର ବୋଝ ଥାଏ ସବୁଠାରୁ ଅଧିକ। କମ୍ପ୍ୟୁଟର୍‌ର ପର୍ଦ୍ଦା ଭିତରେ ଯେତେବେଳେ ନିଜକୁ ହଜେଇ ଦେଇଥିଲା

ଶେଖର, ଠିକ୍ ସେତିକିବେଳେ ପରେଶ ସାମନ୍ତଙ୍କ ଡ଼କରା ଆସିଲା। ଏଇମିତି ସିଧାସଳଖ ଏମ୍.ଡି.ଙ୍କ ସାଙ୍ଗରେ କେବେହେଲେ ଦେଖା କରିବାକୁ ହୋଇନି ଶେଖରକୁ। ସେଇଟା ତା' 'ବସ୍' ରଘୁନାଥ ତ୍ରିପାଠୀଙ୍କ କାମ। ରଘୁନାଥ ସାତଦିନ ଛୁଟୀରେ ଯାଇଛନ୍ତି, କ'ଣ ସେଇଥି ପାଇଁ... ?

ସାମାନ୍ୟ କୁଣ୍ଠିତ ଭାବରେ ସାମନ୍ତଙ୍କ କ୍ୟାବିନରେ ପାଦ ଦେଇଥିଲା ସେ।

''ବସ, ଶେଖର,'' କୌଣସି ଉପକ୍ରମଣିକା ନ କରି ପରେଶ ସାମନ୍ତ ଆରମ୍ଭ କରିଥିଲେ, ''ଅନନ୍ତ ନଗର କ୍ଲଥ୍ ମିଲ୍‌ସର ଯେଉଁ ଆକାଉଣ୍ଟ ଆମେ ପାଇଥିଲୁ, ତା'ର ବିଲିଙ୍ଗ୍‌ରେ ବହୁତ ଗୋଳମାଳ ରହିଯାଇଛି।''

ଗଳାରେ ଜୋର ଦେଇ ଶେଖର କହିପକେଇଥିଲା, ''କିନ୍ତୁ ସାର୍, ମୁଁ ନିଜେ ସେସବୁ ଭଲକରି ଦେଖି ପଠେଇଥିଲି। କେଉଁଠି ତ କିଛି ଭୁଲ୍ ନ ଥିଲା।''

''ନା, ଆମ ତରଫରୁ ନୁହେଁ। ଗୋଳମାଳ ହୋଇଛି ସେମାନଙ୍କର ମିଲ୍‌ରେ। ସେଠାକାର ଫାଇନାନ୍‌ସ ଅଫିସର୍ ମିଲ୍‌ର ଗୁଡାଏ ଟଙ୍କା ଆତ୍ମସାତ୍ କରି ସବୁ କାଗଜ ନଷ୍ଟ କରିଦେଇଛି। ଏବେ ସେ ଜେଲ୍‌ରେ। ଟଙ୍କା ମଧ୍ୟ ମିଳିଛି। କିନ୍ତୁ ଆମକୁ କାଗଜପତ୍ର ପୁଣି ସଜାଡି ଦେବାକୁ ହେବ। ସେଥିପାଇଁ ସେମାନେ ଆମକୁ ଡ଼କାଇଛନ୍ତି। ଯେମିତି ହେଲେ କାଲି ଯିବାକୁ ପଡିବ। କାଲି ପଅରଦିନ ଭିତରେ ସବୁ ନ କଲେ ପୁଣି ଲମ୍ବା ପୂଜାଛୁଟି ପଡିଯିବ। ଆମର ଏତେଗୁଡାଏ ଟଙ୍କା ଅଟକି ରହିଛି।''

ଶେଖର କ'ଣ ଯେମିତି ଭାବି ହେଲା, ''ହେଲେ ସାର୍, ଅନନ୍ତନଗରରେ କ'ଣ ଗୋଟିଏ ଡାକ୍ତରୀ କନ୍‌ଭେନ୍‌ସନ୍ ଚାଲିଛି ବୋଧହୁଏ। ଛୋଟ ଜାଗା, କେଇଟା ବା ହୋଟେଲ୍? ରହିବା ଜାଗା ମିଳିବ ନାହିଁ। ମିଲ୍‌ର କ'ଣ ଗେଷ୍ଟ ହାଉସ୍ ଅଛି?''

''ନା- ନାହିଁ।'' ପରେଶ ସାମନ୍ତ କିଛି ସମୟ ପାଇଁ ଚୁପ୍ ରହିଲେ। ସୁନେଲି ରଙ୍ଗର କ୍ରସ୍ ପେନ୍‌କୁ ଦୁଇ ଆଙ୍ଗୁଠିରେ ବୁଲାଇ ବୁଲାଇ ନିଷ୍ପତ୍ତିଟିଏ ନେଉଥିଲେ ସେ। ''ୱେଲ୍, ଦେଖାଯିବ। ଯଦି ନିହାତି କେଉଁ ହୋଟେଲ୍‌ରେ ରୁମ୍ ନ ମିଳେ, ତେବେ,'' ଝରକା ଦେଇ ବାହାରକୁ ଚାହିଁଲେ ପରେଶ ସାମନ୍ତ, ''ମୋ ବାପା ରହନ୍ତି ଅନନ୍ତ ନଗରରେ। ତାଙ୍କ ପାଖରେ ରାତିଟିଏ ରହିଯାଇ

ହେବ ।''

ଶେଷରେ ସେୟା ହିଁ କରିବାକୁ ହେଲା । ବହୁ ଚେଷ୍ଟା ସତ୍ତ୍ୱେ କୌଣସି ହୋଟେଲ୍‌ରେ ଜାଗା ମିଳିଲା ନାହିଁ । ବାଧ୍ୟ ହୋଇ ପରେଶଙ୍କ ବାପାଙ୍କ ପାଖରେ ରହିବାର ସ୍ଥିର ହେଲା ।

ସଦାଶିବ ସାମନ୍ତ । ସତୁରୀ ଛୁଇଁ ଆସୁଛି ତାଙ୍କୁ । ଦଶମାସ ତଳେ ପରେଶଙ୍କ ମା'ଙ୍କର ମୃତ୍ୟୁ ହୋଇଯାଇଛି । ଏବେ ବୁଢା ଏକା ରହନ୍ତି । ଦୁର୍ବଳ ସ୍ୱାସ୍ଥ୍ୟ । ଡ଼ାଇବେଟିକ୍ ରୋଗୀ । ଦେଖାଶୁଣା କରିବାକୁ କେବଳ ପ୍ରୌଢ଼ା ଚାକରାଣୀଟିଏ- ଉର୍ବଶୀ । 'ଅନ୍ଧ'ଟିଏର ନାମ 'ପଦ୍ମଲୋଚନ' ହେବା ଭଳି ଏ ଉର୍ବଶୀ । କଳା ମସ୍ ମସ୍ ଦେହ । ହୁଏତ କେବେ ଚେହେରାରେ ଲାଳିତ୍ୟ ଥିଲା । ଏବେ ବୟସ ସବୁ ପୋଛି ନେଇ ଯାଇଛି । ତାକୁ କିନ୍ତୁ ଧରି ରଖିବାର ଚେଷ୍ଟା କରିଛି ଉର୍ବଶୀ ଚକମକିଆ ଶାଢ଼ୀ, ଚିକ୍‌କଣ ଖୋଷା ଆଉ କପାଳର ବଡ଼ କୁଙ୍କୁମ ଟୋପା ମାଧ୍ୟମରେ । କଲିଂବେଲ୍ ଶବ୍ଦରେ ସେ ହିଁ ଆସି କବାଟ ଖୋଲିଥିଲା, ''ଆରେ ସାନବାବୁ ଯେ !'' ନଇଁପଡି ହାତ ଯୋଡିଥିଲା ସେ, ''ଏମିତି ଖବର ନ ଦେଇ... ବାବୁ ଭାରି ଖୁସି ହେବେ । କାଲି ହିଁ ଆପଣଙ୍କ କଥା କହୁଥିଲେ ସେ ।''

ତାକୁ ପ୍ରାୟ ଆଡେଇ ଦେବା ଭଳି ଧସ୍‌ଧସ୍ କରି ଘର ଭିତରେ ପଶିଗଲେ ପରେଶ । କଠିନ ଗଳାରେ ପଚାରିଲେ, ''ବାପା କାହାନ୍ତି ?''

''ବାବୁ ତ ଏଇ ମାତ୍ର ଖାଇ ଦେଇ ଶୋଇଗଲେ । ମୁଁ ଉଠେଇ ଦେଉଛି ।''

''ଥାଉ ଥାଉ । ମୁଁ ଏବେ ବାହାରକୁ ଯିବି । ଖାଲି ଜିନିଷ ରଖି କହି ଦେବାକୁ ଆସିଲି । ହଁ, ଆଜି ରାତିଟା ଏଇଠି ରହିବି । ଏ ବାବୁ ମଧ୍ୟ ରହିବେ ।''

''ୟେ ଗୋଟିଏ କଥା !'' କେମିତି ଗୋଟିଏ ନିଜର ଭାବ କରି ଉର୍ବଶୀ କହିଲା, ''ଆପଣ ଆସି ଚାଲିଯିବେ, ଆଉ ମୁଁ ବାବୁଙ୍କୁ ଉଠେଇବିନି ! ବାବୁ ମତେ ଆଉ ରଖିବେଟି ?''

ପରେଶ କୌଣସି ଉତ୍ତର ଦେଲେ ନାହିଁ । କିନ୍ତୁ ମୁହଁର ଭାବ ବେଶୀ କଠିନ ହୋଇଗଲା ।

ଶେଖରଙ୍କୁ ବଡ ଅଦ୍ଭୁତ ଲାଗିଲା । ସ୍ୱରରେ ମହୁ ଗୋଳି, ଗଦଗଦ ହୋଇ ଅନ୍ୟ ନାରୀମାନଙ୍କ ସହିତ କଥା କହୁଥିବା 'ଫ୍ଲର୍ଟ', 'ଓମ୍ୟାନାଇଜର୍' ପରେଶ

ସାମନ୍ତଙ୍କ ସହିତ ସେ ପରିଚିତ। କିନ୍ତୁ ଏଭଳି କଠୋର ସ୍ୱର, ବିରକ୍ତିପୂର୍ଣ୍ଣ କଥାବାର୍ତ୍ତା ?

ପୁଣି କାରଣ କିଛି ନାହିଁ। ବିଚରା ଚାକରାଣୀଟି ଅତି ଭଲରେ କଥା କହୁଛି, କିନ୍ତୁ କି ଭାବରେ, କି ଭାଷାରେ ତାକୁ ଜବାବ ଦେଉଛନ୍ତି ପରେଶ ? ଏମିତି ଅଯଥା ଖିଟ୍‌ଖିଟ୍ ହେବା...। କେଜାଣି, ହୁଏତ ଆଗାମୀ ମିଟିଙ୍ଗ୍ ଚିନ୍ତାରେ ଏମିତି ଟେନ୍‌ସ ହୋଇ ରହିଛନ୍ତି ସେ। ଯେତେ ଯାହା ହେଲେ ଦଶ ଲକ୍ଷ ଟଙ୍କାଟା ତ ଆଉ ଗୋଡି ମାଟି ନୁହଁ।

ସେଦିନ ଅପରାହ୍ନରେ ମିଲ୍‌ର ଜଣେ ସିନିୟର୍ ମ୍ୟାନେଜର୍ ପ୍ରଭାତ ରାୟଙ୍କ ସହିତ ମିଟିଙ୍ଗ୍ ଥିଲା। ପୁରୁଣା ଚିଠିପତ୍ର କାଢ଼ି ଫାଇଲ୍ ଘାଣ୍ଟି ବହୁତ କିଛି ତଥ୍ୟ ଏକତ୍ରିତ କରାଯାଇ ପାରିଥିଲା। ଅପରାହ୍ନ କଟିଯାଇ ନଇଁ ଆସିଲା ସନ୍ଧ୍ୟା। ପୁଣି ସନ୍ଧ୍ୟା ବାଟ ଛାଡି ଦେଇଥିଲା ରାତିକୁ। ଛଅ ଘଣ୍ଟାର ପରିଶ୍ରମ କିନ୍ତୁ ବୃଥା ଯାଇ ନଥିଲା। ପୂରା ଦଶଲକ୍ଷଟା ନ ହେଉ, ତାହାର ଗୋଟିଏ ବଡ ଭାଗ ଯେ କେଇଟା ଦିନ ଭିତରେ ମିଳିଯିବ, ତା' ନେଇ ଆଉ ଶେଖର ମନରେ ଦ୍ୱିଧା ନ ଥିଲା। କ୍ଲାନ୍ତ ହୋଇ ରାତି ଆଠଟା ବେଳେ ପରେଶଙ୍କ ସହିତ ଟ୍ୟାକ୍‌ସିରେ ଫେରିବାବେଳେ ସେ ଉଲ୍ଲସିତ ଭାବରେ କହି ପକେଇଥିଲା, ''ଦେଖିବେ ସାର୍, ବାକୀ ଟଙ୍କାର କାଗଜ ପତ୍ର ନିଶ୍ଚୟ ମିଳିଯିବ। ମୁଁ ଆଉଥରେ ଆମ ଅଫିସ୍‌ରେ ଫାଇଲ୍‌ଗୁଡାକ ଦେଖିବି।''

ପରେଶଙ୍କ ମୁଣ୍ଡରୁ ବୋଝଟାଏ ଚାଲିଯାଇଥିଲା ଯେମିତି। ''ଥ୍ୟାଙ୍କ୍‌ସ ଶେଖର। ତମେ ଯେମିତି ଭାବରେ ଏଇତକ ଏକାଠି କଲ, ଦିସ୍ ଇଜ୍ ରିଏଲି ସମ୍‌ଥିଙ୍ଗ୍। କାଲି ସକାଳେ ଆଉ ଥରେ ଆମେ ବସି ସବୁ କିଛି ଠିକ୍ କରି ନେବା। ମୁଁ ଭାବୁଛି ତିନି ଚାରି ଘଣ୍ଟା ଯଥେଷ୍ଟ ହେବ...ଚାଲ, ଉଇ ମଷ୍ଟ ସେଲିବ୍ରେଟ୍ ଟୁଡେ।''

ଗୋଟିଏ ଦାମୀ ହୋଟେଲ୍‌ରେ ବସି ରାତିର ଖାଇବା ଶେଷ କରିଥିଲେ ସେମାନେ। ଶେଖରକୁ ବଡ ଅସ୍ୱସ୍ତି ଲାଗିଥିଲା। କି ପୁଅ ଯେ! ବାପାଙ୍କ ପାଖରେ ରାତିଟିଏ ମାତ୍ର କଟାଇବେ। ସେଇ ରାତିଟି ଘରେ ତାଙ୍କ ସାଙ୍ଗରେ ଏକାଠି ଖାଇଥିଲେ ହୋଇ ନ ଥାଆନ୍ତା ? କ'ଣ ବାପାଙ୍କ ପାଖରେ ଡ୍ରିଙ୍କ କରି ପାରିବେନି ବୋଲି ଏମିତି ବାହାରେ ଖାଇବା ବ୍ୟବସ୍ଥା କରିନେଲେ ସେ ?

ଆଉ ରହି ନପାରି ସେ ପଚାରିଦେଲା, ''ସାର୍, ଆପଣଙ୍କ ବାପା ରାତିରେ ଏକାଠି ଆପଣଙ୍କ ସହିତ ଖାଇବେ ବୋଲି ଅପେକ୍ଷା କରି ନଥିବେ ତ? ଉର୍ବଶୀ ବୋଧହୁଏ ସେଇଭଳି କ'ଣ କହୁଥିଲା।''

''ଆଃ...'' କେମିତି ଗୋଟିଏ ବେଖାପିଡ଼ିଆ ଶବ୍ଦ ପେଟରୁ ବାହାର କରିଲେ ପରେଶ। ''ଉର୍ବଶୀ କହୁଥିଲା? ସେଠୁ କ'ଣ ହୋଇଗଲା?'' ଅସ୍ପଷ୍ଟ ଭାବରେ ତାଙ୍କ ପାଟିରୁ ବାହାରିଗଲା, ''ବଲ୍ଡାଡ୍ ମାଇକିନା।''

ଶେଖର କାନରେ କଥାଟି ଠିକ୍ ପଡ଼ିଥିଲା। ହେଲେ ଖୋଳିତାଡ଼ି ପଚାରିବାଟା କ'ଣ ସମୀଚୀନ ହୋଇଥାଆନ୍ତା? ଏମ୍.ଡି.ଙ୍କ ଘରୋଇ ମାମଲାରେ ନାକ ଗେଞ୍ଜିବାର କିଛି ମାନେ ହୁଏ?

ସଦାଶିବ ସାମନ୍ତଙ୍କ ଘରକୁ ଫେରି ଶେଖରର ଆଶଙ୍କା ଠିକ୍ ପ୍ରମାଣିତ ହୋଇଗଲା। ନ ଖାଇ ସେମାନଙ୍କ ପାଇଁ ଅପେକ୍ଷା କରି ବସିଥିଲେ ପରେଶଙ୍କ ବାପା।

''ଆରେ ତୁ ଖାଇଦେଇ ଚାଲିଆସିଲୁ? ତୁ ଭଲ ପାଉ ବୋଲି ମୁଁ ନିଜେ ଯାଇ ଇଲିସି ମାଛ କିଣି ଆଣିଲି।''

''ବିଜିନେସ୍ ଡିନର୍।'' ସ୍ଥିର ଭାବରେ ମିଛ କହି ଦେଲେ ପରେଶ, ''ତା'ଛଡ଼ା, ମୁଁ ଆଜିକାଲି ଆଇଁଷ ଟିକିଏ କମ୍ ଖାଉଛି।''

ଅଳ୍ପ ସମୟ ଆଗରୁ ରେଷ୍ଟୋରାଁରେ ବସି କେବଳ ଚିକେନ୍ ଓ ଚିଙ୍ଗୁଡ଼ି ଖାଇଥିବାର ଦୃଶ୍ୟଟି ଶେଖରର ଆଖି ସାମ୍ନାରେ ଭାସିଗଲା। କିନ୍ତୁ ଚୁପ୍ ହୋଇ ରହିଲା ସେ। ସେ ବା କାହିଁକି କିଛି କହିବ? ଜଣେ ଚାଳିଶ ବର୍ଷ ବୟସରେ ଯଦି ଆଖି ପଲକ ନ ପକାଇ ସତୁରୀ ବର୍ଷ ବୁଢ଼ାବାପାକୁ ମିଛ କହିବ, କହୁ ସେ।

ସଦାଶିବ ବୋଧହୁଏ ଏଇଭଳି କିଛି ଉତ୍ତର ଆଶା କରିଥିଲେ ଏବଂ ଏଇଭଳି କିଛି ଯେ ହେବ, ତାହା ଯେମିତି ଜାଣିଥିଲେ। ମୁହୂର୍ତ୍ତେ ଚୁପ୍ ରହି ଶାନ୍ତ ଭାବରେ ସେ ପୁଣି କହିଲେ, ''ହଉ ନ ଖାଇଲେ ନାହିଁ, ମିଠା ଟିକିଏ ଖା... ଉର୍ବଶୀ, ମତେ ରୁଟୀ ସନ୍ତୁଳା ଦେ। ଆଉ ସାନବାବୁ ହେରିକାଙ୍କୁ ମିଠା ଦେ।''

''ମୁଁ ମିଠା ଖାଇବି ନାହିଁ।'' କଠୋର ଭାବରେ ପରେଶ କହିଲେ।

ଦୁଇଟା ପ୍ଲେଟ୍‌ରେ ରାବିଡ଼ି ଆଣି ଉର୍ବଶୀ ସେତେବେଳକୁ ସାମ୍ନାରେ ରଖି

ସାରିଥିଲା ।

ଶେଖର ନିଜ ପ୍ଲେଟ୍‌ରୁ ଚାମଚେ ରାବିଡ଼ି ପାଟିରେ ଦେଇ କହି ପକେଇଲା, "ସାର୍ ବହୁତ ଭଲ ହୋଇଛି। ଖାଆନ୍ତୁ ନା ଟିକିଏ।"

ହଠାତ୍ ଭୀଷଣ ରାଗିଗଲେ ପରେଶ, "ଡ଼ିଡ୍ ଆଇ ଆସ୍କ୍ ଫର ଇୟୋର ଓପିନିଅନ୍? ମୁଁ ତୁମର ମତାମତ ଜାଣିବାକୁ ଚାହିଁଥିଲି କି?"

ଚୌକୀ ଠେଲି ବଡ ବଡ ପାଦ ପକେଇ ସେଠୁ ଚାଲିଗଲେ ସେ।

ଶେଖର ଅପ୍ରସ୍ତୁତ ହୋଇ· ପଡ଼ିଲା। ଅଚିହ୍ନା ମଣିଷଙ୍କ ସାମ୍ନାରେ ଏଭଳି ଗୋଟିଏ ଅସ୍ୱସ୍ତିକର ଘଟଣା! ନା- ଏମିତି କିଛି ଘଟିବା ଯେମିତି ଖୁବ୍ ସାଧାରଣ କଥା, ସେଇଭଳି ଭଙ୍ଗୀରେ ବସି ଲୁଚି, ସନ୍ତୁଳା ଖାଉଥିଲେ ସଦାଶିବ ସାମନ୍ତ।

ହେଲେ ଯା'ପରେ କି ଶେଖର ରାବିଡ଼ି ଖାଇ ପାରେ? କୌଣସି ମତେ କ୍ଲାନ୍ତିର ଆଳ ଦେଖାଇ ସ୍ଥାନ ଛାଡ଼ି ଚାଲିଗଲା ସେ।

ସଦାଶିବ ସାମନ୍ତଙ୍କ ଘର ଛୋଟ। ଦୁଇଟି ମାତ୍ର ଶୋଇବା ଘର। ସେ ପାଖର କୋଠରୀଟିରେ ତେଣୁ ଦୁଇ ଜଣଙ୍କର ଶୋଇବା ବ୍ୟବସ୍ଥା ହୋଇଥିଲା। ଶେଖର କୋଠରୀ ଭିତରେ ପଶିଲା। ସେପର୍ଯ୍ୟନ୍ତ ଲୁଗା ନ ବଦଳାଇ ଝର୍କା ପାଖରେ ଠିଆ ହୋଇ ସିଗାରେଟ୍ ଟାଣୁଥିଲେ ପରେଶ। ଶେଖରର ଜୋତା ଶବ୍ଦରେ ବୁଲି ଚାହିଁଲେ।

"ସରି ଶେଖର। ମୁଁ ବହୁତ ଦୁଃଖିତ।"

"ଦ୍ୟାଟ୍‌ସ ଓକେ।" ନିସ୍ପୃହ ଭାବରେ ଶେଖର କହିଲା।

"ନା- ତମକୁ ଏଭଳି ଭାବରେ କହିବା ମୋର ଉଚିତ୍ ହୋଇ ନାହିଁ। ମୁଁ ହଠାତ୍ ରାଗିଗଲି। ରାଗଟା କିନ୍ତୁ ତୁମ ଉପରେ ନୁହଁ..." କଥା କହୁ କହୁ ଚୁପ୍ ହୋଇଗଲେ ସେ।

ରାଗଟା ଯଦି ତା' ଉପରେ ନୁହେଁ, ତେବେ କାହା ଉପରେ? ତାଙ୍କ ବାପାଙ୍କ ଉପରେ? ନା ଉର୍ବଶୀ ଉପରେ?

"ତୁମେ ସେ ସବୁ ବୁଝିବନି, ଶେଖର। ଡ଼େରି ହେଲାଣି ଶୋଇ ପଡ। କାଲି ପୁଣି ସକାଳୁ ବହୁତ କାମ। ଗୁଡ୍ ନାଇଟ୍।"

ସିଗାରେଟ୍ ପିଆ ସରିବା ପରେ ମଧ୍ୟ ବହୁତ ସମୟ ଧରି ସେଇଠି ଝର୍କା ପାଖରେ ଠିଆ ହୋଇ ରହିଲେ ପରେଶ। କୋଠରୀର ଜିରୋ ପାୱାର୍

ବଲ୍‌ବରେ କେମିତି ଭିନ୍ନ ଲାଗୁଥିଲା ମଣିଷଟି। ନିଜ ବିଛଣାରୁ ତାଙ୍କୁ ହିଁ କେବଳ ଲକ୍ଷ୍ୟ କରୁଥିଲା ଶେଖର।

ଏଠି ପରେଶ। ସେପାଖ ଘରେ ସଦାଶିବ ସାମନ୍ତ। ସାରାଟା ବଜାର ଖୋଜି ଏକମାତ୍ର ପୁଅ ପାଇଁ ଇଲିସି ମାଛ, ମିଠା, ରାବିଡ଼ି ଆଣି ସାରିବା ପରେ ଏକା ଏକା ବସି ରୁଟି, ସନ୍ତୁଳା ଖାଉଥିବା ଡାଏବେଟିକ୍ ବୁଢ଼ାଙ୍କର ଛବି ଶେଖର ସାମ୍ନାରେ ଭାସି ଉଠିଲା। ପାଖାପାଖି ବସେଇ ଦେଖିଲେ ଦୁଇଜଣଙ୍କ ଭିତରେ ଯେ କୌଣସି ସଂପର୍କ ଥାଇପାରେ ତା' ଭାବି ହେବ ନାହିଁ। ଅଥଚ ଦୁଇ ଧମନୀରେ ସେଇ ଏକା ରକ୍ତ !

ଆହା, ଏଇମିତି ବାପଟିଏର ଏ ପୁଣି କେମିତିଆ ପୁଅ ?

ପରଦିନ ଅନନ୍ତନଗରରେ ସକାଳ ଆସିଥିଲା ସଜେଇ ହୋଇ, ଆଗାମୀ ଦଶହରାର ସୂଚନା ନେଇ। କିନ୍ତୁ ଘରର ପରିବେଶରେ କୌଣସି ପରିବର୍ତ୍ତନ ଆସି ନ ଥିଲା। ଦୟା କଲା ଭଳି ଚାହା କପେ ପିଇନେଇ ଜଳଖିଆ ପ୍ଲେଟ୍‌ରେ ହାତ ମଧ୍ୟ ନ ଦେଇ ଘରୁ ବାହାରି ଯାଇଥିଲେ ପରେଶ। ଏଇମିତି କରିବାକୁ ଶେଖରର ବିବେକ ବାଧା ଦେଉଥିଲେ ମଧ୍ୟ, ତା'ର କରିବାର କିଛି ନ ଥିଲା। ନୀରବ ଭାବରେ ସେ ପରେଶଙ୍କ ସାଙ୍ଗରେ ବାହାରି ଯାଇଥିଲା।

ବଡ ଅଦ୍ଭୁତ ସହରେ !

ବେଶୀ ସମୟ ଆଉ ଏ ବିଷୟଟିକୁ ତଉଲେଇ ଦେଖିବାର ସୁଯୋଗ ପାଇଲା ନାହିଁ ଶେଖର। ପୁଣି ଫାଇଲ୍, କାଗଜପତ୍ର ନେଇ ବସିବାକୁ ହେଲା ତାକୁ। ଏକା ଟାଣରେ ପାଞ୍ଚ ଘଣ୍ଟା। ନଅଟାରୁ ଦୁଇଟା। କାଠ ଚୌକୀ ଉପରେ ସିଧା ହୋଇ ବସି ଅଣ୍ଟାପିଠି ଦରଜ ହୋଇଯାଇଥିଲା ତା'ର। ଯାହେଉ, କାମ ଶେଷ ହେଲା। ପ୍ରାୟ ଆଠ ଲକ୍ଷ ପଚାଶ ହଜାର ଟଙ୍କାର ହିସାବ ମିଳିଗଲା। ପରଦିନ ବ୍ୟାଙ୍କ ଡ୍ରାଫ୍‌ଟ କରାଇ କୋରିଅର୍ ଦ୍ୱାରା ପଠେଇଦେବେ ମ୍ୟାନେଜର୍ ପ୍ରଭାତ ରାୟ।

ଚୌକୀ ଠେଲି ପରେଶ ଉଠି ଠିଆହେଲେ। ସିଗାରେଟ୍‌ରେ ଲାଇଟର୍ ଛୁଆଁଇ ନେଇ ପଚାରିଲେ, "ଏବେ କ'ଣ କରିବ, ଶେଖର ? ତୁମର ଏଠି ଯଦି କେହି ଜଣାଶୁଣା ଅଛନ୍ତି, ତାଙ୍କ ସହିତ ତୁମେ ଦେଖା କରି ପାର।"

"ନା ସାର୍," ମୁଣ୍ଡ ହଲାଇଲା ଶେଖର, "ମୁଁ ଏଠି କାହାକୁ ଜାଣେନି।

ଟ୍ରେନ୍ ତ ରାତି ଡେରିରେ। ମୁଁ ବରଂ ଯାଇ ଟିକିଏ ରେଷ୍ଟ ନେବି।''

''ଠିକ୍ ଅଛି, ତୁମେ ଟ୍ୟାକ୍ସି ନେଇ ଚାଲିଯାଅ। ଆରେ ହଁ, ମତେ ଟିକିଏ ବାଟରେ ଓହ୍ଲେଇ ଦେବ। ମୋର ଜଣେ ଘନିଷ୍ଠ ବନ୍ଧୁ ଏଇଠି ରହନ୍ତି। ତାଙ୍କୁ ଦେଖା କରି ମୁଁ ସାଢ଼େ ସାତଟା ସୁଦ୍ଧା ଫେରି ଆସିବି। ତା'ପରେ ଷ୍ଟେସନ୍ ଏକାଠି ଯିବା।''

ଅନନ୍ତନଗରର ଦ୍ୱିତୀୟ ବ୍ଲକ୍‌ରେ ଯେଉଁଠି ଖୁବ୍ ସୁନ୍ଦର ସୁନ୍ଦର ଘରର ସମାରୋହ, ସେଇଠି ପରେଶ ସାମନ୍ତଙ୍କର ''ଘନିଷ୍ଠ ବନ୍ଧୁ'' ଜଣଙ୍କ ରହନ୍ତି।

ଘର ସାମ୍ନାରେ ଟ୍ୟାକ୍ସି ରହିବା କ୍ଷଣି କବାଟ ଖୋଲିଗଲା। ଅତ୍ୟାଧୁନିକ ଡିଜାଇନ୍‌ର ସାଲଓ୍ୱାର କମିଜ୍ ପିନ୍ଧିଥିବା ଜଣେ ମହିଳା ପ୍ରାୟ ଦୌଡ଼ି ଦୌଡ଼ି ଆସି ପରେଶଙ୍କ ବେକରେ ଝୁଲି ପଡ଼ିଲେ।

''ହାଏ ସୁଇଟ୍ ହାର୍ଟ! ୟୁ ଲୁକ୍ ଓ୍ୱଣ୍ଡରଫୁଲ୍।'' ପାଶ୍ଚାତ୍ୟ ଭଙ୍ଗୀରେ ମହିଳାଙ୍କୁ ପାଖକୁ ଟାଣି ନେଇ ତାଙ୍କ ଗାଲରେ ପରେଶ ଓଠ ଛୁଆଇଁ ନେଲେ।

''ଓକେ ଦେନ୍ ଶେଖର୍, ସି ୟୁ ଲେଟର୍।'' ଶେଖର ସହିତ ମହିଳାଙ୍କର ପରିଚୟ ନ କରାଇ ତାଙ୍କ ଅଣ୍ଟାରେ ହାତ ଗୁଡ଼େଇ ନେଇ ଭିତରକୁ ଚାଲିଗଲେ ସେ।

ମାଇଁ ଗଡ୍, ଲୋକଟାର ଷ୍ଟାମିନା ଅଛି! ଦୁଇ ଦିନର ଏ ଗଧ ଖଟଣୀ ପରେ ପୁଣି ପ୍ରେମ ନାଟକ! ମନକୁ ମନ ହସୁ ହସୁ ହାଇ ମାରିଲା ଶେଖର। ଏବେ ନିଶ୍ଚିନ୍ତ ଭାବରେ ଯଦି ଦୁଇତିନି ଘଣ୍ଟା ସେ ଶୋଇଯାଇ ପାରେ, ବଡ଼ ଭଲ ହେବ। କାହିଁକି କେଜାଣି, ଟ୍ରେନ୍‌ରେ ସେ ଜମା ଶୋଇ ପାରେ ନାହିଁ। ଏଥର ଏମ୍.ଡି.ଙ୍କ ଖାତିରରେ ଏଆର କଣ୍ଡିସନ୍‌ଡ୍ ପ୍ରଥମ ଶ୍ରେଣୀରେ ଯାତ୍ରା। ତଥାପି ଆସିବା ବେଳେ ପ୍ରାୟ ସାରାଟା ରାତି ହିଁ ଅନିଦ୍ରାରେ କଟିଥିଲା। ଆଜି ରାତିରେ ଯେ ନିଦ ହେବ ତା'ର କୌଣସି ଗ୍ୟାରେଣ୍ଟି ନାହିଁ। ବରଂ ଏବେ ଯଦି ବିଶ୍ରାମ ନେଇପାରେ...।

ଟ୍ୟାକ୍ସି ଭଡ଼ା ଛିଣ୍ଡେଇ କଲିଂବେଲ୍‌ରେ ହାତ ଦେବାକୁ ଯାଉଛି, ଶେଖର ଦେଖିଲା ଘରର କବାଟ ବନ୍ଦ ନାହିଁ। ଆଉଜା ହୋଇଥିଲା, ପବନରେ ଟିକିଏ ଖୋଲିଯାଇଛି। ଦିନ ତିନିଟା ବେଳେ ବୁଢ଼ା ହୁଏତ ଶୋଇଥିବେ; କଲିଂବେଲ୍ ଦେଇ ଆଉ ଉଠେଇବ କାହିଁକି ?

କବାଟ ଠେଲି ଭିତରେ ପାଦ ଦେଲା ଶେଖର। ସେପାଖ କୋଠରୀ ଆଡକୁ ଚାଲି ଯାଉ ଯାଉ ହଠାତ୍ ସେ ଥମକି ଠିଆ ହୋଇ ପଡିଲା। ପାଦରେ ତା'ର କେହି ଯେମିତି ଗରମ ଲୁହା କଣ୍ଟାଟିଏ ଗଳେଇ ଦେଲା। ଆଗେଇ ଯିବାକୁ ଚାହୁଁଛି, କିନ୍ତୁ ପାରୁନି।

ଡ୍ରଇଂରୁମ୍ ଭିତରୁ ପରିଷ୍କାର ଦେଖାଯାଉଛି ସଦାଶିବ ସାମନ୍ତଙ୍କର ଶୋଇବା ଘରଟି। ପୁରୁଣା କାଳିଆ ଖଟ ଉପରେ ଧଳା ଚଦର। ସେଇଠି ଚିତ୍ ହୋଇ ଶୋଇ ରହିଛନ୍ତି ସେ।

ଆଉ ପାଖରେ ସେ କିଏ ? ନା- କଷ୍ଟ କରି ଅନୁମାନ କରିବାର ଆବଶ୍ୟକତା ନାହିଁ। ନାଲି ଡୋର ଶାଢୀ ଦେହରେ ଗୁଡେଇ କଳା ହାତରେ ଶାଗୁଆ ପାଣିକାଚ ପିନ୍ଧିଥିବା ମଣିଷଟିକୁ ତ ଆଉ ପ୍ରଥମଥର ପାଇଁ ଦେଖୁନି ଶେଖର। ସେ ସେଇ ଉର୍ବଶୀ। ପରେଶଙ୍କ ମା'ଙ୍କର ମୃତ୍ୟୁ ପରେ ଘରର ଦେଖାଶୁଣା କରିବାକୁ ରହିଥିବା ପ୍ରୌଢା ଚାକରାଣୀଟି। ହେଲେ ବେଶ୍ ଜଣେ ଗୃହିଣୀ ଭଳି ଖଟ ଉପରେ ଗୋଡ ଟେକି ତକିଆକୁ ଆଉଜି ବସି ଗପି ଚାଲିଛି ସେ। ପାଟିରେ ଖିଲେ ପାନ।

''ଦେଖିଲି ଯେ ବାବୁ, ଜମିଟା ମନକୁ ପାଇଲା ନାହିଁ। ନିତେଇ କହିଛି ଆଉ ଗୋଟିଏ ଜାଗା ଅଛି। ହେଲେ ଦାମ୍‌ଟା...।''

''ଦର ଦାମ୍ କଥା ପରେ। ତୁ ଆଗ ଜମି ଦେଖ।''

''ହେଲେ ବାବୁ, ଏବେଠୁଁ କହି ରଖୁଛି ମୋ ଭଉଣୀର ଝିଅ ବା'ଘର ଆର ମାସ।''

''ତାକୁ କ'ଣ ଦେବୁ ତ ?''

''ଯାହା ଦେବା କଥା ତୁମେ ଦେବ। ହେଲେ ମୁଁ ଏମିତି କାଚ ପିନ୍ଧା ହାତରେ ଯାଇ ପାରିବି ନାହିଁ। ବ୍ରୋଞ୍ଜଚୁଡି ହେଉ ପଛକେ ଚାରିପଟ କରେଇ ଦେବ...।'' ସ୍ୱରରେ ଅସ୍ୱାଭାବିକ ଆନ୍ତରିକତା ନେଇ ଉର୍ବଶୀ କହିଲା।

ନା, ଶେଖର ଆଉ କିଛି ଦେଖିଶୁଣି ପାରିବ ନାହିଁ। ଜୋତା ସେଇଠି ଖୋଲି ରଖି ସେପାଖ କୋଠରୀ ଆଡେ ନିଃଶବ୍ଦରେ ଚାଲିଲା ସେ। କିନ୍ତୁ ଘର ଭିତରେ ପଶିବା ଆଗରୁ ତା' ଉପରେ ସଦାଶିବ ସାମନ୍ତଙ୍କର ଦୃଷ୍ଟି ପଡିଗଲା।

ସେ ଚମକି ଉଠିଲେ ନାହିଁ, ଅପ୍ରସ୍ତୁତ ମଧ୍ୟ ହେଲେ ନାହିଁ। ବରଂ ଖୁବ୍

ସାଧାରଣ ଗଳାରେ ସେଇଠାରୁ ପଚାରିଲେ, ''କିଏ ଶେଖର କି ?''

''ଆଜ୍ଞା।''

''ପରେଶ ଆସିନି ?''

''ନା। ସାର୍ ସାଢ଼େ ସାତଟା ବେଳକୁ ଫେରିବେ। ମୁଁ ଟିକିଏ ବିଶ୍ରାମ ନେବାକୁ ଆସିଲି।''

''ହଉ ଯାଅ ଶୋଇ ପଡ ଟିକିଏ।''

ଏତେବେଳକୁ ଖଟରୁ ଓହ୍ଲେଇ ଆସିଲା ଉର୍ବଶୀ। ଖୁବ୍ ନିର୍ଲିପ୍ତ ଗଳାରେ ପଚାରିଲା, ''କ'ଣ ଖାଇବେ କି ଶେଖର ବାବୁ ?''

''ନା, ମୁଁ ଖାଇ ଆସିଛି।'' ଶେଖରକୁ ତା' ସହିତ କଥା କହିବାକୁ ଅଡୁଆ ଲାଗୁଥିଲା।

''ଚାହା ?''

''ପରେ।'' ତରବର ହୋଇ ଘର ଭିତରକୁ ପଶିଗଲା ସେ।

ବିଛଣାରେ ଶୋଇ ରହି ଝର୍କା ସେ ପାଖ ଗଛଟିକୁ ଶେଖର ଲକ୍ଷ୍ୟ କରୁଥିଲା। ପତ୍ର ସବୁ ପାଚି ଆସିଲାଣି। ଶୀତଦିନ ହେବା ଆଗରୁ ହୁଏତ ଝଡିଯିବ। ତଥାପି ଏଠି ସେଠି ହୋଇ ଗୋଟିଏ ଦି'ଟା ହଳଦିଆ ଫୁଲ ଫୁଟିଛି।

ହଠାତ୍ ଝରକା ଦେଇ ଦମକାଏ ପବନ ଘର ଭିତରକୁ ପଶି ଆସିଲା। ହଳଦିଆ ଫୁଲଗୁଡିକ ପବନରେ ଟିକିଏ ଝୁଲି ଆସିଲେ ତଳକୁ। ବାସ୍ନାହୀନ ଫୁଲ। କିନ୍ତୁ କେଜାଣି କାହିଁକି ଶେଖରକୁ ବଡ ଅଣନିଶ୍ୱାସୀ ଲାଗିଲା।

ବିଛଣାରୁ ଉଠି ପଡିଲା ସେ। ନା, ଆଉ ଶୋଇ ପାରିବନି। ଘର ଭିତରେ ଶେଖର ଥରେ ଆଖି ବୁଲେଇ ଆଣିଲା। ହେଇଟି ତା'ର ଗତକାଲିର ଲୁଗା ଆଲଣା ଉପରେ ପଡିଛି। ସକାଳେ ତରବରରେ ବାହାରିବା ବେଳେ ଘର କଣରେ ଗେଞ୍ଜି, ତଉଲିଆ ପକେଇ ଦେଇ ଯାଇଥିଲା। ସେଇମିତି ପଡି ରହିଛି ଖିଅର ହେବା ଜିନିଷ, ଟୁଥ୍‌ବ୍ରସ୍, ପେଷ୍ଟ। ଏସବୁ ସଜାଡି ନେବାକୁ କେତେ ସମୟ ଲାଗିବ ? ଶାନ୍ତ ଭାବରେ କିଛି ଗୋଟିଏ ନିଷ୍ପତ୍ତି ନେଉ ନେଉ ଖଟତଳୁ ସୁଟ୍‌କେଶ୍ କାଢି ବିଛଣା ଉପରେ ରଖିଲା ଶେଖର। □□

# ତୁମେ ତାକୁ ଜାଣିଛ କି ?

ସୁରମ୍ୟ ନଗର ନାଁଟି କିଏ ଦେଇଥିଲା ଜଣାନାହିଁ। କିନ୍ତୁ ଏଇଟି ନଗର ନୁହଁ କି ସୁରମ୍ୟ ମଧ ନୁହଁ। କେବେ ହୁଏତ ଏଇଭଳି କିଛିର ପରିକଳ୍ପନା ଥିଲା, କିନ୍ତୁ ତା' ଆଉ ହୋଇପାରିଲା ନାହିଁ।

ନୂଆହୋଇ ଯେତେବେଳେ ପେପର୍ ମିଲ୍‌ଟିଏ ଏଠି ଆରମ୍ଭ କରାଗଲା, ଅନେକେ ମନେ କରିଥିଲେ ଖୁବ୍ ଶୀଘ୍ର ସ୍ଥାନଟି ଏକ ଶିଳ୍ପ-ନଗର ହୋଇପଡ଼ିବ। ଆଖପାଖରେ ଗଢ଼ି ଉଠିବ ଅନ୍ୟାନ୍ୟ କାରଖାନା, କଲୋନୀ, ଦୋକାନ ବଜାର। ହେଲେ ଏସବୁ ଆଉ ହେଲା କେଉଁଠି ? ଯେଉଁ ବିରାଟ ଉତ୍ସାହ ନେଇ ସ୍ଥାନଟିର ସ୍ଥାପନା କରାଯାଇଥିଲା, ସେଥିରେ କେବେଠାରୁ ଭଟ୍ଟା ପଡି ସାରିଲାଣି।

ନା- ମିଲ୍ ଉଠି ଯାଇନାହିଁ। ଏବେ ବି ଚାଲିଛି। ସେଇମିତି ରହି ରହି; ମଝି ମଝିରେ ବିଶ୍ରାମ ନେଇ। ଦୁଇ ବର୍ଷ ତଳେ ସରକାର ମିଲ୍‌ଟିକୁ ହାତକୁ ନେଇ ନ ଥିଲେ କେବେଠାରୁ ବାଦୁଡି ଓ ବୁଢିଆଣୀଙ୍କ ଖେଳଘର ପାଲଟି ଯାଇଥାନ୍ତା ସେଇଟି। କିନ୍ତୁ ଏବେ ବି ମେସିନ୍ ଚାଲେ। ସିଫ୍‌ଟ ଅନୁସାରେ ୱାର୍କରମାନେ କାମ କରନ୍ତି ଏବଂ ହାତ ଗଣନ୍ତା ଅଫିସର୍ କେଇଜଣ ନିଜ ନିଜ କ୍ୟାବିନ୍‌ରେ ବସି ଚାହା, ସିଗାରେଟ୍ ଓ ଲଞ୍ଚର ସମୟକୁ ବାଦ୍ ଦେଇ କାମ କରିବାର ଚେଷ୍ଟା କରନ୍ତି।

ପେପର୍ ମିଲ୍ ଆରମ୍ଭ ହେବା ସମୟରେ ଏଇ ଅଫିସରମାନଙ୍କ ପାଇଁ

ଫ୍ଲାଟ୍‌ଟିଏ ତିଆରି କରାଯାଇଥିଲା। ତିନି ମହଲା ଘରେ ବାରଜଣ ଅଫିସରଙ୍କ ପାଇଁ ବାରଟି ଫ୍ଲାଟ୍। ନୂଆ ନୂଆ ଏଇ ଅଫିସରମାନେ କ୍ଲବ୍‌ର ବ୍ୟବସ୍ଥା କରିଥିଲେ, ସେମାନଙ୍କ ସ୍ତ୍ରୀମାନେ କିଟିପାର୍ଟି ଆରମ୍ଭ କରିଥିଲେ। କିନ୍ତୁ ସେସବୁ କେବେଠାରୁ ବନ୍ଦ ହୋଇ ସାରିଲାଣି। ଏବେ କେବଳ ଭିନ୍ନ ଚାକିରି ବା ଅବସରକୁ ଅପେକ୍ଷା କରି ରହିବା କଥା।

ନହେଲେ କିଏ ଏଇମିତିଆ ଜାଗାରେ ପଡିରହେ? ନା ଭଲ ସ୍କୁଲ୍ ଅଛି ନା ସିନେମା ଘର। ଇଡ୍‌ଲି ଦୋଷା ସାଙ୍ଗରେ ପାଣିଆ ସମ୍ବର ମିଳୁଥିବା ସାଉଥ୍ ଇଣ୍ଡିଆନ୍ ରେଷ୍ଟୁରାଣ୍ଟଟି ଓ ତା' ପାଖରେ ବାଲି ମିଶା ବରା ପିଆଜି ବିକ୍ରି କରୁଥିବା ଫକୀର ସାହୁର ଚାଳିଆ। ସେ ପାଖକୁ ଗୋଟିଏ ଫଟୋ ଷ୍ଟୁଡିଓ ଓ ଦୁଇଟି ଡାଲି ଚାଉଳ ଦୋକାନ। ବାସ୍...

ସତରେ କିଛି ବି ଘଟେ ନାହିଁ ଏ ସହରରେ। ଫ୍ଲାଟରେ ରହୁଥିବା ବାରଟି ପରିବାର ଡ଼ାଲମା ଭାତ ଏବଂ ଦୂରଦର୍ଶନର ଘେର ଭିତରେ ଦିନ ପରେ ଦିନ କଟାଇ ଚାଲନ୍ତି।

ଏଇମିତି ଭିତରେ ଯେ ଏଭଳି ଗୋଟିଏ ଚାଞ୍ଚଲ୍ୟକର ଘଟଣା ଘଟିଯାଇପାରେ, ସେଇଟା ହିଁ ଆଶ୍ଚର୍ଯ୍ୟ। ଆଉ ଦେଖ, ସେତିକିବେଳେ ପୁଣି ମାଳା ସହରରେ ନାହିଁ। ଦିଅର ବାହାଘର ପାଇଁ ଶ୍ରୀକାନ୍ତ ଓ ପିଲାଙ୍କ ସହିତ ସେ ଦଶଦିନ ପାଇଁ କଟକ ଚାଲିଯାଇଥିଲା। ଆସି ପହଞ୍ଚିଲା ଘଟଣାର ଦୁଇଦିନ ପରେ। ଅଟୋ ରିକ୍ସାରୁ ଓହ୍ଲାଉ ଓହ୍ଲାଉ ଫାଟକ ପାଖରେ ମାଳାର ଅରୁନ୍ଧତୀ ସାଙ୍ଗରେ ଦେଖା ହୋଇଗଲା। ତରତର ହୋଇ ପରିବା ବ୍ୟାଗ୍ ଧରି ବାହାରି ଯାଉଥିଲା ସେ। ମାଳାକୁ ଦେଖି ଟିକିଏ ରହିଗଲା।

''ମାଳା, ତୁମେ ସବୁ ଏବେ ଫେରୁଛ!''

''ଟ୍ରେନ୍ ଲେଟ୍ ଥିଲା ଦୁଇ ଘଣ୍ଟା। ନ ହେଲେ ତ ସାତଟା ବେଳେ ଆମେ ପହଞ୍ଚି ସାରିଥାନ୍ତୁ।'' ମାଳା ଛୋଟ ସୁଟ୍‌କେଶ୍‌ଟା ପାଖକୁ ଘୁଞ୍ଚାଇ ଆଣି କହିଲା।

ଅରୁନ୍ଧତୀ ଗମ୍ଭୀର ହୋଇଗଲା, ''ତା'ମାନେ ତୁମେ ତ କିଛି ଜାଣିନ!''

''କିଛି ଜାଣିନି ମାନେ?'' ମାଳା ଆଖିରେ କୌତୂହଳ, ''ଏଇ କେତେଟା ଦିନ ଭିତରେ କ'ଣ ଏମିତି ହୋଇଗଲା ଯେ ଅରୁନ୍ଧତୀ?''

"ଇସ୍- ଆସ୍ତେ।" ଏପାଖ ସେପାଖକୁ ଚାହିଁ ଅରୁନ୍ଧତୀ ମାଳାକୁ କଡ଼ିକିଆ କରିନେଲା। "ପଅର ଦିନ ଦି'ପହର ବେଳେ ଆମ ଫ୍ଲାଟ୍‌ରେ ମସ୍ତବଡ଼ ଗୋଟିଏ କାଣ୍ଡ ହୋଇଯାଇଛି। ଛାତରୁ ଗୋଟିଏ ସ୍ତ୍ରୀଲୋକ ଡେଇଁପଡି ଆତ୍ମହତ୍ୟା କରିଦେଇଛି।"

ମାଳାର ପାଟି ଶୁଖିଗଲା, "କ'ଣ କହୁଛ? କିଏ ସେ? ଆମ ବିଲ୍‌ଡିଙ୍ଗର କେହି ନା କ'ଣ?"

"ନା- ଏଠିକାର କେହି ନୁହଁ। ଦି'ପହରେ ଚାଲି ଚାଲି କେଉଁଠୁ ଆସି ପହଞ୍ଚିଲା। ଦରଓ୍ୱାନକୁ କିଛି ନ କହି ଭିତରକୁ ପଶିଲା। ତା'ର ଭଦ୍ର ଚେହେରା ଦେଖି ଦରଓ୍ୱାନ୍ ଆଉ ଅଟକେଇଲା ନାହିଁ। ଭାବିନେଲା ଆମ କାହାର ଅତିଥି ବୋଧହୁଏ। ସେଇଠୁ ସେ ସିଡ଼ିରେ ଚଢ଼ି ଚଢ଼ି ଛାତକୁ ଗଲା ଆଉ..."

"କିନ୍ତୁ କିଏ ସେ? ଏଠିକୁ ଆସିଲା କେମିତି?" ମାଳା ତଣ୍ଟି ତଳେ ହଜାରେ ପ୍ରଶ୍ନ। କିନ୍ତୁ ଏକାଥରକେ ନା ସବୁ ପ୍ରଶ୍ନ ପଚାରି ହୁଏ ନା ସେସବୁର ଉତ୍ତର ଅରୁନ୍ଧତୀକୁ ଜଣା।

"କେଜାଣି କିଏ? କେହି କିଛି ଜାଣି ନାହାନ୍ତି। କିଏ କହୁଥିଲା ଯେ କୋଉ ଦୋକାନୀର ଆତ୍ମୀୟ। ସତ କି ମିଛ କିଏ ଜାଣେ?...କିଛି ମନେ କରିବନି, ମାଳା। ମୁଁ ଟିକିଏ ପରିବା ଆଣିବାକୁ ଯାଉଛି। ଘରେ ଆଳୁଟାଏ ବି ନାହିଁ। ଫେରିଲେ କଥାବାର୍ତ୍ତା।"

ଅଟୋବାଲା ସାଙ୍ଗରେ କିଛି ସମୟ ପାଟିତୁଣ୍ଡ କରି ଭଡା ଛିଣ୍ଡାଇବା ପରେ ଶ୍ରୀକାନ୍ତ ବଡ ସୁଟ୍‌କେଶ୍‌ଟା ଧରି ତା' ପାଖକୁ ଚାଲି ଆସିଲେ। "କ'ଣ ହେଲା, ଏଠି ଏମିତି ଠିଆ ହୋଇ ରହିଛ ଯେ!"

ମାଳା ଆଖିରୁ ସେ ପର୍ଯ୍ୟନ୍ତ ଆଚ୍ଛନ୍ନ ଭାବ କଟି ନଥିଲା। ସ୍ୱାମୀ ହାତରେ ଘର ଚାବିଟା ଧରେଇ ଦେଇ କହିଲା, "ତୁମେ ଘରକୁ ଚାଲ, ସବୁ କହିବି...। ମୁଁ ଟିକିଏ ଅନିଅପାଙ୍କ ଘର ହୋଇ ଆସୁଛି।"

ଅନିଅପା ଅର୍ଥାତ୍ ଅନ୍ନପୂର୍ଣ୍ଣା ଦାସ। ରିଟାୟାର୍ କରିବା ପାଇଁ ଦୁଇ ମାସ ଥିବା ପି. ଆର୍. ଓ. ପରଶୁରାମ ଦାସଙ୍କର ଧର୍ମପତ୍ନୀ। ବାକୀ ଏଗାରଟା ଫ୍ଲାଟରେ ରହୁଥିବା ଏଗାରଟି ପରିବାରର ଟିକିନିଖି ଖବର ଯିଏ ରଖନ୍ତି ସେ ଏଇ ଅନିଅପା। ଏମିତି କିଛି ଘଟଣା ଏଠି ଘଟେ ନାହିଁ ଯାହା ପୁଣି ଅନିଅପାଙ୍କର ଅଜଣା। କାହା ଘରେ ପ୍ରଥମେ ଫୁଲକୋବି ଆସିଲା, କାହା ଦିଅରର ପ୍ରମୋସନ୍ ହେଲା,

କାହା ଭଉଣୀର ପୁଣି ନିର୍ବନ୍ଧ ହୋଇ ଡିମାଣ୍ଡ ଯୋଗୁଁ ବାହାଘର ଭାଙ୍ଗି ଗଲା- ଏସବୁର ବିବରଣୀ ଅନିଅପାଙ୍କ ଜିଭ ତଳେ।

ତାଙ୍କ ଘରକୁ ନ ଯାଇ ମାଳା ବା କାହିଁକି ଯାଇଥାଆନ୍ତା ଆଉ କାହା ଘରକୁ? ତଳ ମହଲାର ପ୍ରଥମ ଫ୍ଲାଟ୍‌ଟି ତାଙ୍କର, ମାଳା କଲିଂ ବେଲ୍‌ରେ ହାତ ରଖିଲା।

''ମାଳା !'' କବାଟ ଖୋଲିଲେ ନିଜେ ଅନିଅପା, ''ଏବେ ଫେରୁଛ କଟକରୁ ?''

''ହଁ ଅନିଅପା।'' ଭଲ ମନ୍ଦ ପଚାରିବା ଭଳି ମନର ଅବସ୍ଥା ମାଳାର ନଥିଲା। ସେ ସିଧାସଳଖ ପଚାରିଦେଲା, ''ଅନିଅପା, ପଅରଦିନ କୁଆଡେ ଛାତ ଉପରୁ...''

ଅନିଅପାଙ୍କ ମୁହଁର ଭାବ ବଦଳିଗଲା। ମାଳାର କଥାକୁ ଅଧାରୁ ବନ୍ଦ କରେଇ ଦେଇ ତରବର ହୋଇ କହିପକେଇଲେ, ''ହଁ କ'ଣ ସବୁ ସମସ୍ତେ କଥାବାର୍ତ୍ତା କରୁଛନ୍ତି। ମୁଁ ତ ମୋର ଖାଇପିଇ ଦି'ପହରେ ମୂର୍ଦ୍ଧାର ଭଳି ଶୋଇବା ଲୋକ। ତମ ଭାଇ ପାଞ୍ଚଟାବେଳେ ଫେରିଲେ ଯାଇଁ ମୋ ନିଦ ଭାଙ୍ଗେ। କେଉଁଠି କ'ଣ ହେଲା, ମୋତେ କି ଜଣା? ଆଚ୍ଛା କହିଲ, ତୁମ ଛୁଟୀ କେମିତି କଟିଲା?''

''ଭଲ !'' ଅନିଅପା ପୁଣି କିଛି ଜାଣନ୍ତି ନାହିଁ? ଏ କଥା ସମ୍ଭବ ହୋଇପାରେ? ମାଳା କଥା ଫେରାଇଲା, ''ଆପଣ କ'ଣ କିଛି ଶୁଣି ନାହାନ୍ତି? କିଏ ସେ ସ୍ତ୍ରୀଲୋକ?''

''କେଜାଣି ଲୋ ମା, ମୋର ଏତେ ଅଳିଆରେ ମୁଣ୍ଡ ପୁରେଇବା କି ଲୋଡା? ମୋ ନିଜ ଜଞ୍ଜାଳ ତ ମତେ ଅସମ୍ଭାଳ- ଆଉ କଟକରେ ବର୍ଷା ଫର୍ଷା ହେଉନି? ଏଠି ତ ତୁମେ ଯିବା ପରଠାରୁ ଖାଲି କାଟୁଛି। ଏଇ ଦି'ଦିନ ହେଲାଣି ମଣିଷ ଟିକିଏ ଖରା ମୁହଁ ଦେଖିଲା।''

ଅନିଅପାଙ୍କ ମୁହଁରୁ ଏମିତି ପାଣିପାଗର ବିବରଣୀ କେମିତି ଅଦ୍ଭୁତ ଶୁଣା ଯାଉଥିଲା ମାଳା କାନକୁ। ତା' ପ୍ରଶ୍ନର ଏମିତି ଫାଙ୍କା ଫାଙ୍କା ଉତ୍ତର କାହିଁକି? ସିଧାସଳଖ ଜବାବ ନାହିଁ?

''ନା, କଟକରେ ବର୍ଷା ହେଉନି।'' ମାଳା ଯିବା ପାଇଁ ବାହାରିଲା, ''ମୁଁ ତେବେ ଆସୁଛି ଅନିଅପା। ଘରେ ଏପର୍ଯ୍ୟନ୍ତ ପାଦ ଦେଇନି।''

କବାଟ ବନ୍ଦ ହୋଇଗଲା ।

ଆଃ- ମାଳା ଗୋଡଆଡେ ଚାହିଁ ଚିଡି ଉଠିଲା । ଚପ୍ପଲର ଷ୍ଟ୍ରାପ୍‌ଟା ଏତେବେଳକୁ ଛିଣ୍ଡିବାର ଥିଲା । ନଇଁପଡି କୌଣସିମତେ ସେଇଟାକୁ ସେଫ୍‌ଟିପିନ୍‌ରେ ଅଟକେଇ ଦେବାବେଳେ ତା'କାନରେ ପଡିଲା କବାଟ ସେପାଖରୁ ପରଶୁରାମ ବାବୁଙ୍କର କଣ୍ଠ ସ୍ୱର, ‘‘ହଇହୋ, ତୁମେ ସେ ଘଟଣା ବିଷୟରେ କିଛି କହିନ ତ ?’’

‘‘ହେଃ- ମତେ କ'ଣ ବୋକା ବୋଲି ପାଇଲ ? ମତେ ବାବା ଶିଖେଇବାକୁ ହେବନି ।’’

‘‘ଭଲ କରିଛ । ଆଜିକାଲି ଯୁଗ ଖରାପ । କୋଉଠୁ ଯାଇ କୋଉଠି ପହଞ୍ଚିବ କଥା । ସେଠୁ ପୋଲିସ୍ ଆସି ଧରିବ ଆମକୁ । ଟଣାହୋଇ ଦୁହେଁ ଯିବା ଥାନାକୁ । ବୁଢାକାଳେ ବେଇଜତ୍ ହେବା କଥା ।’’ ଅନ୍ୟଦିନ ହୋଇଥିଲେ ହସକୁଡୀ ମାଳା ହସି ହସି ଗଡି ଯାଇଥାଆନ୍ତା ସେଇଠି । କିନ୍ତୁ ସେଦିନ କଥା ଭିନ୍ନ । ନୀରବ ଭାବରେ ସେ ଶିଡିରେ ପାଦ ରଖିଲା ।

କାହାର କୋଉଠି ଦେଖା ନାହିଁ । ଦୁଇ ଚାରିଟା ଛୁଆ ଯେଉଁ ସବୁବେଳେ ଦୌଡାଦୌଡି କରୁଥାଆନ୍ତି ଶିଡିରେ, ସେମାନଙ୍କର ମଧ୍ୟ ସ୍ୱରଶବ୍ଦ ନାହିଁ । ଶିଢି, ଛାତ ଓ ତଳ କଂପାଉଣ୍ଡ ଝାଡୁ କରୁଥିବା ବୁଢୀ ଦିଇଟା ଠିକ୍ ଏତିକିବେଳକୁ ଶିଢି ତଳେ ବସି ପାନଦୋକତା ଟିକେ ପାଟିରେ ପକାନ୍ତି । କାହାନ୍ତି ସେମାନେ ? ଏତେବେଳକେ ମାଳା ଆଖିରେ ପଡିଲା- ଦରଓ୍ୱାନ ଗେଟ୍ ପାଖରେ ନ ବସି ଭିତରପଟକୁ ବସିଛି । ଆଉ ତା'ପାଖରେ ଷ୍ଟୁଲଟିଏ ପକେଇ ବସି ରହିଛି ପୋଲିସ କନେଷ୍ଟବଲଟିଏ ।

ମାଳା ଆଉ କାହା ଘରକୁ ନ ଯାଇ ନିଜ ଘରକୁ ଗଲା । ଦଶଟାଦିନ ମାତ୍ର ଘର ତାଲା ପଡିଥିଲା, ଅଥଚ କି ଧୂଳି ! ଓଳାପୋଛା, ଝଡାଝଡି, ପୁଣି ରନ୍ଧା- ଗୋଟିଏ ପରେ ଗୋଟିଏ କାମ ଲାଗିଗଲା । ତରତର ହୋଇ ଖାଇଦେଇ ଶ୍ରୀକାନ୍ତ ଅଫିସ୍ ବାହାରିଗଲେ । ଲମ୍ବା ଟ୍ରେନ୍‌ଯାତ୍ରା ପରେ ପୁଅଝିଅ ଦି'ଜଣ ମଧ୍ୟ ଥକି ଯାଇଛନ୍ତି । ସେମାନେ ଶ୍ରୀକାନ୍ତଙ୍କ ସାଙ୍ଗରେ ଖାଇଦେଇ ଶୋଇପଡିଲେ ।

ମାଳାର କାମ ସରୁନି । ରହି ରହି ମନ ଭିତରେ ଉଙ୍କି ମାରି ଦଉଛି ସେଇ ଆତ୍ମହତ୍ୟା ଘଟଣାଟି । ହାତ ଶିଥିଳ ହୋଇଯାଉଛି । ଭାରାକ୍ରାନ୍ତ ହୋଇଯାଉଛି ତା' ମୁଣ୍ଡ ଭିତରଟା ।

କିଏ ସେ ସ୍ତ୍ରୀଲୋକ? ଏମିତି ତିନି ମହଲାରୁ କେମିତି ଡେଇଁ ପଡିଲା ସେ? ଡର ଟିକିଏ ଲାଗିଲା ନାହିଁ? ଇସ୍- ଯେଉଁଠି ପଡିଥିବ ସେ ଜାଗାଟା ତ ରକ୍ତାକ୍ତ ହୋଇଯାଇଥିବ।

ଉଃ!

ବାସନ ମଜା ଅଧାରୁ ବନ୍ଦ କରିଦେଇ ବାଲ୍‌କନୀକୁ ଧାଇଁଗଲା ମାଳା। ନିଠେଇ ନିଠେଇ ତଳଟାକୁ ଦେଖିଲା ସେ। ଏତେ ଉପରୁ କିଛି ଭଲ ଭାବରେ ଜଣାପଡୁନି। ଚକ୍‌ରେ କିଏ ଦି'ଚାରିଟା ଗାର ଟାଣି ଦେଇଛି କି? କେଜାଣି।

ପ୍ରାୟ ଅଠଚାଳିଶ ଘଣ୍ଟା ଉପରର ଘଟଣା। ସେଇ ଜାଗା କ'ଣ ଆଉ ପରିଷ୍କାର ହୋଇ ନଥିବ! ରୋଷେଇ ଘରକୁ ଫେରିଆସି ନିଜ କାମରେ ଲାଗି ପଡିଲା ମାଳା।

ସବୁ କାମ ଛିଣ୍ଡାଇ ଖାଉ ଖାଉ ପ୍ରାୟ ଦିନ ଦୁଇ। ଖାଇବା ଅଧା ହୋଇଛି କଲିଂବେଲ୍ ବାଜିଲା। ବାହାରେ ମାମିନା ଠିଆ ହୋଇଥିଲା। ନିଜକୁ ଏ ଫ୍ଲାଟ୍‌ର ସେକ୍ରେଟାରୀ ମନେ କରୁଥିବା ଗିରୀଶ ସାମନ୍ତରାୟଙ୍କ ଦଶବର୍ଷର ଝିଅ।

''ଆଣ୍ଟି, ମା' କହିଲେ ଆପଣ ଅଢେଇଟା ବେଳେ ଆମ ଘରକୁ ଆସିବେ। ଅନ୍ୟସବୁ ଆଣ୍ଟିମାନେ ମଧ୍ୟ ଆସିବେ।''

ନୂଆ ନୂଆ ଏଠି ଯେତେବେଳେ କିଟି ପାର୍ଟିର ଚଳଣୀ ଥିଲା ସେତେବେଳେ ଏମିତି ଏକାଠି ହେଉଥିଲେ ସମସ୍ତେ। ଚାହା ପିଆ, ତମ୍ବୋଲା ଓ ତାସ; ପୁଣି ହାଲୁକା ଧରଣର ପରନିନ୍ଦା। କିନ୍ତୁ ଅନ୍ୟ ସବୁ ଭଳି କେମିତି ଗତାନୁଗତିକତା ଆସିଯାଇଥିଲା ସେଥିରେ। କ୍ରମଶଃ ବନ୍ଦ ହୋଇଯାଇଥିଲା କିଟି ପାର୍ଟି। ଏଇ ଦଶ ଦିନ ଭିତରେ ପୁଣି କ'ଣ ସେଇଟି ଚାଲୁ କରିବା କଥା ସମସ୍ତେ ଭାବି ନେଲେ କି? କାଇଁ ସେଇଭଳି କିଛିର ସମ୍ଭାବନା ତ ନଥିଲା?

ବିଶେଷ ଚିନ୍ତା କରିବାର ସମୟ କାହିଁ? ତରବରରେ ବାକୀ ଖାଇବା ଖାଇନେଇ ଶାଢ଼ି ବଦଳେଇ ନେଲା ମାଳା।

ପୁଅ ଝିଅ ଏବେ ବି ନିଘୋଡ ନିଦରେ ଶୋଇଛନ୍ତି। ପୁଅକୁ ଟିକିଏ ହଲେଇ ଦେଲା ସେ, ''ବାବୁ, ମୁଁ ଟିକିଏ ମାମିନା ଘରକୁ ଯାଉଛି। କବାଟ ଦେ।''

"ତୁମେ ବାହାରୁ ତାଲା ଦେଇ ଯାଅ ମା," ନିଦୁଆ ସ୍ୱରରେ ବାବୁ କହିଲା, "ମୁଁ ଆଉ ଉଠି ପାରିବି ନାହିଁ।"

ନିରୁପାୟ ହୋଇ ବାହାରୁ ତାଲାଦେଇ ମାଳା ବାହାରି ଗଲା।

ଗିରୀଶ ସାମନ୍ତରାୟଙ୍କ ଘର ଦୁଇମହଲାରେ। ମାଳା ପହଞ୍ଚିବାବେଳକୁ ସମସ୍ତେ ଆସିସାରିଥିଲେ। ନା- ଠିକ୍ ସମସ୍ତେ ବୋଲି କହି ହେବ ନାହିଁ। ଅନିଅପା ସେଠି ନ ଥିଲେ। ମାମିନା ଖବର ଦେଲା ଯେ ତାଙ୍କର ଆସିବାର ସମ୍ଭାବନା ମଧ୍ୟ ନାହିଁ। ସକାଳଠୁଁ ଏମିତି ମୁଣ୍ଡ ଧରିଛି ଯେ ସେ ତକିଆରୁ ମୁଣ୍ଡ ଟେକି ପାରୁନାହାନ୍ତି।

ହେଇଥିବ!

ମାଳା ଚୁପ୍‌ଚାପ୍ ଯାଇ ରମା ଚକ୍ରବର୍ତ୍ତୀ ପାଖରେ ବସି ପଡ଼ିଲା। ଏଇଭଳି ସମସ୍ତେ ଏକାଠି ହେବାର କାରଣ ନେଇ ତା' ମନରେ ଯେଉଁ ସାମାନ୍ୟ କୌତୂହଳ ଥିଲା, ସେଇଟା ରମାର ପ୍ରଥମ କେଇପଦ କଥାରେ ଚାଲିଗଲା। ଓହୋ, ଏଇଥିପାଇଁ ତେବେ? ଗାଲରେ ହାତଦେଇ ରମା କହିଲା, "ତୁମେ ବଡ ଲକି ମାଳା ଦିଦି, କାଲି ତୁମେ ଏଠି ନ ଥିଲ। ତୁମେ ଯଦି ସେ ସ୍ତ୍ରୀଲୋକର ଶବ ଦେଖିଥାଆନ୍ତ ନା! ଓ ବାବାରେ!!"

"ତୁମେ ଦେଖିବାକୁ ଯାଇଥିଲ??"

"ଯିବା ପ୍ରଶ୍ନ ଉଠୁଛି କୁଆଡୁ? କହିବାକୁ ଗଲେ ଘଟଣାଟା ମୁଁ ଇ ଆଗ ଦେଖିଲି।...ମୁଁ ଲୁଗା ତୋଳିବାକୁ ବାଲ୍‌କନୀ କବାଟ ଖୋଲୁଥିଲି। ହଠାତ୍ ବଡ ଜୋର୍ ଶବ୍ଦଟାଏ ହେଲା। ବାଲ୍‌କନୀକୁ ଆସି ନଇଁପଡି ଦେଖେ ତ ରକ୍ତାକ୍ତ ହୋଇ ସ୍ତ୍ରୀଲୋକଟି ପଡିଛି। ଓହୋ, ସେ କି ଭୟଙ୍କର ଅବସ୍ଥା। ଉଃ- କ୍ଷମା କର। ମୁଁ ବର୍ଣ୍ଣନା କରିପାରିବି ନାହିଁ।"

ପ୍ରଥମ ଆବିଷ୍କାରର ଗୌରବ ରମା ଚକ୍ରବର୍ତ୍ତୀକୁ ଦେବା ପାଇଁ କଲ୍ୟାଣୀ ମିଶ୍ର ପ୍ରସ୍ତୁତ ନଥିଲା। ସାମାନ୍ୟ ହସିଦେଇ ସେ କହିଲା, "ମୁଁ ପରା ସେତିକିବେଳେ ପରିବା କିଣି ଫେରୁଥିଲି। ଗେଟ୍ ପାଖରେ ପହଞ୍ଚିଛି, ହଠାତ୍ କାନରେ ଖୁବ୍ ଜୋରରେ କିଛି ପଡିବାର ଶବ୍ଦ ବାଜିଲା। ମୁଁ ଆଉ ଦରୱାନ୍ ଧାଇଁଗଲୁ। ଯାଇ ଦେଖେ ତ... ତା'ପରେ ରମା ବାଲ୍‌କନୀ କବାଟ ଖୋଲି ପାଟିକଲା।"

"ସେ କିଏ?" ମନତଳେ ଦବି ରହିଥିବା ପ୍ରଶ୍ନକୁ ମାଳା ଓଠକୁ ଆଣିଲା।

"କେଜାଣି କିଏ ?" ଛନ୍ଦା ସାମନ୍ତରାୟ ଗମ୍ଭୀର ଭାବରେ ଉତ୍ତର ଦେଲା, "କାଲି ଏ ଘଟଣା ପରେ ଗିରୀଶ ପୋଲିସ୍ ଇନ୍‌ସପେକ୍ଟର ସାଙ୍ଗରେ କଥାବାର୍ତ୍ତା କରିଥିଲେ। ଯାହା ଜଣାପଡୁଛି ସେ ଗୋଟିଏ ମାରୱାଡୀ ଘର ବୋହୂ। ପାଖ ଟାଉନ୍‌ରେ ଯେଉଁ ବଡ଼ ଲୁଗାଦୋକାନ ଅଛି, ସେଇମାନଙ୍କର ଆତ୍ମୀୟ। ବାହାରୁ କେଉଁଠୁ ବୁଲି ଆସିଥିଲା। କ'ଣ ହେଲା କେଜାଣି, ଅଟୋଟାଏ ଧରି ଆମର ଏଇ ରାସ୍ତା ପର୍ଯ୍ୟନ୍ତ ଆସିଲା। ତା'ପରେ ଛକରୁ ଚାଲି ଚାଲି ଆସି ଫ୍ଲାଟ୍ ଭିତରେ ପଶିଲା।"

"ହେଃ, ତାକୁ ମରିବାକୁ ଆଉ ଜାଗା ମିଳିଲା ନାହିଁ?" ବଡ଼ ତିକ୍ତ ଭାବରେ ଫତିମା କହିଲେ, "ତୁମେମାନେ କୁହ ଆମ ପିଲାଙ୍କ ମାନସିକତା ଉପରେ ଏହାର କ'ଣ ପ୍ରଭାବ ପଡିଥିବ ?"

ଫତିମାଙ୍କର ବି.ଏ.ରେ ସାଇକୋଲୋଜି ଅନର୍ସ ଥିଲା। ପରୀକ୍ଷାରେ ଯେ ଅନର୍ସ କଟିଯାଇଥିଲା, ସେଇଟା ଅଲଗା କଥା। ତା'ପରେ ପରେ ପଢ଼ା ଛାଡିଦେଇ ତାଙ୍କୁ ହୁସେନ୍ ଅଲ୍ଲୀଙ୍କର ବେଗମ୍ ହୋଇଯିବାକୁ ହେଲା। କିନ୍ତୁ ସବୁବେଳେ ନିଜକୁ ବେଶ୍ ଜଣେ ମନସ୍ତାତ୍ତ୍ୱିକ ବୋଲି ମନେ କରନ୍ତି ଫତିମା।

ଶାଢ଼ି କାନି ଆଙ୍ଗୁଠିରେ ମୋଡୁ ମୋଡୁ ପୁଷ୍ପା ଅଗ୍ରୱାଲା ଫତିମାଙ୍କୁ ଚାହିଁଲେ।

"ତୁମେ ମାରୱାଡ଼ି ସଂପ୍ରଦାୟ କଥା କ'ଣ ବା ଜାଣ ? ଆମ ସମାଜ ବଡ଼ ରକ୍ଷଣଶୀଳ। ମତେ ଦେଖ, ମୋ ଝିଅ ଆସି ବାହା ହେବାକୁ ବସିଲାଣି। ତଥାପି ଏବେ ମଧ୍ୟ ଶାଶୁଘରକୁ ଗଲେ ମତେ ଡରି ଶଙ୍କି ଚଳିବାକୁ ହୁଏ। ସେ ବିଚାରୀଟିକୁ ନିଶ୍ଚୟ ଶାଶୁଘରେ ବହୁତ ସହିବାକୁ ହେଉଥିଲା। ସମାଲୋଚନା ଭୟରେ ବାପଘର ବୋଧହୁଏ ସାହାଯ୍ୟ କରିବାକୁ ସାହସ କରିପାରି ନଥିଲେ। ସେଇଥିପାଇଁ..."

ମିଲ୍‌ର ଲ' ଅଫିସର୍ ରଂଜନ୍ ମାଥୁର୍‌ଙ୍କ ସ୍ତ୍ରୀ ଉଷା ନିଜର ଛୋଟ ବାଳରେ ଆଙ୍ଗୁଠି ପୂରାଇ ଟିକେ ସଜାଡି ନେଲା। ସରୁ ଓଠ ସାମାନ୍ୟ ଖୋଲି ଚାପି ଚାପି କହିଲା, "ହ୍ୱାଟ୍ ନନ୍‌ସେନ୍ସ! ଆଜିକାଲି ଯୁଗରେ ଶାଶୁଘର ଅତ୍ୟାଚାର କିଏ ଚୁପ୍‌ଚାପ୍ ସହେ ? ଯଦି ମହିଳାର ଆଡଜଷ୍ଟମେଣ୍ଟ ସମସ୍ୟା ଥିଲା, ସେ ତ ଆନନ୍ଦରେ ଡିଭୋର୍ସ ବା ଜୁଡିସିଆଲ୍ ସେପାରେସନ୍ ନେଇ ପାରିଥାଆନ୍ତା! ମୋର ମନେହୁଏ ଏହା ପଛରେ ଅନ୍ୟ କିଛି କାରଣ ନିଶ୍ଚୟ ଥିଲା। ହୁଏତ

ଲଭ୍ ଆଫେଆର୍ ବା ସେଇଭଳି କିଛି।''

''କେଜାଣି ବାବା,'' ଛନ୍ଦା ହାତ ହଲେଇ କହିଲା, ''କାରଣ ଯାହା ହେଉ ନା କାହିଁକି ସ୍ୱାମୀଟା ନିଶ୍ଚୟ ନିହାତି ଅମଣିଷ। ନହେଲେ କି କେଉଁ ସ୍ତ୍ରୀ ଏତେବଡ ଗୋଟାଏ ନିଷ୍ପତ୍ତି ନେଇପାରେ ?''

ଆଲୋଚନା ସରିବାର କୌଣସି ଲକ୍ଷଣ ଦେଖୁ ନ ଥିଲା ମାଳା। ସମସ୍ତେ ନିଜ ନିଜର କଥା କହିବାକୁ ବ୍ୟଗ୍ର। ନିଜକୁ ଅନ୍ୟମାନଙ୍କ ଅପେକ୍ଷା ଅଧିକ ବୁଝିବା ସୁଝିବାର ବୋଲି ପ୍ରତିପାଦିତ କରିବାକୁ ଚେଷ୍ଟା କରୁଥିଲେ ଯେମିତି।

ବେଶ୍ ଜମିଯାଇଥିଲା କିନ୍ତୁ ଆସରଟି। ତଥାପି ଚାରିଟାବେଳେ ମାଳାକୁ ଉଠିବାକୁ ହେଲା। ପିଲାଙ୍କୁ ବାହାରୁ ତାଲା ଦେଇ ଆସିଛି। ହୁଏତ ଉଠିକରି କ'ଣ ଗୋଳମାଳ କରିବେଣି !

ଶିଢି ଚଢି ଉପରକୁ ଗଲାବେଳେ ତା' ମନଟା କିନ୍ତୁ ଗୋଳେଇ ହୋଇ ଯାଉଥିଲା। କ'ଣ ଲାଭ ଏମିତିଆ ଆଲୋଚନାରୁ ? ଯେଉଁ ସ୍ତ୍ରୀଲୋକଟି ମରିଗଲା ସେ ଆଉ ଫେରି ଆସିବ କି ?

ମାଳା ନିଜକୁ କଠିନ କଲା। ନା- ସେ ଅଯଥା ଚିନ୍ତା କରିବ ନାହିଁ ଏ ବିଷୟରେ। ଏମିତିରେ ସେ ଟିକିଏ ଅଧିକ ଭାବପ୍ରବଣ। ପ୍ରତିଦିନ ସଂସାରର କେତେ ଜାଗାରେ କେତେ ଅଘଟଣ ଘଟିଯାଉଛି। ସବୁ ନେଇ ଯଦି ସେ ଏମିତି ନିଜ ମନର ଶାନ୍ତି ହରେଇ ବସେ, ତେବେ ବଞ୍ଚିବ କେମିତି ? ଆଉ ନିଜ ମନକୁ ଅଶାନ୍ତ ନ କରିବାକୁ ସ୍ଥିର କରି ଦୃଢ ଭାବରେ ଘରର ତାଲା ଖୋଲିଲା ସେ।

ଏହା ଭିତରେ ପାଞ୍ଚଦିନ କଟିଗଲାଣି। ଶୁଣାଯାଉଥିଲା ଯେ ପୋଷ୍ଟମର୍ଟମ ପରେ ସ୍ତ୍ରୀ ଲୋକଟିର ଶରୀରକୁ ତା' ନିଜ ସହରକୁ ପଠେଇ ଦିଆ ସରିଛି। ଗେଟ୍ ପାଖରେ ଏବେ ଆଉ ପୋଲିସ୍ କନେଷ୍ଟବଲଟି ବସୁନି। ଶିଢି ଉପରେ ପିଲାଙ୍କର ଦୌଡାଦୌଡି ଠିକ୍ ଆଗ ପରି। ବିଲ୍‌ଡିଙ୍ଗ୍ ଓଳାପୋଛା କରୁଥିବା ବୁଢୀ ଦୁଇଜଣ ମଧ ଆସି କାମ କରିବାରେ ହେଳା କରୁନାହାନ୍ତି।

ଏତେ ପରେ ଆତ୍ମହତ୍ୟା ଘଟଣାଟି କ୍ରମଶଃ ଝାପ୍‌ସା ହୋଇଯିବା କଥା। କିନ୍ତୁ ସେକଥା ଆଉ ହୋଇନି। ନୂଆ ନୂଆ ଉଡା ଖବର ଆଣି ଆଲୋଚନାକୁ ସରଗରମ କରି ରଖିଥିଲେ ଫ୍ଲାଟ୍‌ର ଅଧିବାସିନୀମାନେ।

ସେଦିନ ସକାଳେ ମାଳାର ଦେହଟା ଭଲ ଲାଗୁ ନ ଥାଏ। ଜୋର୍ ଥଣ୍ଡା ଧରି ଆସୁଛି କି କ'ଣ ! ପିଲାଙ୍କୁ ସ୍କୁଲ ପଠେଇ ଓ ଶ୍ରୀକାନ୍ତଙ୍କ ହାତରେ ଦୁଇ ପହର ଖାଇବା ଧରେଇ ଦେଇ ନିଜ ପାଇଁ ଅଦା ପକେଇ କଡା ଚାହା କପେ କରିନେଲା ସେ। ଆଗ କିଛି ସମୟ ବସି ବିଶ୍ରାମ କରିବ, ତା'ପରେ ବାକୀ କାମ। ଠିକା ଚାକରାଣୀ ପାଇଁ ଦାଣ୍ଡ କବାଟଟା ଦରଆଉଜା ରଖିଦେଇ ଦାଣ୍ଡ ଘର ଚୌକୀରେ ଚାହା କପ୍ ଧରି ବସିଗଲା ସେ।

"ଆରେ ଏ କବାଟଟା ଏମିତି ମେଲା କାହିଁକି?" ଗୋଟିଏ ବଡ ଗଳାର ହୁଙ୍କାର ଓ ଜୋତାର ମଚ୍‌ମଚ୍ ଶବ୍ଦରେ ମାଳା ଚମକି ପଡିଲା।

କିଏ ? କିଏ ସେ ??

ମୁହୂର୍ତ୍ତକ ଭିତରେ ଛଅଫୁଟିଆ ମଣିଷଟିଏ ଆସି ଦାଣ୍ଡଘର କବାଟ ପାଖରେ ଅଣ୍ଟାରେ ହାତ ଦେଇ ଠିଆ ହୋଇ ପଡିଲା। "କିଲୋ ମାଳା, କ'ଣ ମୋ ଆସିବା ଖବର ୱାୟାରଲେସ୍‌ରେ ପାଇଗଲୁ ନା କ'ଣ ?"

ଶିବୁ ଭାଇନା !

ହଠାତ୍ ଏମିତି ମାଉସୀ ପୁଅ ଭାଇ ଶିବପ୍ରସାଦଙ୍କୁ ଦେଖିବ ବୋଲି ମାଳା ଆଶା କରି ନ ଥିଲା। ଛାତିରେ ଛେପ ପକେଇଦେଇ ହାତ ଯୋଡିଲା ସେ, "ତୁମେ ଏମିତି ହଠାତ୍। ଆଗରୁ ଖବର ଦେଲନି କାହିଁକି ଶିବୁଭାଇନା ?"

ଶିବପ୍ରସାଦ ସବୁଥର ହିଁ ଏଇମିତି କରନ୍ତି। ଖୁବ୍ ନିୟମିତ ଭାବରେ ଯେ ତା' ଘରେ ଆସି ପହଞ୍ଚନ୍ତି ତା' ନୁହେଁ। କେବେ ମାସକୁ ଦୁଇଥର ହୋଇଯାଏ ତ କେବେ ପୁଣି ବର୍ଷକୁ ଥରେ।

ନଇଁପଡି ଜୋତା ଫିତା ଖୋଲୁ ଖୋଲୁ ଶିବପ୍ରସାଦ କହିଲେ, "ମୁଁ କାମରେ ଆସିଛି। ତୁ ଟିକିଏ ଶୀଘ୍ର କ'ଣ ଖାଇବାକୁ ଦେଲୁ। ଭାରୀ ଭୋକ। ତା'ପରେ ମୁଁ ବାହାରିଯିବି।"

"ଦଉଛି। କିନ୍ତୁ ଏଥର କାହିଁକି ଆସିବାକୁ ଛଅମାସ ଲଗେଇଦେଲ ?"

"ଆରେ ଆମେ ପୋଲିସିଆ ଲୋକ। ଆମର କ'ଣ ଏମିତି ଖୁସିବାସିଆ ବୁଲାବୁଲି ହୁଏ ? ପାଖ ଟାଉନ୍‌ରେ ଗୋଟିଏ କେଶ୍ ଥିଲା ବୋଲି ସିନା ମୋ ଆସିବା ହେଲା। ନ ହେଲେ ଏଠି ପୁଣି ଆମର କି କାମ ?...ଆରେ ହଁ।" କ'ଣ ଯେମିତି ଶିବପ୍ରସାଦଙ୍କର ମନେ ପଡିଗଲା, "ସେ ରବି ଅଗ୍ରୱାଲା ସ୍ୱୀଟ

ପରା କ'ଣ ତୁମ ବିଲ୍‌ଡିଙ୍ଗ୍‌ରୁ ଡେଇଁପଡି ମଲା ନା କ'ଣ। ନାହିଁକି ରେ ?''

ମାଳା ଉଠି ଯାଉ ଯାଉ ରହିଗଲା। ''ତୁମେ ସେ ସ୍ତ୍ରୀଲୋକକୁ ଜାଣ ?''

''ଏମିତି ଟିକିଏ ତା' ବର ସାଙ୍ଗରେ ଚିହ୍ନାପରିଚୟ ଅଛି। ଆମ ସହରର ବେଶ୍ ନାମକରା ବ୍ୟବସାୟୀ ତ।''

''ସେ ଏତେଦୂରକୁ ଆସି ଏଠି ପୁଣି ଏତେ କାଣ୍ଡ କଲା !''

''ଆରେ ବୁଦ୍ଧିସୁଦ୍ଧି ଥିବା ମଣିଷ କ'ଣ ଏମିତି ବିନା କାରଣରେ ଏସବୁ କରେ ? ସେଇଟାର ମୁଣ୍ଡ ଖରାପ।'' ସିଗାରେଟ୍ ଲଗାଇଲେ ଶିବପ୍ରସାଦ।

''ମୁଣ୍ଡ ଖରାପ !''

''ଆରେ ବଦ୍ଧ ପାଗଳୀ ସେଇଟା। କ'ଣ ତ କହନ୍ତି- ହଁ, ହଁ ମ୍ୟାନିକ୍ ଡିପ୍ରେସନ୍। ଭଲଭାବରେ ଛଅ ଆଠମାସ ରହେ। ତା' ପରେ ହଠାତ୍ କ'ଣ ଯେ ହୁଏ, ଖାଲି 'ମାରିଦେବି', 'ମରିଯିବି' ଏମିତିଆ କରେ। ଯା ଆଗରୁ ଚାରିଥର ମରିବାର ଚେଷ୍ଟା କରିଥିଲା ଯେ !''

ଶିବପ୍ରସାଦଙ୍କର ହାଲୁକା କଥାରେ ବେଶୀ ଗମ୍ଭୀର ହୋଇ ଯାଉଥିଲା ମାଳା। ''ଆଉ ତା' ସ୍ୱାମୀ ?''

''ବିଚରା ! ବେଶ୍ ପଇସାବାଲା ଲୋକ ସେ ରବି ଅଗ୍ରୱାଲା। ଇଚ୍ଛା କରିଥିଲେ ଏଇଟାକୁ ଘରୁ ତଡି ଦେଇ ଆଉ ଗୋଟାକୁ ବାହାସାହା ହୋଇ ପାରିଥାନ୍ତା। ହେଲେ ଭଦ୍ରଲୋକ ସେ।...ଛାଡ ସେ ସବୁ। ତୁ ମତେ ଖାଇବାକୁ ଦେବୁ କି ନାହିଁ କହିଲୁ। ମତେ ପରା ବାହାରିବାକୁ ହେବ।''

ମାଳା ତରବର ହୋଇ ରୋଷେଇଘରେ ପଶିଲା।

କେତେବେଳଠୁଁ ଶିବପ୍ରସାଦ ଖାଇଦେଇ ଗଲେଣି। ମାଳାର ଘରକାମ ମଧ୍ୟ ପ୍ରାୟ ଶେଷ। ଟିକିଏ ଗଡି ପଡିଲେ ହୁଅନ୍ତା। ହେଲେ ମୁଣ୍ଡଟା ଏମିତି ଭାଗି ଭାଗି ଲାଗୁଛି ଯେ ବିଛଣାରେ ପଡିବା କଥା ଚିନ୍ତା କରିପାରୁନି ସେ।

ହଠାତ୍ ଆସି ପହଞ୍ଚିଗଲେ ରମା, ଉଷା ଓ ଛନ୍ଦା। ''ଆଜି କ'ଣ ସବୁ ରାନ୍ଧିଛ ? ତୁମ ଠିକାଟା ଆସୁଛି କି ନାହିଁ ?'' ଏଇମିତି ଦୁଇ ଚାରିଟା ଉପୁରିଆ ପ୍ରଶ୍ନ ପଚାରି ଦେଇ ସେମାନେ ପହଞ୍ଚିଗଲେ ସେଇ ଉତ୍ତେଜନାମୂଳକ ଘଟଣା ପାଖରେ। ଯାହା ଆଲୋଚନା କରିବାକୁ ସେମାନେ ଆସିଥିଲେ।

''ବୁଝିଲ ମାଳା, ମୁଁ କ'ଣ କହିଥିଲି। ସେଇ ସ୍ତ୍ରୀ ଲୋକର ସ୍ୱାମୀଟା

ପରା ସତରେ ଅମଣିଷ। ଜାଣିଛ. ସେ ନିଜ ସ୍ତ୍ରୀର ଦେ଼ଢ଼୍ବଢ଼ି ଦେଖିବାକୁ ସଫା ମନା କରିଦେଲା।''

ଛନ୍ଦା କଥାକୁ ସମର୍ଥନ କରି ରମା ଯୋଡ଼ିଲା, ''ଏମିତିଆ ଲୋକଙ୍କୁ ଛୋତାରେ ବାଡେଇବା କଥା।''

ଉଷା ଚିରାଚରିତ ଗମ୍ଭୀର ଗଳାରେ କହିଲା, ''ତୁମେମାନେ ଯାହା କହିବ କୁହ, ମୋର ତ ସେଣ୍ଟ ପରସେଣ୍ଟ ଧାରଣା ଏ ଘଟଣା ମୂଳରେ ଗୋଟିଏ ପ୍ରେମ କାହାଣୀ ରହିଛି।''

ଆଉ ମାଳା ସହିପାରିଲା ନାହିଁ। ''ଆଃ ବନ୍ଦ କରନା। କିଛି ନ ଜାଣି କାହିଁକି ଜଣଙ୍କ ସଂପର୍କରେ ଏତେ ଆଲୋଚନା?'' ଢୋକ ଗିଳି ସେ ପୁଣି କହିଲା, ''ସେ ସ୍ତ୍ରୀଲୋକର କୌଣସି ଲଭ୍ ଆଫେଆର୍ ନ ଥିଲା କି ତା' ଶାଶୁଘରେ ତାକୁ ଯନ୍ତ୍ରଣା ଭୋଗିବାକୁ ହେଉ ନଥିଲା। ତା' ସ୍ୱାମୀଟି ମଧ୍ୟ ଅମଣିଷ ନୁହେଁ।''

ଛଅଯୋଡା ଆଖି ତା' ଉପରେ ନିବଦ୍ଧ ହୋଇ ସାରିଥିଲା ସେତେବେଳକୁ। ସେମାନଙ୍କର ଅନୁଚ୍ଚାରିତ ପ୍ରଶ୍ନର ଉତ୍ତର ଦେଲା ମାଳା।

''ସ୍ତ୍ରୀଲୋକଟିର ଭୁଲ୍ ଠିକ୍ ବୁଝିବାର କ୍ଷମତା ହିଁ ନଥିଲା। ସେ ଯଦି ଜାଣିଥାଆନ୍ତା ଯେ ସେ କ'ଣ କରିବାକୁ ଯାଉଛି ଆଉ ତାହାର ପରିଣାମ କ'ଣ, ତାହେଲେ ବୋଧହୁଏ ଏମିତି ତିନିମହଲା ଉପରୁ ଡେଇଁପଡି ନ ଥାଆନ୍ତା... ସେ ଥିଲା ମାନସିକ ରୋଗୀ। ମ୍ୟାନିକ୍ ଡିପ୍ରେସନ୍‌ରେ ଗତ କିଛି ବର୍ଷ ଧରି ଭୋଗୁଥିଲା।''

ଛଅଯୋଡ଼ା ଆଖିରେ କିଛି ସମୟ ଆଗରୁ ରହିଥିବା ଚମକ କେମିତି ମଳିନ ପଡ଼ି ଆସୁଥିଲା। ତିନୋଟି ମୂର୍ତ୍ତି ଭଳି କେବଳ ବସି ରହିଥିଲେ ତିନି ଅତିଥି। କିଛି ହରେଇ ଦେଇଥିବାର ଛାପ ପରିଷ୍କାର ଭାବରେ ତିନୋଟିଯାକ ମୁହଁରେ ପ୍ରତିଫଳିତ ହୋଇ ସାରିଥିଲା ସେତେବେଳକୁ।

ପ୍ରଥମେ ଛନ୍ଦା ଉଠିଲା। ''ମୁଁ ଆଜି ତେବେ ଆସୁଛି, ମାଳା। ଝିଅର ହୋମ୍‌ୱାର୍କ ଦେଖିବାକୁ ହେବ।'' ସେଇଭଳି କିଛିର ବାହାନା ଦେଖାଇ ରମା ଓ ଉଷା ମଧ୍ୟ ଉଠିଗଲେ।

ସେମାନଙ୍କୁ ଛାଡ଼ିବା ପାଇଁ ମାଳା ଦାଣ୍ଡ କବାଟ ପର୍ଯ୍ୟନ୍ତ ଆସିଲା ନାହିଁ।

ଗୋଟିଏ ହୋସ୍‌ରେ ଏତେ ସବୁ କହିଯିବା ପରେ କ୍ଳାନ୍ତ ହୋଇ ଚୌକୀରେ ବସି କ'ଣ ଯେମିତି ଭାବି ହେଉଥିଲା।

ନିରାନନ୍ଦମୟ ହେଉ ପଛକେ, ଘଟଣାଟା ତ ସେମାନଙ୍କର ଶୁଷ୍କ, ବିରସ ଜୀବନଯାତ୍ରାକୁ ଉଦ୍‌ବେଳିତ କରି ରଖିଥିଲା। ଗୋଟିଏ ଚାପା ଉତ୍ତେଜନାର ଆବହାଓ୍ୱା ଖେଳାଇ ରଖିଥିଲା ଚାରିପଟେ।

ଏଇଭଳି ଗୋଟିଏ ରସାପ୍ଲୁତ ପରିସ୍ଥିତିର ସମାପ୍ତି ଘୋଷଣା କରିଦେଇ ମାଳା କ'ଣ କିଛି ଭୁଲ୍ କଲା ? □□

# ଶୂନ୍ୟ ଦୋଳି

ବାହାରେ କୁଆ କୋଇଲି ଉଠିବା ଆଗରୁ, ଯେତେବେଳେ ପୂର୍ବଆକାଶ ଲାଲ ମଧ୍ୟ ହୋଇ ନ ଥାଏ, ଠିକ୍ ସେତିକିବେଳେ ଶୁଭ୍ରାର ନିଦ ଭାଙ୍ଗିଯାଏ। ନା- ବିଛଣା ଛାଡି ଉଠିଯାଏ ନାହିଁ ସେ। ମୁଣ୍ଡ ସାମାନ୍ୟ ଉଠାଇ ଝୁଙ୍କିପଡି କୋଠରୀରେ ଜଳୁଥିବା ଜିରୋ ପାୱାର ବଲ୍‌ବର ନରମ ଆଲୁଅରେ ସେ ଦଶମାସର କୁନିଝିଅ ରିନିକୁ ଥରେ ଦେଖିନିଏ। ତା'ପରେ ସେଇମିତି ନିଦ ମଳମଳ ଅବସ୍ଥାରେ ରିନିକୁ କୋଳକୁ ନେଇ ତା' ଖଟରେ ପଡିଥିବା ଓଦା ଚଦରଟିକୁ କାଢିଦିଏ। ପୁଣି ମୁଣ୍ଡ ପାଖରେ ଥାକ ହୋଇ ରହିଥିବା ଲୁଗାଗଦାରୁ ଶୁଖିଲା ଚଦରଟିଏ ଅଏଲ୍ କ୍ଲଥ୍ ଉପରେ ପକେଇ ଦେଇ ରିନିକୁ ତା' ଉପରେ ଶୁଆଇ ଦିଏ। ରିନି କିଛି ବି ଜାଣିପାରେ ନାହିଁ। କେବଳ ଜୋରରେ ଥରେ ନିଶ୍ୱାସ ନେଇ କେତେବେଳେ କେମିତି ଟିକିଏ ଆଖି ମିଟି ମିଟି କରି ଦେଇ ସେ ଶୋଇ ପଡେ। ଉଠୁ ଉଠୁ ସକାଳ ଛଅ, ସାଢେ ଛଅ।

ଆଜି ମଧ୍ୟ ସେଇଭଳି ହେବାର କଥା। କିନ୍ତୁ ରିନିକୁ କୋଳକୁ ନେଇ ଶୁଖିଲା ଚଦରଟି ବିଛାଇବା ବେଳେ କାହିଁକି କେଜାଣି ତାକୁ ବଡ ଅସ୍ୱସ୍ତି ଲାଗିଲା। ରିନି ମୁହଁ କେମିତି କେମିତି ଦିଶୁଛି। ଜର ଅଛି କି? ଝିଅର କପାଳ, ବେକରେ ହାତ ମାରିଲା ସେ। କାହିଁ, ନା ତ।

ତା'ହେଲେ ?

ଝିଅଟା ଏମିତି ଶୁଖିଲା ଦିଶୁଛି କାହିଁକି? ଏଇ ତ- କଷ୍ଟରେ ଯେମିତି ମୁହଁଟା କୁଞ୍ଚେଇ ହୋଇଯାଇଛି ତା'ର। କ'ଣ ହୋଇଛି? ଆଃ- କଥା ହେଲେ କହୁଥାଆନ୍ତା ଛୁଆଟା! ଶୁଭ୍ରାର ନିଦ ପୁରାପୁରି ଭାଙ୍ଗି ଯାଇଥିଲା ସେତେବେଳକୁ। ସେ କ'ଣ ଅଯଥାରେ ବ୍ୟତିବ୍ୟସ୍ତ ହୋଇ ପଡୁଛି? ଗିନିକୁ କଷ୍ଟ ହେଲେ ସେ କାନ୍ଦିବା କଥା। ଏମିତି କ'ଣ ନିଶ୍ଚିନ୍ତ ଭାବରେ ଶୋଇ ଥାଆନ୍ତା ?

ତଥାପି ଶୁଭ୍ରାର ମନ ମାନୁ ନ ଥିଲା। ଯଦି ଗିନିକୁ କଷ୍ଟ ହେଉ ନାହିଁ, ତା'ହେଲେ ସେ ମୁହଁକୁ ଏମିତି କରୁଛି କାହିଁକି? ତାକୁ ନିଶ୍ୱାସ ନେବାକୁ କଷ୍ଟ ହେଉଛି କି? ଶୁଭ୍ରା ଗିନିର ପେଟ ଉପରୁ ଫ୍ରକ୍ ଉଠେଇଦେଲା। ଏ କ'ଣ? ଗିନି ଏତେ ଜୋରରେ ନିଶ୍ୱାସ ନେଉଛି କାହିଁକି? ତା'ର ପେଟ କେମିତି ଟାଣି ହୋଇ ଭିତରକୁ ପଶି ଗାତ ହୋଇଯାଉଛି। ଆଉ ଏଇ ଯେଉଁ ଅସ୍ୱାଭାବିକ ସାଁ ସାଁ ଶବ୍ଦ?

ସ୍ୱାମୀ ସବ୍ୟସାଚୀର ହାତକୁ ଆସ୍ତେ ହଲେଇ ଦେଲା ଶୁଭ୍ରା, ''ଏଇ, ଶୁଣୁଛ ?''

କଡ ବୁଲେଇ ନିଦୁଆ ସ୍ୱରରେ ସବ୍ୟସାଚୀ ପଚାରିଲା, ''କ'ଣ ହେଲା ?''

''ଟିକିଏ ଗିନିକୁ ଦେଖିଲ। କେମିତି ସାଁ ସାଁ ହୋଇ ନିଶ୍ୱାସ ନେଉଛି।''

''ଓଦା ଚଦର ଉପରେ ପଡି ପଡି ଥଣ୍ଡା ଧରିଯାଇଥିବ ତାକୁ। ଗତଥର ଥଣ୍ଡା ପାଇଁ ଡାକ୍ତର ଯେଉଁ ସିରପ୍ ଦେଇଥିଲେ, ସେଥିରୁ ଚାମଚେ ଖୁଆଇ ଦେଉନ ?''

ସବ୍ୟସାଚୀ କଡ ଲେଉଟାଇଲା।

''ପୁଣି ଶୋଇଗଲ ନା କ'ଣ ମ? କହୁଛି ଝିଅକୁ ଟିକିଏ ଦେଖ। ନ ଦେଖି କହି ଦେଉଛ ଥଣ୍ଡା। ଥଣ୍ଡା ଜମା ଧରିନି ତାକୁ। କେମିତି ଟାଣି ହୋଇ ପେଟରୁ ନିଶ୍ୱାସ ନେଉଛି ସେ। ମତେ କିଛି ଭଲ ଲାଗୁନି।''

ଶୁଭ୍ରାକୁ ବୁଝେଇ ପଦେ କ'ଣ କହିଦେଇ ସବ୍ୟସାଚୀ ଆଉ ଥରେ ଶୋଇପଡିବ ଭାବିଥିଲା। କିନ୍ତୁ କ'ଣ ଯେମିତି ତା'ର ମନେ ପଡିଗଲା। ଜିରୋ ପାୱାର ବଲ୍‌ବର ଆଲୁଅରେ ଗିନିକୁ ଥରେ ଦେଖି ଦେଇ ଖଟ ଉପରୁ ଧଡ଼୍‌କରି ଉଠିଯାଇ ଟିଉବ୍ ଲାଇଟ୍‌ଟା ଜଳେଇ ଦେଲା ସେ।

"କ'ଣ ହେଲା ? ଗିନିକୁ ଦେଖ ଟିକିଏ !" ଶୁଭ୍ରାର ବିକଳ ସ୍ୱର ଭାସିଆସିଲା । ସେଇ ନରମ ଆଲୁଅରେ ସବ୍ୟସାଚୀ ଯେତିକି ଦେଖି ନେଇଥିଲା ସେତିକି ହିଁ ତ ଯଥେଷ୍ଟ ।

ତା' ଆଖିକୁ ପାଣି ଚାଲି ଆସିଲା । ଏଭଳି ଟାଣି ଟାଣି ନିଶ୍ୱାସ ନେବା, ଏଇ ଯେଉଁ ସାଁ ସାଁ ଶବ୍ଦ- ଏସବୁ କ'ଣ ତା'ର ଅଜଣା ? ପିଲାଦିନରୁ ସେ ଜେଜେମା'କୁ ଦେଖି ଆସିଛି । ବିଚାରୀ ସବୁବେଳେ ଏମିତି ଭୋଗେ । ନିଶ୍ୱାସ ନେଇ ପାରେ ନାହିଁ, ଉଠି ବସି ପାରେ ନାହିଁ । ଯନ୍ତ୍ରଣାରେ ଛଟପଟ ହୋଇ କେତେ କଟାସମ୍ପା କରେ ନିଜକୁ । "ମରିଯାଆନ୍ତି ହେଲେ । କାହିଁକି ଯମ ନେଉନାହିଁ ମତେ ?"

ଏତେ ସହଜରେ ମୃତ୍ୟୁ ତା' ପାଖକୁ ଆସେ ନାହିଁ । ସେଇମିତି କେବଳ ଛଟପଟ ହିଁ ତାକୁ ହେବାକୁ ହୁଏ । ଥରେ ଛୋଟ ସବ୍ୟସାଚୀ ମା'କୁ ପଚାରିଥିଲା, "ମା', ଜେଜେମା'ର କ'ଣ ହେଉଛି ଏମିତି ? ତାକୁ ଡାକ୍ତର ଦେଖାଇ ଔଷଧ ଦେଉନ ?"

ଦୀର୍ଘନିଶ୍ୱାସ ନେଇ ମା' କହିଥିଲେ, "ଔଷଧରେ କ'ଣ ହେବ ରେ ? ଏହାର କ'ଣ ଔଷଧ ଅଛି ? ଖାଲି ଭୋଗିବା କଥା । ଜେଜେମା'ର ପରା ଜନ୍ମରୁ ଶ୍ୱାସରୋଗ ।"

ସେଇ ପ୍ରଥମ ଶ୍ୱାସରୋଗ ନାଁ ଶୁଣିଥିଲା ସେ । ଶ୍ୱାସରୋଗ । ଆଜ୍‌ମା । ମଣିଷକୁ କାବୁ କରିଦିଏ ରୋଗଟି । କିନ୍ତୁ ଏତେ ସହଜରେ ଜୀବନ ନେଇ ଯାଏ ନାହିଁ ।

ଏବେ ମଧ୍ୟ ଭୋଗି ଭୋଗି ବଞ୍ଚି ରହିଛି ଅଶୀବର୍ଷର ଜେଜେମା' ।

ତାଙ୍କ ଘରେ ଜେଜେମା' ହିଁ ଏକମାତ୍ର ଶ୍ୱାସରୋଗୀ । ବଡ ଅଦ୍ଭୁତ ଭାବରେ ଅନ୍ୟମାନେ ଆଜ୍‌ମାର ଗ୍ରାସରୁ ବର୍ତ୍ତି ଯାଇଥିଲେ ।

ଅଥଚ ଗିନି ? ସବ୍ୟସାଚୀ ଭିତର ଦେଇ କେତେବେଳେ କେମିତି ରୋଗଟା ଗିନି ପାଖରେ ପହଞ୍ଚିଗଲା !

ନିଜକୁ କଠିନ କଲା ସେ । ଏଇ ତ ଆରମ୍ଭ । ବର୍ତ୍ତମାନ ସାରା ଜୀବନ କେବଳ ଯୁଦ୍ଧ କରିଯିବାକୁ ହେବ । ଏବେଠାରୁ ସେ ହାର ମାନିଯିବ ?

ସବ୍ୟସାଚୀ ଶୁଭ୍ରା ଆଡେ ଚାହିଁଲା । ତା'ଠାରୁ ଉତ୍ତର ପାଇବା ପାଇଁ ସେ

ଅପେକ୍ଷା କରି ରହିଛି।

ନା- ହଠାତ୍ ଏମିତି ଆଘାତଟିଏ ତାକୁ ଦେଇ ପାରିବ ନାହିଁ ସେ। ବରଂ ଯାହା ବୁଝେଇ କହିବା କଥା ତାହା ଡାକ୍ତର ହିଁ କହନ୍ତୁ।

ସବ୍ୟସାଚୀ ନିରାସକ୍ତ ଭାବରେ କହିଲା, ''ଭିତରେ ଭିତରେ ଥଣ୍ଡା ଧରିଯାଇଛି ବୋଧହୁଏ। ତୁମେ ଲୁଗା ବଦଳାଇ ଦିଅ। ମୁଁ ସ୍କୁଟର କାଢୁଛି। ରିନିକୁ ହସ୍‌ପିଟାଲ୍ ନେଇଯିବା।''

ଶୁଭ୍ରା ଯେମିତି ପଥର ପାଇଟିଗଲା, ''ହସ୍‌ପିଟାଲ!! ତୁମେ କଥା ଲୁଚଉଛ। ସାମାନ୍ୟ ଥଣ୍ଡା ଯଦି ହସ୍‌ପିଟାଲ୍ କାହିଁକି?''

ଲୁଗା ବଦଳାଇ ବାହାରକୁ ବାହାରିଯିବା ବେଳେ ସବ୍ୟସାଚୀ ଉତ୍ତର ଦେଲା, ''ଆରେ, ମୁଁ ଡାକ୍ତର ନା କ'ଣ? କେମିତି କହିବି ବେଶୀ ଥଣ୍ଡା ଧରିଛି କି କମ୍? ଦେଖୁଛ ତ ନିଶ୍ୱାସ ନେବାକୁ ରିନିକୁ କଷ୍ଟ ହେଉଛି। ଟିକିଏ ଡାକ୍ତରଙ୍କୁ ଦେଖାଇଦେଲେ ଭଲ। ଏତେ ସକାଳୁ ଆଉ କେଉଁ ଡାକ୍ତର ପାଖକୁ ଯିବା? ସେଥିପାଇଁ ହସ୍‌ପିଟାଲ୍ କଥା କହିଲି। ସେଠି ତ ଚବିଶ ଘଣ୍ଟା ଡାକ୍ତର ଡ୍ୟୁଟିରେ ଥିବେ। ତୁମେ ଶୀଘ୍ର ଶୀଘ୍ର ବାହାର।''

ଶୁଭ୍ରା କିଛି ନ କହି ଶାଢୀ ବଦଳେଇନେଲା। ରିନିକୁ ଡାଏପର୍ ପିନ୍ଧାଇ ତା' ବ୍ୟାଗ୍‌ଟା ମଧ୍ୟ ସଜାଡି ନେଲା। କିଏ ଜାଣେ କେତେ ଡେରି ହେବ ସେଠି? କଟ୍‌ସଉଲ୍‌ର କମ୍ବଳଟିଏରେ ଝିଅକୁ ଘୋଡେଇଦେଇ ସେ ଠିଆ ହେଲା।

ଠିକ୍ ଏତିକିବେଳେ ଶୋଇବା ଘରକୁ ପଶିଆସି ସବ୍ୟସାଚୀ କହିଲା, ''ଶୁଭ୍ରା, ସ୍କୁଟର୍ ଷ୍ଟାର୍ଟ ହେଉନି। ପ୍ଲଗ୍‌ଟା ବୋଧେ ଯାଇଛି ପୂରାପୂରି।...ତୁମେ ଏଇଠି ଥାଅ। ମୁଁ ଯାଇ ଅଟୋ କି ଟ୍ୟାକ୍‌ସିର ବ୍ୟବସ୍ଥା କରେ।''

ଅଟୋ ରିକ୍‌ସା? ଟ୍ୟାକ୍‌ସି?? ଏମିତି ତ ଭଲ ସମୟରେ ଏପାଖ ଅଞ୍ଚଳରେ ଅଟୋ କି ଟ୍ୟାକ୍‌ସି ମିଳେ ନାହିଁ। ଆଉ ଏ ଭୋର ବେଳଟାରେ, ଛଅଟା ମଧ୍ୟ ବାଜିନି ଯେଉଁଠି, ସେଠି କି ବ୍ୟବସ୍ଥା କରିବ ସବ୍ୟସାଚୀ?

ସ୍ୱାମୀକୁ କିଛି କହି ପାରିଲା ନାହିଁ ଶୁଭ୍ରା। ତା'ର ଉତ୍ତର ପାଇଁ ମଧ୍ୟ ଅପେକ୍ଷା ନ କରି ସବ୍ୟସାଚୀ ପ୍ରାୟ ଦୌଡି ଦୌଡି ମେନ୍‌ରୋଡ୍ ପର୍ଯ୍ୟନ୍ତ ଚାଲିଗଲା। ଏ ପର୍ଯ୍ୟନ୍ତ ସହରର ତନ୍ଦ୍ରା ତୁଟି ନାହିଁ। ରାସ୍ତା ଖାଲି। ଜଣେ ଦୁଇଜଣ ପ୍ରାତଃ ଭ୍ରମଣରେ ବାହାରି ପଡିଛନ୍ତି ଯାହା। କେତେବେଳେ କେମିତି

ଖବରକାଗଜବାଲାଟିଏ ଦ୍ରୁତଗତିରେ ସାଇକେଲରେ ଚାଲିଯାଉଛି ତାକୁ ଟପି। କେଉଁଠି ଅଟୋରିକ୍ସା ବା ଟ୍ୟାକ୍ସି ଖୋଜିବ ସେ ?

ଆଃ- ସେ ଯଦି ଦାଶଗୁପ୍ତାର ପୁରୁଣା ଆମ୍ବାସାଡର୍‌ଟା କିଣିଥାଆନ୍ତା ! ସେତେବେଳେ କଲିଗ୍‌ମାନେ କେତେ କହିଥିଲେ, ଏତେ ଶସ୍ତାରେ ଏମିତି ଭଲ ଗାଡି ସହଜେ ମିଳେ ନାହିଁ। ତା' ସଂଚୟ ଟଙ୍କାରେ କିଛି ବ୍ୟାଙ୍କ ଲୋନ୍ ମିଶାଇ ଦେଇଥିଲେ ହୋଇ ଯାଇଥାଆନ୍ତା। କିନ୍ତୁ ନିଜ ସହରଠାରୁ, ନିଜ ଲୋକଙ୍କଠାରୁ ଏତେ ଦୂରରେ ରହି କେମିତି ସେ ଗୋଟିଏ ଝୁଙ୍କରେ ସଂଚୟର ସଂଖ୍ୟାକୁ ଶୂନ୍ୟ କରିଦେଇ ଥାଆନ୍ତା ?

ଫାଙ୍କା ରାସ୍ତା ଉପରେ ଠିଆ ହୋଇ ଏବେ ସବ୍ୟସାଚୀର ମନେହେଲା ଯେ ସେ ଭୁଲ କରିଛି। ଗାଡିଟା ଥିଲେ ଏମିତି ଅସମୟରେ କାମ ତ ଦେଇଥାଆନ୍ତା !

ଏବେ ରିନିକୁ ସେ ହସ୍‌ପିଟାଲ୍ ନେଇଯିବ କେମିତି ?

ଆମ୍ବୁଲାନ୍‌ସ ?

ଆମ୍ବୁଲାନ୍‌ସକୁ ଫୋନ୍ କଲେ ହୁଅନ୍ତା। ଏଇ ତ ରାସ୍ତା ସେ ମୁଣ୍ଡରେ ପବ୍ଲିକ୍ ଫୋନ୍ ବୁଥ୍‌ଟିଏ ଅଛି। ଚବିଶ ଘଣ୍ଟା ଖୋଲା। କିନ୍ତୁ ଆମ୍ବୁଲାନ୍‌ସ ଦେଖିଲେ ଶୁଭ୍ରାର କି ଅବସ୍ଥା ହେବ ? ସହଜେ ତ ମନଟି ତା'ର ନରମ। ଏକା ଏକା ପିଲା ସମ୍ଭାଳି ସବୁବେଳେ ଆତଙ୍କିତ ହୋଇ ରହେ। ତା' ଉପରେ ଆମ୍ବୁଲାନ୍‌ସଟା ଦେଖି ଯଦି ଶକ୍ ହୁଏ ? ହାତରେ ଦୁଇ ଦୁଇଟା ରୋଗୀ ନେଇ କ'ଣ କେମିତି କରିବ ସେ ?

"କିଓ ସବ୍ୟସାଚୀ, ସକାଳୁ ଏଠି ଏମିତି ଠିଆ କାହିଁକି ହୋଇଛ ? କ'ଣ ମର୍ଣ୍ଣିଂ ୱାକ୍‌ରେ ବାହାରିଛ ?"

ଅଚାନକ ଗୋଟିଏ ଚିହ୍ନା ସ୍ୱରରେ ଚମକିପଡି ବୁଲିଗଲା ସବ୍ୟସାଚୀ। ହାତରେ କ୍ଷୀର କ୍ୟାନ ଧରି ବିଶ୍ୱନାଥ ମଉସା ଠିଆ ହୋଇଛନ୍ତି। କେବେ କେଉଁ ଯୁଗତଳେ ସ୍କୁଲରେ ତାଙ୍କ ପୁଅ ବିବେକ ସବ୍ୟସାଚୀ ସାଙ୍ଗରେ ବର୍ଷଟିଏ ପଢିଥିଲା। ସେଇ ସୂତ୍ରରେ ମଉସା, ମାଉସୀଙ୍କ ସାଙ୍ଗରେ ସାଧାରଣ ଅପେକ୍ଷା ସାମାନ୍ୟ ଅଧିକ ଅନ୍ତରଙ୍ଗତା ହୋଇଯାଇଥିଲା। ବିବେକ ତା' ପରିବାର ନେଇ ଲଣ୍ଡନରେ ରହେ। ବର୍ଷେ ଦୁଇବର୍ଷରେ ଥରେ ଘରକୁ ଆସେ। ପୁଅ ପାଇଁ ଯେତେବେଳେ ମନବ୍ୟସ୍ତ ହୋଇପଡେ, ସେତେବେଳେ ସବ୍ୟସାଚୀ, ଶୁଭ୍ରାଙ୍କ ସହିତ ସମୟ କଟାଇ ମଉସା,

ମାଉସୀ ଏକାକୀତ୍ୱର ଯନ୍ତ୍ରଣାକୁ କମେଇ ଦିଅନ୍ତି ଟିକିଏ।

"କ'ଣ ହୋଇଛି?" ସବ୍ୟସାଚୀର ନୀରବତା ଦେଖି ଆଉ ଥରେ ନରମ ଭାବରେ ପଚାରିଲେ ବିଶ୍ୱନାଥ ମଉସା।

ହଠାତ୍ ତା'ର ସହିବାର ସବୁ ବନ୍ଧ ଭାଙ୍ଗିଗଲା। ଡାହାଣ ହାତଟା ଆଖି ଉପରେ ମାଡି ଦେଇ ବିକଳ ହୋଇ କହି ପକେଇଲା, "ରିନି ଦେହ ଭାରି ଖରାପ, ମଉସା। ତାକୁ ହସ୍‌ପିଟାଲ୍ ନେଇ ଯିବାକୁ ହେବ। ସକାଳୁ ସ୍କୁଟରଟା ବି ଷ୍ଟାର୍ଟ ହେଲାନାହିଁ। ମୁଁ ଟ୍ୟାକ୍ସି କି ଅଟୋ ଖୋଜୁଛି। କାହିଁ ଗୋଟାଏ ହେଲେ ଦେଖାଯାଉନି। କ'ଣ ଯେ କରିବି...।"

ସବ୍ୟସାଚୀ କାନ୍ଧରେ ହାତ ରଖିଲେ ବିଶ୍ୱନାଥ ମଉସା, "ତୁମେ ଏମିତି ପିଲାଙ୍କ ଭଳି ହେଲେ ଚଳିବ, ସବ୍ୟସାଚୀ? ଛୋଟ ପିଲା ଘରେ ଥିଲେ, କେବେ କେମିତି ତା' ଦେହ ଖରାପ ହେବ ନାହିଁ? ଏମିତି ବ୍ୟସ୍ତ ହେଲେ କ'ଣ ଝିଅ ସୁସ୍ଥ ହୋଇଯିବ?...ତୁମେ ଘରକୁ ଯାଅ। ମୁଁ ଗାଡି ନେଇ ଆସୁଛି।"

ଏମିତି କଥା ଶୁଣି ଯେ ସୌଜନ୍ୟ ଦୃଷ୍ଟିରୁ ଧନ୍ୟବାଦ ଜଣେଇବାକୁ ହୁଏ, ତା' ମଧ୍ୟ ଭୁଲିଗଲା ସବ୍ୟସାଚୀ। ବୁଲିପଡି ଦୌଡି ଦୌଡି ସେ ଘରକୁ ଫେରିଗଲା।

ଭୋର୍ ବେଳାର ଖାଲି ରାସ୍ତାରେ ଯାଇ ହସ୍‌ପିଟାଲ୍‌ରେ ପହଞ୍ଚିବାକୁ କୋଡିଏ ମିନିଟ୍ ମଧ୍ୟ ଲାଗିଲା ନାହିଁ। ନାଲି ଅକ୍ଷରରେ 'ଇମର୍‌ଜେନ୍‌ସି' ଯେଉଁଠି ଲେଖା ହୋଇଥିଲା, ଠିକ୍ ସେଇଠି ଗାଡି ଅଟକେଇଲେ ବିଶ୍ୱନାଥ ମଉସା।

"ଯାଅ, ଝିଅକୁ ଭିତରକୁ ନେଇଯାଅ। ମୁଁ ଗାଡି ପାର୍କ କରି ଆସୁଛି।"

କିଛି ନ କହି ଶୁଭ୍ରା ପାଖରୁ ରିନିକୁ ନେଇ ସବ୍ୟସାଚୀ ହସ୍‌ପିଟାଲ୍ ଭିତରେ ପାଦ ଦେଲା। ଏଇଟା ସହରର ସବୁଠାରୁ ବଡ ହସ୍‌ପିଟାଲ୍ ନହେଲେ ମଧ୍ୟ ନିହାତି ଛୋଟ ନୁହଁ। ଏମିତିରେ କେବେ କେମିତି ସବ୍ୟସାଚୀକୁ ଆସିବାକୁ ହୋଇଛି ଏଠିକି। ପ୍ରାୟ ସବୁବେଳେ ଲୋକଭିଡ ଥାଏ। ଅଥଚ ଆଜି ଯେମିତି ସବୁଠି ବ୍ୟତିକ୍ରମ। ଦୂରରେ ପଡିଥିବା ବେଞ୍ଚରେ ଜଣେ ଦୁଇଜଣ ଢୁଳଉଛନ୍ତି କେବଳ। ଆଉ ରିସେପ୍‌ସନ୍ ଟେବୁଲ୍ ପାଖରେ କ୍ଳାନ୍ତ ଭାବରେ ବସି କେଉଁ ଗୋଟାଏ ପତ୍ରିକାର ପୃଷ୍ଠା ଓଲଟାଉଛନ୍ତି ଜଣେ ମଧ୍ୟବୟସ୍କା ରିସେପ୍‌ସନିଷ୍ଟ। ଆଖିରେ ରାତି ଅନିଦ୍ରାର ଚିହ୍ନ।

ବଡ ବଡ ପାଦ ପକାଇ ତାଙ୍କ ପାଖରେ ପହଞ୍ଚିଗଲା ସବ୍ୟସାଚୀ। ପଛରେ

ଶୁଭ୍ରା ।

"ମ୍ୟାଡମ୍, ମୋ ଝିଅ ଠିକ୍ ଭାବରେ ନିଶ୍ୱାସ ନେଇ ପାରୁନି। ଚାଇଲଡ୍ ସ୍ପେସିଆଲିଷ୍ଟଙ୍କୁ..."

ସବ୍ୟସାଚୀଙ୍କୁ ଅଧାରୁ ଅଟକାଇ ଦେଇ ଗିନି ଆଡେ ଥରେ ମଧ୍ୟ ନ ଚାହିଁ ରିସେପ୍‌ସନିଷ୍ଟ କହିଲେ, "ଆପଣ ପିଲାକୁ ସେପଟ ରୁମ୍ ଭିତରକୁ ନେଇଯାଆନ୍ତୁ। ପ୍ରଥମ ଖଟ ଉପରେ ଶୁଆଇଦେବେ। ମୁଁ ଡ୍ୟୁଟି ଡକ୍ଟରଙ୍କୁ ଖବର ଦେଉଛି।...ସଦାଶିବ, ୟାଙ୍କୁ ଇମରଜେନ୍‌ସି ରୁମ୍‌ର ଏକନମ୍ବର ବେଡ୍ ଦେଖାଇ ଦିଅ।"

ହାଇ ମାରୁ ମାରୁ ଫୋନ୍‌ର ରିସିଭର୍ ଉଠାଇଲେ ସେ।

ସବ୍ୟସାଚୀ ପଛେ ପଛେ ଇମରଜେନ୍‌ସି ରୁମ୍ ଆଡକୁ ଯାଉ ଯାଉ ଶୁଭ୍ରା ଦେହରେ ଯେମିତି ନିଆଁ ଚରିଗଲା। ଏମାନଙ୍କ ଭିତରେ କ'ଣ ଦୟା, ମାନବିକତା କିଛି ନାହିଁ? ଗୋଟିଏ ଇମରଜେନ୍‌ସିକୁ ଏମିତି ହାଲୁକା ଭାବରେ ନେଉଛନ୍ତି କେମିତି? ଛୁଆଟାଏ କଷ୍ଟ ପାଉଛି, ଅଥଚ କାହାର କୌଣସି ଉତ୍କଣ୍ଠା ନାହିଁ, ଚିନ୍ତା ନାହିଁ! ଦାନ୍ତ ଦେଖାଇ, ବେଞ୍ଚରେ ବସିଥିବା ଜଣଙ୍କ ସାଙ୍ଗରେ ଥଟ୍ଟା ତାମସା କରୁ କରୁ ଫୋନ୍ ଉଠାଉଛନ୍ତି! ସେମିତି ଅସୁବିଧା ନ ହେଲେ କିଏ କ'ଣ ସବୁ କାମ ଛାଡି ସକାଳ ଛଅଟା ଆଗରୁ ହସ୍‌ପିଟାଲ୍‌ରେ ମୁହଁ ଦେଖାଏ? ଅନ୍ୟବେଳ ହୋଇଥିଲେ ଆଉ କାହା ଉପରେ ନ ହେଉ ପଛକେ ସ୍ୱାମୀ ପାଖରେ ନିଜ ବିରକ୍ତି ନିଶ୍ଚୟ ପ୍ରକାଶ କରିଥାଆନ୍ତା ସେ। ପାଟିତୁଣ୍ଡ କରିଥାଆନ୍ତା, ଯୁକ୍ତି କରିଥାଆନ୍ତା। ହେଲେ ଯଦି ତା' ଯୁକ୍ତିତର୍କ ଶୁଣି ବିରକ୍ତ ହୋଇ ହସ୍‌ପିଟାଲ୍‌ର ସମସ୍ତେ ଗିନିର ଟ୍ରିଟମେଣ୍ଟରେ ଢିଲା କରିଦିଅନ୍ତି...

ନା- ନା। ବରଂ ଶୁଭ୍ରା ଏମିତି ଚୁପ୍ ରହିଯିବ। ନିଜ ରାଗକୁ ନୀଳକଣ୍ଠ ଭଳି ପିଇଯିବ। କେବଳ ଗିନି ପାଇଁ।

ଗିନିକୁ ଖଟରେ ଶୁଆଇଦେଲା ସବ୍ୟସାଚୀ। ଏତେ ସମୟ କୋଳର ଉଷୁମ ପାଇବା ପରେ ଅଏଲ୍ କ୍ଲଥ ଉପରେ ବିଛା ହୋଇଥିବା ଥଣ୍ଡା ଚଦରର ସ୍ପର୍ଶ ତାକୁ ଚମକେଇ ଦେଲା। ନିଦ ଭାଙ୍ଗିଗଲା ଗିନିର। ଆଉ କି ତାକୁ ବିଛଣାରେ ରଖି ହୁଏ? ନିଶ୍ୱାସ ନେବାକୁ କଷ୍ଟ ହେଲେ ମଧ୍ୟ ବିଛଣାରେ ଚୁପ୍‌ଚାପ ଶୋଇ ରହିବାକୁ ସେ ନାରାଜ। ଶେଷରେ ଶୁଭ୍ରା ବାଧ୍ୟ ହୋଇ କୋଳେଇ ନେଲା ତାକୁ।

"ହେଇଟି, ଡାକ୍ତରବାବୁ ଆସିଲେଣି।" କଥାଟା କହିଦେଇ ଡାକ୍ତରଖାନା ବେହେରା ଚାଲିଗଲା।

ଯାହେଉ ! ଶୁଭ୍ରା ସ୍ୱସ୍ତିର ନିଶ୍ୱାସ ନେଲା।

ଇମର୍‌ଜେନ୍‌ସି ରୁମ୍ ଭିତରେ ପାଦ ରଖିଥିବା ମଣିଷଟିର ମୁହଁକୁ ଥରେ ଚାହିଁ ଦେଇ କିନ୍ତୁ ତା' ଛାତିରେ ଛନକା ପଶିଗଲା। ଏ ପୁଣି ଡାକ୍ତର ? ଦେଖିଲେ ତ ମନେ ହେଉଛି ଅଠର ଉଣେଇଶ ବର୍ଷରୁ ବେଶୀ ହେବ ନାହିଁ। ଯେ ଆଉ ଛାତ୍ର ନୁହଁ ତ ?

କାହାକୁ ଏ କଥା ପଚାରିବ ସେ ?

ସବ୍ୟସାଚୀ ଚୌକୀ ଛାଡି ଉଠିପଡିଲା, "ଗୁଡ୍ ମର୍ଣ୍ଣିଂ, ଡକ୍ଟର।"

"ମର୍ଣ୍ଣିଂ, କ'ଣ ହୋଇଛି ?"

ନା- କଥାବାର୍ତ୍ତା ତ ଠିକ୍ ଡାକ୍ତରଙ୍କ ଭଳି କରୁଛନ୍ତି। ଶୁଭ୍ରା ନିଜ ଆଶଙ୍କାକୁ ମନ ତଳେ ଚାପି ଦେଲା। ନିଠେଇ ନିଠେଇ ସବୁ କଥା ପଚାରିଲେ ଡାକ୍ତର ଜଣକ। ଶୁଭ୍ରା ତ କିଛି କହିବା ଅବସ୍ଥାରେ ନ ଥିଲା। ସବ୍ୟସାଚୀ ହିଁ ସବୁ ପ୍ରଶ୍ନର ଉତ୍ତର ଦେଲା। ଗିନିକୁ ଭଲ କରି ପରୀକ୍ଷା କରିନେଇ ଡାକ୍ତର ଜଣକ କହିଲେ, "ଝିଅକୁ ଏବେ ମୁଁ ଗୋଟାଏ ଇଂଜେକ୍‌ସନ୍ ଦେଉଛି। ତା'ପରେ ଆପଣ ତା'ର ଚେଷ୍ଟ ଏକ୍‌ସରେ କରେଇ ଆଣନ୍ତୁ। ମୋର ଯାହା ମନେ ହୁଏ, ତାକୁ କିଛି ସମୟ ପାଇଁ ଅକ୍‌ସିଜେନ୍ ଟେଣ୍ଟ ଭିତରେ ରଖିବାକୁ ହେବ।"

"ଅକ୍‌ସିଜେନ୍ !" ଶୁଭ୍ରା ଚିତ୍କାର କରି ଉଠିଲା, "ଅକ୍‌ସିଜେନ୍ କାହିଁକି ?" ଘଟଣା ଅତି ଗୁରୁତର ନ ହେଲେ କ'ଣ କାହାକୁ ଅକ୍‌ସିଜେନ୍ ଦିଆଯାଏ ?

ଗମ୍ଭୀର ହୋଇଯାଇ ଚୁପ୍ ରହିଲେ ଡାକ୍ତର। ଉତ୍ତର ଦେବା ସମୀଚୀନ ମନେ କଲେ ନାହିଁ। ସବ୍ୟସାଚୀ ନିଜ ଉତ୍କଣ୍ଠାକୁ ଚାପି ରଖି କହିଲା, "କ'ଣ ହୋଇଛି, ଡକ୍ଟର ?"

"ବ୍ରୋଙ୍କଲାଇଟିସ୍‌ର ସିମ୍‌ଟମ୍ ଦେଖୁଛି। ନଥିଙ୍ଗ ଟୁ ୱରି। ତେବେ ବ୍ରୋଙ୍କଲାଇଟିସ୍‌ରେ ଛୋଟ ପିଲାଙ୍କୁ ଅକ୍‌ସିଜେନ୍ ଟେଣ୍ଟରେ ରଖାଯାଏ।"

"ବ୍ରୋଙ୍କଲାଇଟିସ !" ସବ୍ୟସାଚୀ ଆଶ୍ଚର୍ଯ୍ୟ ହେଲା, "ଆଜ୍‌ମା ନୁହଁ ?"

"ଆଜ୍‌ମା ବୋଲି କିଏ କହିଲା ଆପଣଙ୍କୁ ?" ଡାକ୍ତର ସାମାନ୍ୟ ବିରକ୍ତ ଭାବରେ ଓଲଟା ଜେରା ଆରମ୍ଭ କଲେ, "ନିଶ୍ୱାସ ନେବାକୁ କଷ୍ଟ ହେଲା

ମାନେ କ'ଣ ଆତ୍ମା ? ଭିତରେ ଚାପା ଥଣ୍ଡା ହେଲେ ପିଲାଙ୍କର ଏମିତି ହୁଏ ।...ତେବେ ଏହା ଭିତରେ ପେଡିଆଟ୍ରିସିଆନ୍ ଆସିଯିବେ। ସେ ଆପଣଙ୍କୁ ସବୁ ଠିକ୍ ଭାବରେ ବୁଝେଇ ଦେବେ। ତା' ଆଗରୁ ଆପଣ ଏକ୍ସରେ କରେଇ ଆଣନ୍ତୁ। ସିଷ୍ଟର...''

ରିନିକୁ ଇଂଜେକ୍ସନ୍ ଦେବା ପାଇଁ ନିର୍ଦ୍ଦେଶ ଦେଇ ଡାକ୍ତର ଚାଲିଗଲେ। ଏତେ ସମୟ ଚୁପ୍ ହୋଇ ଠିଆ ହୋଇଥିବା ମୋଟୀ ସିଷ୍ଟର ଛଣକ ବିନା ଉପକ୍ରମଣିକାରେ ଇଂଜେକ୍ସନ୍ ଛୁଞ୍ଚିକୁ ଚଟ୍ କରି ରିନିର ନରମ ଦେହରେ ଫୋଡି ଦେଲେ। ଯନ୍ତ୍ରଣାରେ ଚିତ୍କାର କରି ଉଠିଲା ସେ।

ଆଃ, ଶୁଭ୍ରାର ଆଖି ବନ୍ଦ ହୋଇଗଲା। ଛୁଞ୍ଚିଟା ଯେମିତି ତା' କଲିଜାରେ କିଏ ଫୋଡି ଦେଲା। ଏମିତି ଜୋର୍‌ରେ, ନିଷ୍ଠୁର ଭାବରେ କିଏ ଛୋଟ ପିଲାଙ୍କୁ ଇଂଜେକ୍ସନ୍ ଦିଏ ?

ଶୁଭ୍ରା ଆଖି ଖୋଲିବା ବେଳକୁ ଇଂଜେକ୍ସନ୍ ଦେଇଥିବା ସିଷ୍ଟର ଯାଇ ସାରିଥିଲେ। ତୁଳାରେ ରିନିର ଇଂଜେକ୍ସନ୍ ନେଇଥିବା ସ୍ଥାନଟିକୁ ଘଷୁ ଘଷୁ ଜଣେ ଷ୍ଟୁଡେଣ୍ଟ ନର୍ସ କହିଲା, ''ଏଥର ଏକ୍ସରେ କରେଇ ଆଣନ୍ତୁ।''

ଓଃ- ଝିଅର କାନ୍ଦ ବନ୍ଦ ହେବା ପର୍ଯ୍ୟନ୍ତ ଧୈର୍ଯ୍ୟ ନାହିଁ? କିଛି ନ କହି ରିନିକୁ କାଖେଇ ସବ୍ୟସାଚୀ ସାଙ୍ଗରେ ଏକ୍ସରେ ରୁମ୍ ଆଡକୁ ଚାଲିଗଲା ସେ।

କେହି କେଉଁଠି ନାହିଁ। କବାଟ ଠେଲି ଏକ୍ସରେ ରୁମ୍ ଭିତରେ ପଶି ଟିକିଏ ଆତଙ୍କିତ ଲାଗିଲା ସେମାନଙ୍କୁ। ସେମାନେ ଭୁଲ କରୁ ନାହାନ୍ତି ତ ? କିଏ ଯଦି ଆସି ଏମିତି ବିନା ଅନୁମତିରେ ଭିତରେ ପଶି ଆସିଛନ୍ତି ବୋଲି ପାଟିତୁଣ୍ଡ କରେ ? ବରଂ ବାହାରେ ଅପେକ୍ଷା କଲେ ଭଲ। ବାହାରେ କୋଡିଏ ମିନିଟ ଅପେକ୍ଷା କରିବା ପରେ ଚଟି ଘଷି ଘଷି ଆସି ପହଞ୍ଚିଲେ ଜଣେ ଟେକ୍ନିସିଆନ୍।

ସବ୍ୟସାଚୀ କାଗଜ ଖଣ୍ଡିକ ବଢାଇ ଦେଲା, ''ଝିଅର ଚେଷ୍ଟ ଏକ୍ସ-ରେ।''

''ହୁଁ। ତାକୁ ଏକ୍ସ-ରେ ଟେବୁଲ ଉପରେ ଶୁଆଇ ଦେଇ ଆପଣମାନେ ଏପାଖକୁ ଚାଲି ଆସନ୍ତୁ।''

ଶୁଭ୍ରା ମୁହଁକୁ ଚାହିଁଲା ସବ୍ୟସାଚୀ। ଏମିତି କାଠପଟା ଉପରେ କ'ଣ

ଘଡରେ ଚୁପ୍‌ଚାପ୍ ପଡି ରହିବ ରିନି? ଯଦି ଉଠି ବସି ପଡେ, କନ୍ଦାକଟା ଆରମ୍ଭ କରେ, ତେବେ? ହୁଏତ ବିରକ୍ତ ହେବେ ଟେକ୍‌ନିସିଆନ୍ ଜଣକ। ହେଲେ, ଉପାୟ କ'ଣ ଅଛି? ରିନିକୁ ଆସ୍ତେ ଏକସ୍-ରେ ଟେବୁଲ ଉପରେ ଶୁଆଇ ଦେଇ ସେମାନେ ପର୍ଦ୍ଦା ଏ ପାଖକୁ ଚାଲି ଆସିଲେ। ଆଶ୍ଚର୍ଯ୍ୟ, ମା' ବାପାଙ୍କର ଦୁଷ୍ଚିନ୍ତା ବୁଝିନେଲା ଯେମିତି ଛୋଟ ଝିଅଟି! ଉଠି ବସିବା ଦୂରେ ଥାଉ, ହଲଚଲ ମଧ୍ୟ ହେଲା ନାହିଁ।

ଏକସ୍-ରେ କରେଇ ଫେରିବାର ଅଳ୍ପ ସମୟ ପରେ ଶିଶୁ ବିଶେଷଜ୍ଞ ଆସି ପହଞ୍ଚିଲେ। ପୁଣି ଥରେ ରୁଟୀନ ପରୀକ୍ଷା। ଏକ୍‌ସ-ରେ ରିପୋର୍ଟ ତଦାରଖ। ଏତେ ସବୁ ପରେ ପ୍ରଥମ ଡାକ୍ତର ଜଣକ ଯାହା ଯାହା କହିଥିଲେ ସେଇ କଥାର ପୁନରାବୃତ୍ତି କରିଲେ କେବଳ ସେ। ''ବ୍ରୋଙ୍କଲାଇଟିସ। ଅକ୍‌ସିଜେନ୍ ଟେଣ୍ଟରେ ରଖିବାକୁ ହେବ।''

ସବ୍ୟସାଚୀ ମନ ତଳେ ଏପର୍ଯ୍ୟନ୍ତ ସନ୍ଦେହ ଥିଲା। ସକାଳର ସେଇ ଭୟଟା ଏପର୍ଯ୍ୟନ୍ତ ଖାଇ ଗୋଡାଉଥିଲା ତାକୁ। ଶିଶୁ ବିଶେଷଜ୍ଞଙ୍କର କଥା ଶୁଣି ଟିକିଏ ନିଶ୍ଚିନ୍ତ ହେଲା ସେ।

ଯିବା ପୂର୍ବରୁ ଡାକ୍ତର ଆଉଥରେ କହିଗଲେ, ''ଆପଣ ରିସେପ୍‌ସନ୍‌କୁ ଯାଇ ହସ୍‌ପିଟାଲ୍‌ରେ ଝିଅକୁ ଆଡ୍‌ମିଟ୍ କରେଇ ଦିଅନ୍ତୁ। ଦୁଇଦିନ ତାକୁ ଅବ୍‌ଜରଭେସନ୍‌ରେ ରହିବାକୁ ହେବ।...ସିଷ୍ଟର, ପିଲାକୁ ଅକ୍‌ସିଜେନ୍ ଟେଣ୍ଟକୁ ନେଇଯାଅ।''

ଡାକ୍ତର ଚାଲିଗଲେ। ସିଷ୍ଟର ତାଙ୍କ ପଛେ ପଛେ ବାହାରି ଯାଉ ଯାଉ କହିଲା, ''ଆପଣ ଗୋଟାଏ ଫିଡ୍ ଛୁଆକୁ ଦେଇଦିଅନ୍ତୁ। ମୁଁ ଆସି ନେଇଯିବି ଅଳ୍ପ ସମୟ ପରେ।''

ଶୁଭ୍ରା ବୋତଲରେ କ୍ଷୀର ଘରୁ ପ୍ରସ୍ତୁତ କରି ଆଣିଥିଲା। କିଛି ନ କହି ରିନିକୁ କୋଳକୁ ନେଇ ସେ କ୍ଷୀର ପିଆଇଲା।

ତା'ର ସମସ୍ତଙ୍କ ଉପରେ ରାଗ ହେଉଥିଲା। ବିଶେଷ କିଛି ନ ହୋଇଥିବା ଭଳି ବ୍ୟବହାର କରୁଥିବା ଡାକ୍ତର, କଡ଼ା କଡ଼ା କଥା କହୁଥିବା ସିଷ୍ଟର ଆଉ ସେ ପାଖ ଝର୍କା ପାଖରେ ଠିଆ ହୋଇ ହେଁ ହେଁ ହେଉଥିବା ପିଅନ ଦୁଇଜଣଙ୍କ ଉପରେ। କାହାକୁ କିଛି ନ କହି ପାରିବାର ରାଗଟା ଆସି ଶେଷରେ ଛିଣ୍ଡିଲା

ସ୍ୱାମୀ ଉପରେ ।

ବ୍ରୋଙ୍କଲାଇଟିସ ! ନାଁଟା ଶୁଣିଲେ ଇ ତ ଭୟ ଲାଗୁଛି । ଅଥଚ ନିଷ୍ଚିନ୍ତ କେମିତି ହୋଇଗଲା ସବ୍ୟସାଚୀ ?

ରିନିକୁ କ୍ଷୀର ପିଆଉ ପିଆଉ ସେ ତା' ମୁଣ୍ଡ ଆଉଁସି ଦେଲା । "ଶୀଘ୍ର ଭଲ ହୋଇ ଯା, ମୋ ସୁନା ମା'ଟା । ତୋର ସବୁ ରୋଗ, ସବୁ କଷ୍ଟ ମତେ ଦେଇ ଦେ ।" ମନକୁ ମନ ଗୁଣି ହେଉଥିଲା ସେ । କେମିତି ଏକ ଦୋଷୀ ଭାବ ତାକୁ ଘେରି ଯାଉଥିଲା । ରିନିର ଦେଖାଶୁଣାରେ ସେ ନିଶ୍ଚୟ କିଛି ଗଣ୍ଡଗୋଳ କରିଛି । ନହେଲେ ଏମିତି ଚାପା ଥଣ୍ଡା ତା' ଭିତରେ ରହିଥାଆନ୍ତା କେମିତି ? ହଁ ତ, ସେଦିନ ରାତିରେ ଖୋଲା ପଡିଆରେ ହେଉଥିବା ଶାଢ଼ି ପ୍ରଦର୍ଶନୀ ଦେଖିବାକୁ ସେ ଚାଲିଯାଇଥିଲା । କାଉଁଳିଆ ପାଗ ଦେଖି କେତେ ମନା କରିଥିଲା ସବ୍ୟସାଚୀ । କିନ୍ତୁ ସେ କ'ଣ ମାନିଥିଲା ? ପ୍ରଦର୍ଶନୀ ଦେଖିବାର ଲୋଭରେ ସେ ଆଗପଛ କିଛି ଭାବି ନ ଥିଲା ।

ଓଃ ! . କି ରକମର ମା' ସେ ? ଏ କୁନି ଝିଅଟାର ଖବର ଠିକ୍ ଭାବରେ ବୁଝିପାରିଲା ନାହିଁ ? ଚୁଲୀକୁ ଯାଉ ଶାଢ଼ି କିଣା, ତା' ପ୍ରଦର୍ଶନୀ ବୁଲା । ଗୋଟିଏ କଣ୍ଢେଇ ଭଳି ଝିଅର ଅଯତ୍ନ ସେ କରିପାରିଲା କେମିତି ? ଯଦି ଟିକିଏ ସାବଧାନ ସେ ରହିଥାଆନ୍ତା, ତେବେ କ'ଣ ଆଜି ଏମିତି ହସ୍‌ପିଟାଲ୍‌ରେ ପଡିବାକୁ ହୋଇଥାଆନ୍ତା ତାକୁ ? ଅକ୍‌ସିଜେନ୍ ନେବାକୁ ହୋଇଥାଆନ୍ତା ?

ଶୁଭ୍ରାର ଆଖିକୁ ଲୁହ ଚାଲିଆସିଲା । ରିନିକୁ ଜାବୁଡି ଧରିଲା ସେ ।

"ପେସେଣ୍ଟକୁ ଦିଅନ୍ତୁ ।" ମୋଟୀ ସିଷ୍ଟର ଜଣକ ଶୁଭ୍ରା କୋଳରୁ ରିନିକୁ ନେଇଗଲେ ।

ହଠାତ୍ ତାକୁ ବଡ ଅସହାୟ ଲାଗିଲା । କୁଆଡେ ଗଲା ସବ୍ୟସାଚୀ ? ଆଡ୍‌ମିଟ୍ କରିବାକୁ ଏତେ ସମୟ ? ନା- ତା' ପାଇଁ ଆଉ ଅପେକ୍ଷା କରିପାରିବ ନାହିଁ ସେ । ଶୁଭ୍ରା ସିଷ୍ଟର ପଛେ ପଛେ ଚାଲିଲା ।

ଉପର ମହଲାର ଗୋଟିଏ କଣରେ ରୁମ୍‌ଟି । ଦୁଇଟା ଖଟ ପଡିଛି ସେଠି । କାଚ କବାଟ ପାଖରେ ଶୁଭ୍ରାକୁ ଅଟକେଇ ଦେଲେ ସିଷ୍ଟର । ଭିତରକୁ ଯାଇ ହେବ ନାହିଁ । କାଚ ପାଖରେ ମୁହଁ ରଖି ବିକଳ ହୋଇ କେବଳ ଠିଆ ହୋଇ ରହିଲା ସେ । ଅନ୍ୟ ବେଡ୍‌ଟିରେ ସାତ ଆଠବର୍ଷର ପୁଅଟିଏ ଶୋଇଛି । କ'ଣ

ହୋଇଛି କେଜାଣି, କେତେ ରକମର ନଳୀ ତା' ଦେହର ବିଭିନ୍ନ ଅଂଶରେ ଫୋଡା ହୋଇଛି କେବଳ। ଶୁଭ୍ରା ଦେଖି ମଧ୍ୟ ଦେଖି ପାରୁ ନଥିଲା। ତା'ର ଚିନ୍ତା, ଭାବନା ସବୁ ଗିନିକୁ ନେଇ। ଆଉ କାହା କଥା ସେ ଭାବି ପାରୁ ନାହିଁ ବା ଆଉ କାହାର ଯନ୍ତ୍ରଣାକୁ ସେ ଅନୁଭବ କରିପାରୁ ନାହିଁ।

ଗିନିକୁ ଅନ୍ୟ ଖଟ ଉପରେ ଶୁଆଇ ଦେଲେ ସିଷ୍ଟର।

ଇସ୍- ଶୁଭ୍ରାର ଦେହ ସିରସିରେଇ ଉଠିଲା। କ'ଣ ସବୁ ଲାଗିଛି ଖଟରେ ପଡିଥିବା ଚଦରରେ। ନିଶ୍ଚୟ ପୂର୍ବ ରୋଗୀ ଏଠୁ ଯିବା ପରେ ଚଦର ବଦଳା ହୋଇନି। ସେଇ ଅପରିଷ୍କାର ଚଦରରେ ଏତେ ଛୋଟ ଛୁଆକୁ ଶୁଆଇ ଦେଲେ କେମିତି ? ଶୁଭ୍ରା କ'ଣ ସତରେ ସିଷ୍ଟରଙ୍କୁ କିଛି କହିପାରିବ ? କରିପାରିବ କିଛି ?

ଓଃ !

ଗିନି ଖଟ ପାଖ ଟେବୁଲରେ ଛୋଟ ମଶାରୀ ଭଳି କ'ଣଟାଏ ଥୁଆ ହୋଇଥିଲା। ଫାଇବର୍ ଗ୍ଲାସର ଘୋଡଣୀ। ସେଥିରେ ଥିବା ସୁଇଚ୍‌କୁ ବୁଲେଇ କ'ଣ ପରୀକ୍ଷା କଲେ ସିଷ୍ଟର। ଅକ୍ସିଜେନ୍ ଆସୁଛି କି ନାହିଁ ତଦାରଖ କଲେ ବୋଧହୁଏ। ତା'ପରେ ସେଇ ଘୋଡଣୀଟିକୁ ଟେକି ଆଣି ନିଶ୍ଚିନ୍ତ ନିଦରେ ଶୋଇ ରହିଥିବା ଗିନି ଉପରେ ସେ ଘୋଡାଇ ଦେଲେ।

ଶୁଭ୍ରାର ମୁଣ୍ଡ ଘୁରାଇଗଲା। ତାକୁ ଲାଗିଲା କିଏ ଯେମିତି ଝିଅକୁ ତା' ପାଖରୁ ଛଡେଇ ନେଉଛି। ତା' ଶରୀରର ଗୋଟିଏ ଅଂଶ କାଟି ଅଲଗା କରି ଦେଉଛି। ଆଉ ସମ୍ଭାଳି ପାରିଲା ନାହିଁ ସେ। କାଚ କବାଟ ପାଖରେ ମୁଣ୍ଡଟା ମାଡି ଦେଇ ସକ ସକ ହୋଇ କାନ୍ଦି ପକେଇଲା।

ଗିନି ! ଗିନିରେ ମା' !

''ଶୁଭ୍ରା, କ'ଣ ହେଲା ?'' ବିବ୍ରତ ଭାବରେ ଦୌଡି ଆସିଲା ସବ୍ୟସାଚୀ। କାଚ କବାଟ ଭିତରର ଦୃଶ୍ୟ ଦେଖିବା ପରେ ଶୁଭ୍ରାର ଉତ୍ତର ଆଉ ଜାଣିବା ପାଇଁ ତା'ର ଆବଶ୍ୟକତା ନ ଥିଲା। ତା' ଛାତି ଭିତର ମନ୍ଥି ହୋଇଗଲା।

ନା- ସବ୍ୟସାଚୀ ଅନ୍ତତଃ ବ୍ୟସ୍ତ ହେବନାହିଁ। ଗିନିର ଯେ ଆତ୍ମା ହୋଇନାହିଁ, ସେଥିପାଇଁ ଖୁସି ହେବା କଥା। ଯେଉଁଠି ଝିଅର ଖବର ବୁଝିବାକୁ ଏତେ ଲୋକ ଅଛନ୍ତି, ସେଠି ବ୍ୟସ୍ତ ହୋଇ ସେ କରିବ କ'ଣ ? ବରଂ ଡାକ୍ତରଙ୍କ ଉପରେ ସବୁ ଛାଡିଦେବ।

''ଶୁଭ୍ରା, କ'ଣ ଏମିତି ହେଉଛ, ଏତେ ଅଳ୍ପକେ ବ୍ୟସ୍ତ ହୋଇ ପଡୁଛ ?''

ଲୁହ ବୋଳା ଆଖିରେ ନିଆଁ ଝୁଲ ଝରାଇ ଚାହିଁଲା ଶୁଭ୍ରା, ''ବ୍ୟସ୍ତ ହେବି ନାହିଁ? ଦେଖୁଛ, କେତେ କଷ୍ଟ ପାଉଛି ଝିଅଟା ? ସେଥିରେ ପୁଣି ଅନାଥ ଅଛୁଆଁଙ୍କ ଭଳି ତାକୁ ଫୋପଡା ଫିଙ୍ଗା କରୁଛନ୍ତି ସମସ୍ତେ। ତୁମେ ଏଠି କ'ଣ କରୁଛ ? କାହା ସାଙ୍ଗରେ ଟିକିଏ ଭଲରେ କଥାବାର୍ତ୍ତା କରିପାରିଲ ନାହିଁ? ଏମିତି ଟିକକରେ ଅକ୍ସିଜେନ୍ କାହିଁକି ଦେବାକୁ ହେଲା ତାକୁ? ଦେଖୁଛ, ଏଠିକାର କାରବାର ସବୁ? ଆଉ ତୁମେ କହୁଛ କ'ଣ ନା ମୁଁ ବ୍ୟସ୍ତ ହେବି ନାହିଁ!''

ସବ୍ୟସାଚୀ ରାଗିଲା ନାହିଁ। ଡାକ୍ତରଖାନାର କାନ୍ଥ କଣରେ ପଡିଥିବା ପାନପିକ, କାନ୍ଥରେ ଲାଗିଥିବା ହଜାର ରକମର ଦାଗ ଆଉ କଳା କଳା ମଳିବସା କବାଟ ଝରକା ଦେଖି ତା' ମନରେ ବି କ'ଣ ଉତ୍କଣ୍ଠା ଆସିନି? ଶୁଭ୍ରାର ହାତ ।ଉଁସି ଦେଲା ସେ, ''ଡାକ୍ତର ଗିନିର ଭଲ ପାଇଁ ଏମିତି କରିଛନ୍ତି। ତୁମେ ଅକ୍ସିଜେନ୍ ଟେଣ୍ଟ ଦେଖି ବ୍ୟସ୍ତ ହେଉଛ ? କିନ୍ତୁ ଭାବି ଦେଖ, ଏବେ ଯେ ଗିନିକୁ ନିଶ୍ୱାସ ନେବା ପାଇଁ ଆଉ କଷ୍ଟ କରିବାକୁ ହେଉ ନାହିଁ।''

ଭିତରୁ ସିଷ୍ଟର ଚାଲି ଆସିଲେ, ''ଏ କ'ଣ ? ଏଠି ଠିଆ ହୋଇ ରହିଛନ୍ତି କାହିଁକି ? ଏଠି ବାହାରର କାହାକୁ ରହିବାକୁ ଦିଆଯାଏ ନାହିଁ। ଝିଅ ଅତେଇ ଘଣ୍ଟାରୁ ତିନି ଘଣ୍ଟା ରହିବ ଏଠି। ଦଶଟା, ସାଢେ ଦଶଟା ବେଳେ ଆସି ପୁଣି ଫିଡ୍ ଦେଇ ଯିବେ।''

କେହି ରହିବେନି ତା' ଗିନି ପାଖରେ ? କେମିତି ଏକା ଏକା ପକେଇ ଦେଇ ଚାଲିଯିବ ସେ ? ଆଃ- ତା' ଝିଅପାଇଁ ଆଉ କାହା ମନରେ କ'ଣ ସାମାନ୍ୟତମ କରୁଣା ନାହିଁ?

ଶୁଭ୍ରାର ପାଦ ଯେମିତି ମାଟି ସହିତ ଲାଖି ଯାଇଥିଲା। ଘୁରି ପାରୁ ନ ଥିଲା ସେ। ଏଥର ବିରକ୍ତ ହୋଇ ଉଠିଲେ ସିଷ୍ଟର, ''କ'ଣ ହେଲା ? ଯାଆନ୍ତୁ ଏଥର... ଏଇ ଦେଖୁଛନ୍ତି ଆର ପିଲାଟିକୁ। ଗତ ଏଗାର ଦିନ ଧରି ଏମିତି ରହିଛି। କିଏ ଅଛି ତା' ପାଖରେ ? ଏଠି ଆପଣମାନେ ଭିଡ କଲେ କେମିତି ହେବ ?''

ସିଷ୍ଟର ଚାଲିଗଲେ। ଅନ୍ୟ କେଉଁଦିନ କଥା ହୋଇଥିଲେ ଅନ୍ୟ ପିଲାଟି

ବିଷୟରେ ଶୁଣି ଶୁଭ୍ରା ମନ ନରମି ଯାଇଥାଆନ୍ତା। କିନ୍ତୁ ଆଜି ଆଉ କାହା କଥା ଭାବିବା ଭଳି ଅବସ୍ଥାରେ ସେ ନ ଥିଲା। କିଏ ଜଣେ ଏଗାର ଦିନ ଧରି ଏକା ପଡିଛି ବୋଲି ସେ ତା' ଝିଅକୁ ଏକା ପକେଇଦେଇ ଚାଲିଯିବ?

ସବ୍ୟସାଚୀ ଶୁଭ୍ରାର ହାତ ଧରି ପ୍ରାୟ ଜୋର କରି ନେଇଗଲା। କ୍ୟାଣ୍ଟିନ୍‌ରେ ପଡିଥିବା କଣିକିଆ ଟେବୁଲ ପାଖରେ ତାକୁ ବସେଇ ଦେଇ କହିଲା, ''କ'ଣ ଟିକିଏ ଖାଇନିଅ।''

ଖାଇବ ସେ? ଛେପ ଢୋକିବାକୁ, ସ୍ୱଚ୍ଛନ୍ଦ ଭାବରେ ନିଶ୍ୱାସ ନେବାକୁ ଯେଉଁଠି କଷ୍ଟ ହେଉଛି, ସେଠି ସେ ଖାଇବ?

''ମୁଁ କିଛି ଖାଇ ପାରିବ ନାହିଁ। ପ୍ଲିଜ୍ ବାଧ କର ନାହିଁ।''

''ନ ଖାଇଲେ ନାହିଁ, ଚାହା ଅନ୍ତତଃ ପିଅ ଟିକିଏ।'' ସବ୍ୟସାଚୀ ସ୍ତ୍ରୀର ଉତ୍ତରକୁ ଅପେକ୍ଷା ନ କରି ଦୁଇ କପ୍ ଚାହା ନେଇ ଆସିଲା। ଚିନି ସିରା ଭଳି ମିଠା। ପାଣିଚିଆ। ଚାହା ତ ନୁହଁ, ଗରମ ସରବତ। ଆଉ ବାରଣ କରିବାର ଶକ୍ତି ନ ଥିଲା ଶୁଭ୍ରାର। କିଛି ନ କହି ଚାହାକପ୍‌ରେ ସେ ମୁହଁ ଲଗାଇଲା।

ଏବେ ବି ହାତରେ ଅନେକ ସମୟ। ଆଜି କ'ଣ ସମୟ ଅଟକି ଯାଇଛି?

ଗୋଟାଏ ଯୁଗ ପରେ ଫିଡ୍ ଦେବା ସମୟ ହେଲା। ଦଶଟାବେଳେ ଗିନିର ସେରେଲାକ୍ ଖାଇବା କଥା। କିନ୍ତୁ ଇଂଜେକ୍‌ସନ୍‌ର ପ୍ରଭାବରେ ଏବେ ବି ଶୋଇଛି ସେ। ଶେଷରେ କୋଳରେ ଧରି କ୍ଷୀର ବୋତଲଟା ହିଁ ତା' ପାଟିରେ ଲଗାଇଲା ଶୁଭ୍ରା।

ଗିନି ଏମିତି ଟାଣି ଟାଣି ସାଧାରଣ ଭାବରେ କ୍ଷୀର କେମିତି ପିଇ ନେଉଛି? ସକାଳେ ତ ଢୋକେ ଦୁଇ ଢୋକ ପିଇ ପୁଣି ସାଁ ସାଁ ହୋଇ ପାଟି ବାଟେ ନିଶ୍ୱାସ ନେଉଥିଲା ସେ। ତେବେ...? ତେବେ କ'ଣ...?

ଠାକୁର ଦେବତାରେ ଖୁବ୍ କମ୍ ବିଶ୍ୱାସ କରୁଥିବା ଶୁଭ୍ରା ହାତ ଯୋଡି ବସି ରହିଥିଲା କିଛି ସମୟ। ନା- ଅକ୍‌ସିଜେନ୍ ତମ୍ବୁ ଭିତରେ ରହୁ ପଛକେ, ଶୀଘ୍ର ଭଲ ହୋଇ ଯାଉ ଗିନି।

''ଛୁଆକୁ ଏଥର ରୁମ୍‌କୁ ନେଇ ଯାଆନ୍ତୁ।'' ଶୁଭ୍ରା ସାମ୍ନାରେ ଠିଆ ହୋଇଥିଲେ ସକାଳର ସେଇ ସିଷ୍ଟର ଜଣକ। ''ପରେ ପୁଣି ଅକ୍‌ସିଜେନ୍ ଟେଣ୍ଟ ଭିତରେ

ଯେତେବେଳେ ରଖିବା କଥା, ସେତେବେଳେ ମୁଁ ଯାଇ ନେଇ ଆସିବି।''

ସବ୍ୟସାଚୀ ସ୍ପେସିଆଲ୍ କ୍ୟାବିନ ପାଇଁ ଚେଷ୍ଟା କରିଥିଲା। କିନ୍ତୁ ମିଳିଲା ନାହିଁ। ଶେଷରେ ଯେଉଁ ରୁମ୍ ମିଳିଥିଲା, ସେଠି ଅନ୍ୟଜଣଙ୍କ ସହିତ ରହିବାକୁ ହେବ ଗିନିକୁ। ବେଶୀ ବଡ କୋଠରୀ ନୁହଁ। ଦୁଇ କଡରେ ଦୁଇଟା ଦୋଳି ରଖା ହୋଇଛି। ଅସୁସ୍ଥ ଛୋଟ ପିଲାଙ୍କ ପାଇଁ। ଦୋଳି ପାଖରେ ଗୋଟିଏ ଲେଖାଏଁ ଖଟ। ପିଲାର ଦେଖାଶୁଣା କରୁଥିବା ମଣିଷଟି ପାଇଁ। ଖଟ ପାଖରେ ରହିଛି ଗୋଟିଏ ଟିଣ ଚୌକୀ।

ଦୋଳିର ଅପରିଷ୍କାର ତଉଲିଆକୁ କାଢି ସଫା ଚଦରଟିଏ ପକାଇ ଗିନିକୁ ଶୁଆଇଦେଲା ଶୁଭ୍ରା। ମଇଳା ଟିଣ ଚୌକୀ ଉପରେ ବସିବାକୁ ଇଚ୍ଛା ହେଉ ନାହିଁ। କିନ୍ତୁ କେତେ ସମୟ ଆଉ ଠିଆ ହୋଇ ରହିବ? ମନକୁ କଠିନ କରି ବସିପଡିଲା ସେ।

ଅନ୍ୟ ଦୋଳିଟି ଖାଲି ପଡିଛି। ଦୋଳିରେ ଯିଏ ଶୋଇବା କଥା, ସେଇ ଚାରିପାଞ୍ଚ ମାସର ପୁଅଟି ଶୋଇ ରହିଛି ଖଟ ଉପରେ। ତା' ପାଖରେ ଗୋଡ ଲମ୍ବେଇ ଯିଏ ବସିଛି ସେ କ'ଣ ତା'ର ମା? କେଜାଣି? ବୟସ ତ ନିହାତି କମ୍ ମନେ ହେଉଛି। କେମିତି ଗୋଟିଏ ଶୂନ୍ୟ ଦୃଷ୍ଟିରେ ଚାହିଁ ରହିଛି ଝର୍କା ବାହାରକୁ। କ'ଣ ହୋଇଛି ସେ ପିଲାଟିର?

ଶୁଭ୍ରାର ଆଉ କାହା ସାଙ୍ଗରେ କଥା କହିବାର ଇଚ୍ଛା ନ ଥିଲା। ନହେଲେ ହୁଏତ ଝିଅଟାକୁ ଦୁଇ ଚାରିଟା କଥା ପଚାରିଥାଆନ୍ତା।

ଚୌକୀରେ ବସି ବସି ଗୁଡାଏ ସମୟ କଟିଗଲାଣି ଶୁଭ୍ରାର। ସନ୍ଧ୍ୟା ରାଉଣ୍ଡରେ ଡାକ୍ତର ଆସିବାର ବେଳ ପ୍ରାୟ ହୋଇ ଆସିଲାଣି। ତାଙ୍କରି ଆସିବାକୁ ଅପେକ୍ଷା କରି ରହିଥିଲା ସେ।

ହଠାତ୍ ଅନ୍ୟ ଖଟରେ ଶୋଇଥିବା ପୁଅଟିର ଦେହ ଭୀଷଣ ଭାବରେ ଥରିବାକୁ ଲାଗିଲା। ଶୁଭ୍ରା କିଛି ବୁଝିବା ଆଗରୁ ବା ଅନ୍ୟ ଝିଅଟି କିଛି କରିବା ପୂର୍ବରୁ ସେ ଗଡିଯାଇ ଉଚ୍ଚ ବିଛଣା ଉପରୁ ଦୁମ୍ କରି ତଳେ ପଡିଗଲା। ସାଙ୍ଗେ ସାଙ୍ଗେ ବିକଳ ଚିତ୍କାର କରି କାନ୍ଦି ଉଠିଲା ସେ। ତାକୁ ତଳୁ ଉଠାଇବା ପୂର୍ବରୁ କୋଠରୀ ଭିତରକୁ ପଶି ଆସିଲେ ରାଉଣ୍ଡରେ ବାହାରିଥିବା ଶିଶୁ ବିଶେଷଜ୍ଞ ଏବଂ ତାଙ୍କ ସାଙ୍ଗରେ ସିଷ୍ଟର ଓ ଜୁନିଅର୍ ଡାକ୍ତର ଜଣେ।

'ମାଇଁ ଗଡ୍ !'

ଧାଇଁ ଯାଇ ସିଷ୍ଟର ପିଲାଟିକୁ କୋଳକୁ ଉଠେଇ ନେଲେ। ଗର୍ଜି ଉଠିଲେ ସେଇ ଝିଅଟି ଉପରେ, "କିଓ ବାସନ୍ତୀ, ତମେ ମା' ନା କ'ଣ? ତୁମକୁ ଏତେଥର କହିଲିଣି। ବୁଝୁନାହଁ କେମିତି? ତୁମେ ବାରମ୍ବାର ପୁଅକୁ ଦୋଳିରୁ ନେଇ ଆସୁଛ କାହିଁକି? କି ମଣିଷ କେଜାଣି?"

ଝିଅଟି ତା'ହେଲେ ପିଲାଟିର ମା'?

କାକୁସ୍ଥ ହୋଇ ଝିଅଟି ଉଠି ପଡିଥିଲା ସେତେବେଳକୁ, "କ୍ଷୀର ପିଆଇବି ବୋଲି ଆଣିଥିଲି। ଶୋଇ ପଡିଲା ତ..."

ଏଥର ବିରକ୍ତ ଭାବରେ ଡାକ୍ତର ହିଁ କହିଲେ, "ତୁମେ ଯଦି ମା' ହୋଇ ଏତେ ଅସାବଧାନ ହେବ, ତେବେ କିଏ ତୁମ ପିଲାର ଦାୟିତ୍ୱ ନେବ? ହସ୍‌ପିଟାଲ୍‌ରେ ତାକୁ ରଖି ଲାଭ କ'ଣ? ଏତେଥର କୁହା ହେଲାଣି, ପିଲାକୁ ଆଦୌ ଏମିତି ଖୋଲା ଖଟରେ ଶୁଆଇବ ନାହିଁ। ହେଲେ, ଶୁଣୁଛ ତୁମେ? ଜାଣିଛ ତ ତା'ର ଏମିତି ଫିଟ୍‌ସ ହୁଏ। କେତେଥର ଖଟରୁ ଗଡିପଡିଲାଣି ସେ? ପଡି ଯାଇ ଯଦି ପିଲାଟିର ହେଡ୍ ଇଞ୍ଜୁରି ହୁଏ, ହାତ ଗୋଡ ଭାଙ୍ଗିଯାଏ, ତେବେ କ'ଣ ହେବ?"

ସେଇ ଛୋଟ ମା'ଟି ଯେମିତି କିଛି ବୁଝୁ ନ ଥିଲା। କେବଳ ଡବ ଡବ ହୋଇ ଚାହିଁ ରହିଥିଲା ଡାକ୍ତରଙ୍କୁ।

ଶୁଭ୍ରା ଚୁପ୍ ହୋଇଯାଇଥିଲା। ଆହା, ଏତେ ଛୋଟ ପିଲାଟି! ବାରମ୍ବାର ଫିଟ୍‌ସ ହେଉଛି?

ପାଣିତୁଣ୍ଡ ଶୁଣି ଠିକ୍ ସେତିକିବେଳକୁ ରିନି ଉଠିପଡିଲା। ଧାଇଁ ଯାଇ ତାକୁ କୋଳକୁ ନେଇଗଲା ଶୁଭ୍ରା। ନିଶ୍ୱାସ ଅନେକଟା ସାବଲୀଳ ହୋଇଗଲାଣି। ସକାଳର ସେଇ ଅସ୍ୱାଭାବିକ ସଁ ସଁ ଶବ୍ଦ ମଧ୍ୟ ଆଉ ନାହିଁ। କିନ୍ତୁ ଭିତରେ ଯେ କଫ ବସି ରହିଛି ସେଇଟା ଘଡ ଘଡ ଶବ୍ଦରୁ ଜାଣି ହେଉଥାଏ।

ବାସନ୍ତୀର ପୁଅକୁ ଦେଖି ସାରି ଡାକ୍ତର ରିନି ପାଖରେ ପହଞ୍ଚିଲେ। ତାଙ୍କର ଗମ୍ଭୀର ମୁହଁରୁ କିଏ କ'ଣ ଜାଣିବ? ରିନିର ଛାତି ପିଠି ପରୀକ୍ଷା କରି ଡାକ୍ତର ତାଙ୍କ ଜୁନିଅର୍‌କୁ କହିଥିଲେ, "ହୁଁ। ଭଲ ରେସ୍‌ପଣ୍ଡ କରିଛି। କାଲି ସକାଳଟା ତାକୁ ଅବଜରଭେସନ୍‌ରେ ରଖ। ସବୁ ଯଦି ନର୍ମାଲ୍ ଥାଏ, ତେବେ ସନ୍ଧ୍ୟାବେଳେ

ଡିସ୍‌ଚାର୍ଜ କରିଦେବ।’’

ଶୁଭ୍ରା ଛାତି ଉପରୁ ବୋଝଟାଏ ଉଠିଗଲା ଯେମିତି। ସିଷ୍ଟର ପରେ ଆସି ରିନିକୁ ଯେତେବେଳେ ଅକ୍‌ସିଜେନ୍ ଟେଣ୍ଟରେ ରଖିବାକୁ ନେଇଗଲେ, ସେତେବେଳେ ତାକୁ ବେଶୀ କଷ୍ଟ ହେଲା ନାହିଁ।

ଅକ୍‌ସିଜେନ୍ ଟେଣ୍ଟରେ ପୁଣି ଦୁଇଘଣ୍ଟା ରଖିବା ପରେ ନଅଟାବେଳେ ରିନିକୁ ସିଷ୍ଟର ଶୁଭ୍ରା ପାଖରେ ଛାଡି ଦେଇ ଗଲେ। କିଛି ସମୟ ପରେ ଆଉ ଥରେ ଇଂଜେକ୍‌ସନ୍ ଦିଆଯାଇଥିଲା ତାକୁ। ସକାଳର ସେଇ ଚିଡା ସିଷ୍ଟର ନୁହଁ, ଅଳ୍ପ କିନ୍ତୁ ନରମ କଥା କହୁଥିବା କମ୍ ବୟସର ନର୍ସଟିଏ। ଖୁବ୍ ଦେଖି ଚାହିଁ ସେ ଇଂଜେକ୍‌ସନ୍ ଦେଇଥିଲେ। ଯେତେ ସାବଧାନରେ ଦେଲେ କ’ଣ ହେବ, ଛୁଞ୍ଚି ଫୋଡା ତ! ସକାଳ ଭଳି ଚିତ୍କାର କରିଥିଲା ରିନି। କିଛି ସମୟ କାନ୍ଦି, ପୁଣି କ୍ଳାନ୍ତ ହୋଇ ଦୋଳିରେ ଶେଷରେ ଶୋଇ ପଡିଲା ସେ।

ତା’ ଆଖି କୋଣରେ ଏବେ ମଧ୍ୟ ଲାଗିଥିବା ବୁନ୍ଦାଏ ଲୁହକୁ ପୋଛି ଦେଲା ଶୁଭ୍ରା। କାଲି ବୋଧହୁଏ ତାକୁ ଆଉ ଅକ୍‌ସିଜେନ୍ ଟେଣ୍ଟରେ ରହିବାକୁ ହେବନାହିଁ। ଇଂଜେକ୍‌ସନ୍ ମଧ୍ୟ ନେବାକୁ ହେବ ନାହିଁ। ଡାକ୍ତର ସାତଦିନ ପର୍ଯ୍ୟନ୍ତ ଗୋଟିଏ ସିରପ୍ ଦେବା କଥା କହିଯାଇଥିଲେ। ତଳେ ଥିବା ଦୋକାନରୁ ସିରପ୍ କିଣିଆଣି ଶୁଭ୍ରାକୁ ଦେଇଯାଇ କେତେବେଳୁ ଘରକୁ ଚାଲିଗଲାଣି ସବ୍ୟସାଚୀ।

ଶୁଭ୍ରାକୁ ଟିକିଏ ଖରାପ ଲାଗିଥିଲା, କିନ୍ତୁ ଉପାୟ କ’ଣ? ସିଷ୍ଟର କହିଦେଇ ଗଲେ ଯେ ରାତିରେ ରୋଗୀ ପାଖରେ କେବଳ ଜଣେ ହିଁ ରହି ପାରିବ। ରିନି ପାଇଁ ତ ଆଉ ନିୟମ ଭାଙ୍ଗି ନ ଥାଆନ୍ତେ!

ରିନି ଶୋଇବା ପରେ ଖଟରେ ପଡିଥିବା ଅସନା ଚଦର ଉପରେ ନିଜକୁ ସଂକୁଚିତ କରି ଶୁଭ୍ରା ଶୋଇବାର ଚେଷ୍ଟା କରିଥିଲା। ହେଲେ ନିଦ କାହିଁ? ଭୋରରୁ ଉଠିବା ପରେ ଏପର୍ଯ୍ୟନ୍ତ ଆଖି ବନ୍ଦ ହୋଇ ନାହିଁ ତା’ର। ତଥାପି ସେ ଶୋଇ ପାରୁ ନାହିଁ। ମଝିରେ ମଝିରେ ଉଠି ଯାଇ ସେ ଦୋଳିରେ ଶୋଇଥିବା ରିନିକୁ ଦେଖି ଆସୁଛି। ରିନିର ନିଶ୍ୱାସ ବେଶ୍ ସାଧାରଣ ଭାବରେ ହିଁ ଚାଲିଛି। ତଥାପି...

ଶୁଭ୍ରା ଖଟ ବାଡାକୁ ଆଉଜି ବସିପଡିଲା। ଅନ୍ୟ ଖଟରେ ବାସନ୍ତୀ ଶୋଇପଡିଲାଣି କେତେବେଳୁ। ଡାକ୍ତରଙ୍କ କହିବା ପରେ ସେ ଆଉ ପୁଅକୁ ଦୋଳିରୁ ଆଣି

ପାଖରେ ଶୁଆଇ ନାହିଁ। ମଝିରେ ପୁଅଟି ଟିକିଏ କାନ୍ଦିଥିଲା। କିନ୍ତୁ ମା'ର ନିଦ ଭାଙ୍ଗି ନ ଥିଲା। ଅଳ୍ପ ସମୟ କୁଁ କୁଁ ହୋଇ ପୁଣି ଶୋଇ ପଡିଥିଲା ପୁଅଟି।

''ଆରେ, ଆପଣ ଏପର୍ଯ୍ୟନ୍ତ ଶୋଇନାହାନ୍ତି?'' ରାତି ଡିଉଟିରେ ଥିବା ସିଷ୍ଟର ଜଣକ ଛୋଟ ପୁଅଟିର ଜର ମାପିବାକୁ ଆସି ଶୁଭ୍ରାକୁ କହିଲେ।

''ନିଦ ହେଉ ନାହିଁ।''

''ଚିନ୍ତା କରୁଛନ୍ତି କି? ଆପଣଙ୍କର ଝିଅ ଏକଦମ୍ ଭଲ ହୋଇଗଲାଣି। ଡାକ୍ତର ତ କହିଗଲେ ଆପଣ କାଲି ତାକୁ ନେଇ ଘରକୁ ଚାଲିଯାଇ ପାରିବେ।''

ଚମକି ପଡି ଅନ୍ୟ ଖଟରେ ଉଠି ବସିଲା ବାସନ୍ତୀ। ''ଘରକୁ? କାଲି ମୁଁ ଘରକୁ ଚାଲି ଯାଇ ପାରିବି!!''

''ନାଇଁ ବାସନ୍ତୀ, ମୁଁ ତ ୟାଙ୍କ ସାଙ୍ଗରେ କଥା କହୁଥିଲି।''

''ଓଃ।'' ସେଇ ଆଗର ଫାଙ୍କା ଦୃଷ୍ଟି ପୁଣି ଫେରି ଆସିଲା ବାସନ୍ତୀର ଆଖିକୁ। ଜୋରରେ ନିଶ୍ୱାସ ନେଇ ଖଟରେ ଶୋଇପଡିଲା ସେ।

ଶୁଭ୍ରାର ହୃଦୟ ମକ୍ଚି ହୋଇଗଲା। ଖୁବ୍ ସରୁ ଗଳାରେ ସିଷ୍ଟରଙ୍କୁ ପଚାରିଲା, ''ପିଲାଟିର କ'ଣ ହୋଇଛି, ସିଷ୍ଟର?''

ମୁଣ୍ଡ ହଲାଇ ସିଷ୍ଟର କହିଲେ, ''କ'ଣ ନ ହୋଇଛି କୁହନ୍ତୁ! ଚଉଦ ବର୍ଷର ଝିଅଟାକୁ ତା' ଘରେ ବାହା କରିଦେଲେ, ପନ୍ଦର ବର୍ଷରେ ଏ ଛୁଆ ହୋଇଛି ତା'ର। ଏମିତି ଆର୍ଲି ପ୍ରେଗ୍‌ନାନ୍‌ସିରେ ଯାହା ହୁଏ! ହଜାର ରକମର ରୋଗରେ ଏ ଛୁଆ ଭୋଗୁଛି। ସେଥିରେ ପୁଣି ଏପିଲେପ୍‌ଟିକ୍। ମା' ତ ନିଜେ ପିଲା, ସେ କ'ଣ ପିଲା ଖବର ବୁଝିବ? ପିଲା ହେବା ପରଠାରୁ ଜାଣ ସେ ହସ୍‌ପିଟାଲ୍‌ରେ ପଡିଛି। ମଝିରେ ମଝିରେ କିଛି ଦିନ ପାଇଁ ଘରକୁ ଯାଏ। ହେଲେ ପୁଣି ଦୌଡିବାକୁ ହୁଏ ହସ୍‌ପିଟାଲ୍। ଏଥର ତ ଅଠର ଦିନ ରହିସାରିଲାଣି ସେ। କ'ଣ କରାଯିବ?''

ସିଷ୍ଟର ଚାଲିଗଲେ।

ହାତରେ ପତ୍ରିକାଟିଏ ଧରି ପଢୁ ପଢୁ ଢୁଳେଇ ପଡିଥିଲା ଶୁଭ୍ରା। ବାହାରେ କେଉଁଠି ଗୋଟାଏ କୁକୁରର ଭୁକାରେ ନିଦଟା ତା'ର ଭାଙ୍ଗିଗଲା। ରାତି ବେଶ୍ ଗଭୀର ହେଲାଣି। ହସ୍‌ପିଟାଲ୍ ମଧ୍ୟ ନିସ୍ତବ୍ଧ ହୋଇଯାଇଛି। କେତେବେଳେ

କେମିତି କାହାର ପାଦଶବ୍ଦ ଯାହା ଭାସି ଆସୁଛି। ଖସି ପଡିଥିବା ପତ୍ରିକାଟିକୁ ଚୌକୀ ଉପରେ ରଖି ଦେଇ ଉଠି ବସିଲା ସେ। ରିନି ଶାନ୍ତ ଭାବରେ ଶୋଇ ରହିଛି। ତାକୁ ଚଦରରେ ଭଲ କରି ଘୋଡେଇ ଦେଇ ଝର୍କା ପାଖକୁ ଚାଲିଗଲା ଶୁଭ୍ରା। ହସ୍‌ପିଟାଲ୍ କମ୍ପାଉଣ୍ଡରେ କେହି କେଉଁଠି ନାହାନ୍ତି। ପବନରେ ନଡିଆ ଗଛର ସୁ ସୁ ଶବ୍ଦ କେବଳ ବହି ଆସୁଛି। କେତେ ସମୟ ସେଇଠି ଠିଆ ହୋଇଥିଲା କେଜାଣି ସେ। ହଠାତ୍ ପବନର ଶବ୍ଦକୁ ଦବେଇ ଦେଇ ଭାସି ଆସିଲା କାହାର କୁନ୍ଥେଇବାର ଶବ୍ଦ। କିଏ ଯେମିତି ଭାରି କଷ୍ଟ ପାଉଛି।

ରିନି ?

ଚଟ୍ କରି ବୁଲି ପଡିଲା ଶୁଭ୍ରା।

ନା- ରିନି ନୁହଁ। ରିନି ତ ସେଇମିତି ଗଭୀର ନିଦରେ ଶୋଇ ରହିଛି। ଅନ୍ୟ ପିଲାଟିର ଦୋଳି ପାଖରୁ ବୋଧହୁଏ ଆସୁଛି ଶବ୍ଦଟି। ଧୀରେ ଧୀରେ ସେଠିକି ଆଗେଇ ଗଲା ସେ।

ଏ କ'ଣ ? ଏମିତି କ'ଣ ଦେଖାଯାଉଛି ପିଲାଟି ? ତା' ଶରୀର ନୀଳ ପଡି ଆସୁଛି ନା କ'ଣ ? କାନ୍ଦିବାକୁ ମୁହଁ ଫିଟାଉଛି। କିନ୍ତୁ କାନ୍ଦି ପାରୁ ନାହିଁ। ଯନ୍ତ୍ରଣାରେ ଗୋଟିଏ ଚାପା ଶବ୍ଦ କେବଳ ବାହାରି ଯାଉଛି ତା' ପାଟିରୁ।

ବଡଙ୍କର ପାହାଡଟାଏ ଯେମିତି ଭାଙ୍ଗି ପଡିଲା ଶୁଭ୍ରା ଉପରେ। ଦେହ ଟଳୁନି। ଜୋର୍ କରି ସେ ପିଲାଟିର ମା' ପାଖକୁ ଦୌଡି ଗଲା।

''ବାସନ୍ତୀ, ବାସନ୍ତୀ ଉଠ। ତୁମ ପୁଅକୁ ଦେଖ...।''

ଶୁଭ୍ରା ବାହାରକୁ ଧାଇଁ ଗଲା। ପାଖଟା ହିଁ ତ ସିଷ୍ଟରଙ୍କର ଡ୍ୟୁଟି ରୁମ୍।

ସିଷ୍ଟରଙ୍କୁ ଖବର ଦେବାପରେ ସିଷ୍ଟର ଆସି ପିଲାଟିକୁ ଥରେ ଦେଖିନେଇ ଧାଇଁ ଯାଇ ଡ୍ୟୁଟି ଡାକ୍ତରଙ୍କୁ ଡାକି ଆଣିଥିଲେ। ଯୁବ ଡାକ୍ତର ଜଣକ କ'ଣ ଦେଖିଲେ କେଜାଣି ବିବ୍ରତ ହୋଇ ସିନିଅର୍ ଚାଇଲଡ୍ ସ୍ପେସିଆଲିଷ୍ଟଙ୍କ ପାଖକୁ ଖବର ପଠାଇ ଦେଇଥିଲେ। ତା'ପରେ କେତେଜଣଙ୍କର ଦୌଡାଦୌଡି, ଅକ୍ସିଜେନ୍ ଦେବା ବ୍ୟବସ୍ଥା।

କିଛି ଯେମିତି କାମ ଦେଉ ନ ଥିଲା। ଶେଷରେ ଡାକ୍ତର ଖୁବ୍ ଧୀର ଭାବରେ ସିଷ୍ଟରଙ୍କୁ କ'ଣ କହି ବଡ ବଡ ପାଦ ପକାଇ ଚାଲି ଯାଇଥିଲେ। ଶୁଭ୍ରା କାନରେ ପଡିଥିଲା କେବଳ ଗୋଟିଏ ଶବ୍ଦ- 'ଆଇ. ସି. ୟୁ'। ପିଲାକୁ

କୋଳରେ ଧରି ସିଷ୍ଟର ପ୍ରାୟ ଦୌଡି ଦୌଡି ବାହାରିଗଲେ। ପଛରେ ଟଳି ଟଳି ଚାଲିଥିଲା ବାସନ୍ତୀ। ଶାଢ଼ିର କାନି ଖସିଯାଇ ତଳେ। ସେଥିପ୍ରତି ଦୃଷ୍ଟି ନ ଥିଲା ତା'ର।

ସେମାନଙ୍କର ଯିବା ରାସ୍ତାକୁ ଚାହିଁ ସ୍ଥାଣୁ ପାଲଟି ଯାଇଥିଲା ଶୁଭ୍ରା। ଆଇ. ସି. ୟୁ? ଭଲ ହୋଇ ପିଲାଟି ଫେରିବ ତ ସେଠୁ?

ବାସନ୍ତୀର ଅଳ୍ପ ବୟସୀ ମୁହଁଟା କଥା ମନେପଡି ମନ ଗୁଡେଇ ହୋଇଯାଉଥିଲା ତା'ର। ଆଃ- କେତେ ଦୁଃଖ ଏ ସଂସାରରେ! କେତେ ସମସ୍ୟା! ଅଥଚ ନିଜ ସମସ୍ୟାକୁ ହିଁ ସବୁଠାରୁ ବଡ ବୋଲି ଏ ପର୍ଯ୍ୟନ୍ତ ଧରି ବସିଥିଲା ଶୁଭ୍ରା। ନିଜ ପରିଧିର ବାହାର ପୃଥିବୀକୁ କେମିତି ସେ ଥରେ ଚାହିଁ ନ ଥିଲା ଏପର୍ଯ୍ୟନ୍ତ?

କିଏ ଜଣେ କହିଥିଲା କଥାଟିଏ- ତୁମ ପାଦରେ ଜୋତା ନାହିଁ ବୋଲି ମନଦୁଃଖ କରୁଛ? ବୁଲି ଚାହଁ। ତୁମ ପଡୋଶୀର ହୁଏତ ପାଦ ହିଁ ନାହିଁ।

ଶୁଭ୍ରା ଲୁହ ଢଳ ଢଳ ଆଖିରେ ବାସନ୍ତୀ ପୁଅର ଶୂନ୍ୟ ଦୋଳିକୁ ଚାହିଁ ରହିଥିଲା। ଅଧାମେଲା ଝର୍କା ଭିତର ଦେଇ ପଶି ଆସୁଥିବା ପବନରେ ଏବେ ମଧ୍ୟ ଦୋଳିଟା ହଲୁଥିଲା। □□

# ନିଷ୍ପ୍ରଭ ସକାଳ

ଗେଷ୍ଟ ହାଉସ୍ ବାରଣ୍ଡାରେ ପଡିଥିବା ଦୁଇଟା ବେତଚୌକିରେ ସନ୍ଧ୍ୟା ବେଳୁଠୁଁ ବସିଥିଲେ ସେମାନେ। ଅରୁଣାଂଶୁ ଏମିତି କିଛି ନକରି ବସିବା ଲୋକ ନୁହଁ। କିନ୍ତୁ ଗୋଟିଏ ପରେ ଗୋଟିଏ ଭଲ ଭଲ ଖାଇବା ଜିନିଷ ତା' ପାଖରେ ପହଞ୍ଚେଇ ଦେଉଥିଲା ଗେଷ୍ଟ ହାଉସ୍‌ର କେଆର୍‌ଟେକର୍ ବାସୁ। ତେଣୁ ସେ ଆଉ ଉଠି ଯାଇ ଥାଆନ୍ତା କେମିତି ?

ଦେବାଶୀଷ କଥା ଭିନ୍ନ। ହାତରେ ବହି ଥିଲେ ସେ ଘଣ୍ଟା ଘଣ୍ଟା ଗୋଟିଏ ଜାଗାରେ କଟାଇ ଦେଇପାରେ। ଏଇ ଏବେ ଯେମିତି।

ହାତଘଡି ଉପରେ ଆଖି ବୁଲେଇ ଅରୁଣାଂଶୁ ଆତଙ୍କିତ ହୋଇ ପଡିଲା, ''ସାଢେ ଆଠଟା ବାଜିଲାଣି। ଏ ପର୍ଯ୍ୟନ୍ତ ପ୍ରତାପର ଦେଖା ନାହିଁ!''

''ଆସୁଥିବ।'' ବହି ଉପରୁ ମୁହଁ ନ ଟେକି ଦେବାଶୀଷ କହିଲା, ''ଏତେ ବ୍ୟସ୍ତ କାହିଁକି ?''

''ଆରେ ଭୋକ ହେଲାଣି ଯେ! କେତେ ସମୟ ଆଉ ତା' ପାଇଁ ଅପେକ୍ଷା କରିବା ?''

ଭୋକ! ଅରୁଣାଂଶୁକୁ କାବା ହୋଇ ଚାହିଁଲା ଦେବାଶୀଷ, ''ତୁମେ ପରା ଏବେ ବରା, ସିଙ୍ଗଡା ଖାଇଲ ? ତାପରେ ବାଦାମ...''

''ଚିନାବାଦାମ ଗୋଟିଏ ଖାଦ୍ୟ ନା କ'ଣ? ସିଙ୍ଗଡା ତ ଖାଇଥିଲି ତିନି ଘଣ୍ଟା ତଳେ। ମୁଁ ଆଉ ଅଧଘଣ୍ଟାଏ ଅପେକ୍ଷା କରିବି। ଯଦି ୟା' ଭିତରେ ପ୍ରତାପ ନଆସେ, ତେବେ ଆମେ ଡିନର ଖାଇନେବା।''

''ହଉ।'' ଦେବାଶୀଷ ଜାଣେ ଖାଇବା ପିଇବା ମାମଲାରେ ଅରୁଣାଂଶୁ ସାଙ୍ଗରେ ଯୁକ୍ତି କରି କିଛି ଲାଭ ନାହିଁ। ବରଂ ତା' କଥାରେ ରାଜି ହୋଇଗଲେ ଭଲ। ଅଯଥା ବକର ବକର ହେବାରୁ ତ ରକ୍ଷା ମିଳିବ!

ନିଜ ବହିକୁ ଫେରିଗଲା ଦେବାଶୀଷ। ଏହା ଭିତରେ କ'ଣ ଅଧଘଣ୍ଟାଏ କଟିଗଲା? ପୁଣି ଥରେ ନିଜର କ୍ଷୁଧାକୁ ନେଇ ଶୋକ ପ୍ରକାଶ କରିବା ଆରମ୍ଭ କରିଦେଇଛି ଅରୁଣାଂଶୁ।

ଯାହେଉ, ଠିକ୍ ସେତିକିବେଳେ ପ୍ରତାପର ନୀଳରଙ୍ଗର ମାରୁତି ଗାଡିଟା ଆସି ପୋର୍ଟିକୋ ତଳେ ଠିଆ ହେଲା। ଗାଡି ଲକ୍ କରି ଭିତରକୁ ଯାଉ ଯାଉ ସେ କହିଲା, 'ସରି, ଲେଟ୍ ହୋଇଗଲା। ତୁମେମାନେ ଡିନର ଖାଇନ ତ? ...ମୁଁ ସାଙ୍ଗେ ସାଙ୍ଗେ ଧୁଆଧୁଇ ହୋଇ ଆସୁଛି।'

ତା' ଯିବା ବାଟକୁ ଚାହିଁ ଦେବାଶୀଷ ଭାବି ହେଉଥିଲା। ପ୍ରତାପ ଭଳି ପିଲାର ଚାକିରି କ'ଣ ଦରକାର? କଂପାନୀରୁ ଯାହା ଦରମା ସେ ପାଏ, ସେତକ ବୋଧହୁଏ ଦିନ କେଇଟାରେ ଉଡିଯାଏ ତା'ର। ଦାମୀ ପୋଷାକ, ଦାମୀ ସିଗାରେଟ୍, ଦାମୀ ହୋଟେଲର ଖାଦ୍ୟ- ଏସବୁ କ'ଣ ଟ୍ରେନିଙ୍ଗ୍ ସମୟର ଦରମାରେ ହୁଏ? ଡାକ୍ତର ବାପା ମା'ଙ୍କର ଗୋଟିଏ ବୋଲି ପୁଅ। ଅପର୍ଯ୍ୟାପ୍ତ ପଇସା। ସେଥିପାଇଁ ଜଗି ରଖି ଚଳିବାକୁ ଶିଖି ନାହିଁ ସେ।

ଦେବାଶୀଷ ଆଶ୍ଚର୍ଯ୍ୟ ହୁଏ। ପ୍ରତାପ କାହିଁକି ସହରଠାରୁ ଦୂର ଏମିତି ଏକ ନିର୍ଜନ ସ୍ଥାନରେ ଗଢି ଉଠିଥିବା ମାଙ୍ଗାନିଜ କମ୍ପାନୀରେ ଚାକିରି କରେ? ହୋଇପାରେ ଏଇଟା ତା'ର ଗୋଟିଏ ସଉକ। ଯେଉଁଦିନ ଭଲ ନ ଲାଗିବ, ମନ ପୂରିଯିବ, ସେଦିନ ଇସ୍ତଫା ଦେଇ ଫେରିଯିବ ସହରକୁ। ତା'ର ତ ଆଉ ଦେବାଶୀଷ ଭଳି ଅବସ୍ଥା ନୁହଁ!

ଦେବାଶୀଷ ନିଜ ବିଷୟରେ କାହାକୁ କିଛି କହେ ନାହିଁ। କିନ୍ତୁ ପ୍ରାୟ ସମସ୍ତେ ଜାଣନ୍ତି ଯେ ନିମ୍ନ ମଧ୍ୟବିତ୍ତ ଘରର ପୁଅ ସେ। ତା'ର ଲୁଗାପଟା, ଚାଲିଚଳଣ ସବୁଥିରେ ଯେମିତି ପ୍ରତିଫଳିତ ହୋଇଯାଏ କଥାଟା। ଅବଶ୍ୟ ଚାକିରି

କରିବା ପରେ ଅବସ୍ଥାରେ ପରିବର୍ତ୍ତନ ଘଟିଛି। କିନ୍ତୁ ଏବେ ମଧ୍ୟ ଦେବାଶୀଷ ପଇସାକୁ ଦେଖାଡିର କରିପାରେ ନାହିଁ। କାହିଁକି କେଜାଣି, ଅନ୍ୟମାନଙ୍କ ଭଳି ପଇସା ଉଡେଇ ଦେବାକୁ ତାକୁ ବାଧେ। ଉଡେଇବ ବା କେଉଁଥିରେ ? ତା'ର କୌଣସି ବଦଭ୍ୟାସ ନାହିଁ। ପିନ୍ଧିବାର ସଉକ ମଧ୍ୟ ନାହିଁ। ଆଗ୍ରହ ଅଛି କେବଳ ଗୋଟିଏ ଜିନିଷରେ- ବହି। ତା' ତ ଏଠିକା ଲାଇବ୍ରେରୀରୁ ମିଳିଯାଏ।

ଚୁପ୍‌ଚାପ୍ ବସି ରହି ପଢ଼ିବାକୁ ଦେବାଶୀଷକୁ ସବୁଠାରୁ ଭଲ ଲାଗେ। ନିଜର ବାକୀ ସମୟତକ ସେ କଟାଇ ଦିଏ କେବଳ ସବୁ ଚିନ୍ତା କରି। ଭାବୁକ ପ୍ରକୃତିର ଦେବାଶୀଷକୁ ସେଥିପାଇଁ କଲେଜରେ ପଢ଼ିବା ବେଳେ କମ୍ ଟାହିଟାପରା ଶୁଣିବାକୁ ହୋଇଛି ? କିଏ କହୁଥିଲା 'ଫିଲୋସୋଫର'ତ କିଏ 'ପୋତାମୁହାଁ'। ଦେବାଶୀଷ କାହା କଥା ଶୁଣି ମନ ଖରାପ କରୁ ନ ଥିଲା। ଟିକିଏ ହସିଦେଇ ପୁଣି ନିଜ ଭାବନାରେ ମଗ୍ନ ହୋଇଯାଉଥିଲା।

ଦେବାଶୀଷ, ଅରୁଣାଂଶୁ, ପ୍ରତାପ। ଭାରତର ତିନି କୋଣରୁ ଆସି ଦକ୍ଷିଣ ଭାରତର ଏଇ କମ୍ପାନୀରେ ଯୋଗ ଦେଇଥିଲେ ସେମାନେ ତିନିଜଣ। ଶ୍ରୀ ଭେଙ୍କଟେଶ୍ୱର ମାଙ୍ଗାନିଜ୍ କମ୍ପାନୀ। କମ୍ପାନୀର ସୁନାମ ଅଛି। ସହରଠାରୁ କିଛି ଦୂରରେ ବେଶ୍ କେଇ ଏକର ଜମି ନେଇ କମ୍ପାନୀ ନିଜର କାରଖାନା କରିଛି। ତା' ପାଖରେ ଅଛି ଅଫିସରମାନଙ୍କ କ୍ୱାଟରସ। ପ୍ରତାପ, ଅରୁଣାଂଶୁ ଓ ଦେବାଶୀଷ କ୍ୱାଟର୍‌ସରେ ରହି ପାରି ଥାଆନ୍ତେ। କିନ୍ତୁ ହଷ୍ଟେଲରେ ଏତେ ବର୍ଷ ରହିବା ପରେ ଏକା ରହି, ଏକା ରାନ୍ଧି ଘର ଚଳେଇବାକୁ ସେମାନଙ୍କର ସାହସ ହୋଇ ନଥିଲା। ତେଣୁ ଆପାତତଃ ଟ୍ରେନିଙ୍ଗ ସମୟଟା ଗେଷ୍ଟ ହାଉସରେ ରହିବାକୁ ସେମାନେ ଅନୁରୋଧ ଜଣାଇଥିଲେ। କାରଖାନାର ଦାୟିତ୍ୱରେ ଥିବା ଜେନେରାଲ ମ୍ୟାନେଜରଙ୍କର କୌଣସି ଆପତ୍ତି ନଥିଲା ଏଥିରେ।

ନୂଆ ଜୀବନ କରିବା ବେଳେ ପ୍ରତାପ ଓ ଅରୁଣାଂଶୁ ଭାବିଥିଲେ ଯେ ଏମିତି ଗୋଟିଏ ଜାଗାରେ ରହିବାକୁ, ଚଳିବାକୁ ସେମାନଙ୍କର ଅସୁବିଧା ହେବ। କିନ୍ତୁ ଏଇ ତ ଚାହୁଁ ଚାହୁଁ କଟିଗଲା ଚାରିମାସ। ଚାରିମାସର ଟ୍ରେନିଙ୍ଗ ପରେ ପାଞ୍ଚଦିନ ପାଇଁ ଘରକୁ ଯିବାର ଅନୁମତି ମିଳିଥିଲା ସେମାନଙ୍କୁ। ଘରେ ଛୁଟୀ କଟାଇ ସେମାନେ ଆଜି ହିଁ ଫେରିଛନ୍ତି।

''ଡ଼ିନାର୍ ରେଡ଼ି, ସାର୍।'' ବାସୁ ବିନୀତ ଭାବରେ ଜଣାଇଲା।

"ଓ ଗୁଡ୍ !" ଅରୁଣାଂଶୁ ଆଗ୍ରହରେ ଉଠି ପଡି ଡାଇନିଙ୍ଗ୍ ରୁମ୍ ଆଡକୁ ଚାଲିଗଲା ।

ଗେଷ୍ଟ ହାଉସର ରୋଷେୟା ଶ୍ରୀନିବାସ ରାନ୍ଧେ ଭଲ । ଆଉ ଆଜି ପାଞ୍ଚଦିନ ପରେ ବାବୁମାନେ ଫେରୁଛନ୍ତି ବୋଲି ବିଶେଷ ରନ୍ଧା ଟିକିଏ ହୋଇଥିଲା ।

ସାତଦିନ କାଳ ଉପାସ ଥିବା ଭଳି ଖୁବ୍ ଶୀଘ୍ର ଶୀଘ୍ର ଖାଇ ଚାଲିଥାଏ ଅରୁଣାଂଶୁ । ତା'ର ଖାଇବା ଦେଖି ଦେବାଶୀଷ ମନେ ମନେ ହସିଲା । ନୀରବ ଭାବରେ ପୁରିରୁ ଟିକିଏ ଛିଣ୍ଡାଇ ପାଟିରେ ଦେଉ ଦେଉ ହାତ ତା'ର ରହିଗଲା ।

କେଉଁଠୁ ଗୋଟାଏ ଶବ୍ଦ ଭାସି ଆସୁଛି । କିଏ ଯେମିତି ଖୁବ୍ କଷ୍ଟ ପାଇବା ଭଳି କୁନ୍ଥେଇ କୁନ୍ଥେଇ କାନ୍ଦୁଛି ।

କାରଖାନା କଂପାଉଣ୍ଡର ଶେଷ ମୁଣ୍ଡରେ ଗେଷ୍ଟ ହାଉସ୍ । ଆଉ ସେ ପାଖକୁ ଖୋଲା ପଡିଆ । ଆଖପାଖରେ କାହାର ଘର ନାହିଁ । ତେବେ ?

ଶବ୍ଦଟି ଅନ୍ୟମାନଙ୍କ କାନରେ ମଧ୍ୟ ପଡିଥିଲା । ଦେବାଶୀଷ ଭଳି ସେମାନେ ମଧ୍ୟ ମୁହୂର୍ତ୍ତକ ପାଇଁ ଆଶ୍ଚର୍ଯ୍ୟ ହୋଇଗଲେ ।

"ବାସୁ !" ପ୍ରତାପ ବଡ ପାଟି କରି ଡ଼ାକିଲା, "କିଏ କାନ୍ଦୁଛି ଏମିତି ?"

ବାସୁ ଯେମିତି କିଛି ଶୁଣି ପାରୁ ନଥିଲା, "କାହିଁ କେଉଁଠି ଆଜ୍ଞା ? ...ଓ, ଏଇ ଯୋଉ ପିଲା କାନ୍ଦ । ମୂଲିଆଙ୍କ ପିଲା ସାର୍ ।"

"ମୂଲିଆ ? ଏଠି ମୂଲିଆ ଆସିଲେ କେଉଁଠୁ ? ସେମାନଙ୍କ ପାଇଁ ପରା ଫ୍ୟାକ୍ଟରୀର ସେପାଖରେ କ୍ୱାଟର୍ସ ବ୍ୟବସ୍ଥା ହୋଇଛି !"

"ସାର୍, ସେମାନେ ତ ପର୍ମାନେଣ୍ଟ ୱାର୍କର । ସେମାନଙ୍କ ଛୁଆ ଏ ନୁହଁ । ଯେ କେଉଁ ଦିନମଜୁରିଆର ପିଲା ହେବ । ବର୍ଷାଦିନ ସରିଗଲେ ଫ୍ୟାକ୍ଟରୀରେ କାମ ବଢ଼ିଯାଏ ତ । ସେଥିପାଇଁ ତିନି, ଚାରି ମାସ ପାଇଁ ଶହେ, ଦେଢ଼ଶହ ଦିନମଜୁରିଆଙ୍କୁ କାମ ଦିଆଯାଏ । ସେମାନେ ତ ଆଉ କାରଖାନା ଭିତରେ ରହି ପାରିବେ ନାହିଁ । ସେଥିପାଇଁ ଏଇ ଖାଲି ପଡିଆରେ ରହନ୍ତି । ଦିନେ ଦୁଇଦିନ ତଳେ ସବୁ ଆସି ପହଞ୍ଚିଛନ୍ତି ।"

"ହେଲ୍, ଏମିତିଆ ଗୋଟିଏ ଜାଗାରେ ଗେଷ୍ଟ ହାଉସ୍ କରିବା କଥା ? କି ବିଶ୍ୱାସ ଏ ମୂଲିଆଙ୍କୁ ? ପାଚେରୀ ଡେଇଁ ଆସି ଚୋରି କରିବାକୁ କେତେ ସମୟ ? ସିକ୍ୟୁରିଟି ଗାର୍ଡ ତ ଜାଣି ବି ପାରିବ ନାହିଁ ।"

''ସେଇ କଥା ଆଜ୍ଞା ମୁଁ ଜି.ଏମ୍.ଙ୍କୁ ମଧ୍ୟ କହିଛି। ସେ କହିଛନ୍ତି ଯେ ଏହାର ଗୋଟାଏ ବ୍ୟବସ୍ଥା କରିବେ। କେତେବେଳେ କେମିତି ଏଠିକି ବିଦେଶରୁ ଗେଷ୍ଟ ଆସନ୍ତି। ସେତେବେଳେ ଏମିତି ହୋ ହଲ୍ଲା, ଚେଁ ଚାଁ, ଧୂଆଁ ଗନ୍ଧ-ବଡ ଲଜ୍ଜାକର।''

ବାସୁକୁ ଅଟକେଇ ଦେଲା ଅରୁଣାଂଶୁ। ନହେଲେ କେଜାଣି କେତେ ସମୟ ତା' ଭାଷଣ ଚାଲି ଥାଆନ୍ତା।

''ବାସୁ, ଶ୍ରୀନିବାସକୁ କୁହ ଗରମ ଗରମ ପୁରି ଆଣିବ। ଏଗୁଡାକ ଥଣ୍ଡା ହୋଇଗଲାଣି।''

''ଆଜ୍ଞା।''

ଅରୁଣାଂଶୁ ଗୋଟାଏ ପରେ ଗୋଟାଏ ପୁରି ପାଟି ଭିତରେ ପୁରେଇ ଚାଲିଥିଲା। ତା' ଭଳି ନହେଲେ ମଧ୍ୟ ବେଶ କ୍ଷୀପ୍ର ଗତିରେ ଖାଇ ଚାଲିଥିଲା ପ୍ରତାପ। ଘରୁ ଚାରି ଘଣ୍ଟା ତଳେ ଯାହା ଖାଇ ଆସିଥିଲା ସେ। କେତେବେଳଠୁ ପାଣି ହୋଇ ସାରିଲାଣି। କିନ୍ତୁ ଦେବାଶୀଷ ଖାଇ ପାରୁ ନ ଥିଲା। ଜୋର୍ କରି ଖାଉ ଖାଉ ଅନ୍ୟମନସ୍କ ହୋଇ ପଡୁଥିଲା ସେ।

''କିଓ ଫିଲୋସୋଫର୍! ମାଂସ ତରକାରୀ କ'ଣ ଭଲ ଲାଗୁନି ନା କ'ଣ?'' ଥଟ୍ଟାଳିଆ ସ୍ୱରରେ ପ୍ରତାପ ପଚାରିଲା।

ତା' ଆଡକୁ ଚାହିଁଲା ଦେବାଶୀଷ। କେମିତି ସେ ପ୍ରତାପକୁ କହିବ ଯେ ମୂଲିଆ ପିଲାଟିର କାନ୍ଦ ତାକୁ ଦୋହଲାଇ ଦେଉଛି, ଅନ୍ୟମନସ୍କ କରି ଦେଉଛି। କିଏ ଜାଣେ, ପିଲାଟି ଖାଇଛି ନା ନାହିଁ। ହୁଏତ ଭୋକରେ ଆଉଟି ପାଉଟି ହୋଇ ଆଉ ସହି ପାରୁ ନାହିଁ। ତା' ମାଆ ବାପାକୁ ଆଜି କାରଖାନାରେ କାମ ମିଳିଛି କି ନାହିଁ? କାରଖାନରେ କାମ ନମିଳିଲେ ଏ ଅପନ୍ତରାରେ କି ମଜଦୁରି କରି ପାରିବେ ସେମାନେ? ମଜଦୁରି ନକଲେ ମଜୁରୀ ମିଳିବ କେଉଁଠୁ? ଆଉ ମଜୁରୀ ନପାଇଲେ ତ ସେମାନଙ୍କ ପେଟକୁ ଦାନା ଯିବ ନାହିଁ।

ଦେବାଶୀଷ ଦାରିଦ୍ର୍ୟ କ'ଣ ଜାଣିଛି। ଉପାସରେ ଶୋଇବାର ଯନ୍ତ୍ରଣା ମଧ୍ୟ ଜାଣିଛି। ପ୍ରତାପ କ'ଣ କେବେହେଲେ ଚିନ୍ତା କରି ପାରିବ ସେ ବିଷୟରେ? ଯିଏ ଅଚିନ୍ତା ଭାବରେ ଶହ ଶହ ଟଙ୍କା ଫୋପାଡି ଦେଇପାରେ ସେ କ'ଣ

ଏକଥା ବୁଝିପାରିବ ? ତା'ହେଲେ ?

ଏମିତିଆ କଥା ଚିନ୍ତା କରେ ବୋଲି ସାରା ଜୀବନ ଦେବାଶୀଷକୁ ଟାହିଟାପରା ଶୁଣିବାକୁ ହୋଇଛି। ପୁଣି ସେସବୁ ଶୁଣିବାକୁ ହେବ ତା' ସାଙ୍ଗରେ ଟ୍ରେନିଙ୍ଗ ନେଉଥିବା ଏଇ ଦି'ଜଣଙ୍କଠାରୁ ? ବରଂ କଥା ଆଡେଇ ଗଲେ ଭଲ।

''ଭୋକ ନାହିଁ।'' ସଂକ୍ଷିପ୍ତ ଭାବରେ କହି ପାଣି ଗ୍ଲାସେ ପିଇ ନେଇ ଦେବାଶୀଷ ଉଠିଗଲା। ନିଜ ରୁମ୍ ଭିତରେ ପଶିଯାଇ ଆଗରୁ ପଢୁଥିବା ବହି ଖଣ୍ଡକ ଧରି ଟେବୁଲ ପାଖରେ ବସିଗଲା ସେ। ରାତି ବେଶ୍ ହେଲାଣି। ବହିଟି ପଢୁ ପଢୁ ସେ ତା' ଭିତରେ ମଗ୍ନ ହୋଇ ଯାଇଥିଲା। ପ୍ରତାପ ଓ ଅରୁଣାଂଶୁଙ୍କ କୋଠରୀର ଆଲୁଅ ଲିଭିଗଲାଣି କେତେବେଳୁ। ଗେଷ୍ଟ ହାଉସ୍ ନିସ୍ତବ୍ଧ। ସକାଳର ଟ୍ରେନ୍ ଯାତ୍ରା ପରେ କ୍ଳାନ୍ତ ହୋଇ ଦେବାଶୀଷର ମଧ୍ୟ ଶୋଇଯିବା କଥା। କିନ୍ତୁ ସେଇ ଖାଇବା ବେଳଠାରୁ ମନଟା ଯେଉଁ ଅସ୍ଥିର ହୋଇ ଉଠିଥିଲା, ତା' ଆଉ ସ୍ଥିର ହେଉ ନାହିଁ। ମନ ସ୍ଥିର ନହେଲେ ଶୋଇବ କେମିତି ? ଆଖିରୁ ସବୁତକ ନିଦ ଯେମିତି କେହି ପୋଛି ନେଇଛି।

କାନ ପାତିଲା ସେ। ନା- ଆଉ ପିଲାଟିର କାନ୍ଦ ଶୁଣାଯାଉ ନାହିଁ। କାନ୍ଦି କାନ୍ଦି କ୍ଳାନ୍ତ ହୋଇ ବୋଧହୁଏ ଶୋଇ ପଡ଼ିଲାଣି।

ବହି ବନ୍ଦ କରି ଦେବାଶୀଷ ଧୀରେ ଧୀରେ ଝର୍କା ପାଖକୁ ଗଲା। ଗେଷ୍ଟ ହାଉସ୍‌ର ପଛପଟେ ପଥରର ପାଚେରୀ। ପାଚେରୀ ଆରପଟେ ଖୋଲା ପଡ଼ିଆ। ବାସୁ କହୁଥିଲା ଯେ ସେଇଠି କୁଆଡେ ଘର କରି ରହିଛନ୍ତି କାମ ଆଶାରେ ଦୂର ଦୂରାନ୍ତରୁ ଆସିଥିବା ମୂଲିଆମାନେ। କୃଷ୍ଣ ପକ୍ଷର ଅନ୍ଧାର ରାତି। ସହର ଜାଗା ତ ନୁହଁ ଯେ କେଉଁ ରାସ୍ତାରୁ ଝଲକାଏ ଆଲୁଅ ଆସି ରାତିର ଭୟଙ୍କରତାକୁ ଟିକିଏ କମେଇ ଦେବ ! ଏ କିଟିମିଟି ଅନ୍ଧାରରେ କିଛି ଦେଖି ହେଉ ନାହିଁ। ଗୋଟିଏ ହୋସ୍‌ରେ କୋଠରୀରୁ ବାହାରି ଆସିଲା ଦେବାଶୀଷ। ଦାଣ୍ଡ କବାଟ ଖୋଲି ବାରଣ୍ଡାରେ ସେ ପାଦ ରଖିଲା। କେହି କେଉଁଠି ନାହିଁ। ବାସୁ ଗେଷ୍ଟ ହାଉସ ପାଖରେ ଥିବା ତା' କୋଠରୀରେ ଶୋଇ ସାରିବଣି। ଆଉ ରୋଷେଇ ଘରେ ସପ ଚଦର ପକାଇ ପଡ଼ିଯାଇଥିବ ଶ୍ରୀନିବାସ।

ବାରଣ୍ଡାରେ ଟିଉବଲାଇଟର ବ୍ୟବସ୍ଥା ଅଛି। କିନ୍ତୁ ଦେବାଶୀଷ ସୁଇଚ୍ ଟିପିଲା ନାହିଁ। କାରଖାନାର ଏକନମ୍ବର ଗେଟ୍ ଉପରେ ଜଳୁଥିବା ମର୍କୁରି ବଲ୍‌ବର

କାଣିଚାଏ ଆଲୁଅ ଆସି ପଡିଛି ବାରଣ୍ଡାରେ। ଦେବାଶୀଷ ପାଇଁ ସେତକ ହିଁ ଯଥେଷ୍ଟ। ସେଇ ଆଲୁଅରେ ସେ ବାରଣ୍ଡାର ତିନିଟା ଶିଡି ପରିଷ୍କାର ଭାବରେ ଦେଖି ପାରୁଥିଲା। ଧୀରେ ଧୀରେ ତଳକୁ ଓହ୍ଲେଇଗଲା ସେ। ଗେଷ୍ଟ ହାଉସ୍‌ର କଡ ଦେଇ ସେ ଚାଲିଗଲା ପଛପଟର ପଥର ପାଚେରୀ ନିକଟକୁ।

ଜେଲ୍ ଭଳି ଉଚ୍ଚ ପାଚେରୀ। ଅଥଚ ଗୋଟିଏ ଜାଗାରେ ପାଚେରୀ ଭଙ୍ଗା ହୋଇ ତିଆରି ହୋଇଛି କାଠ ଫାଟକଟିଏ। ଆଉ ପୁଣି ସେଥିରେ ଝୁଲା ହୋଇଛି ଗୋଦ୍‌ରେଜ୍‌ର ଓଜନିଆ ସାତ ଲିଭର୍ ତାଲା। ଦେବାଶୀଷକୁ ହସ ଲାଗିଲା। ଏଇଟା ନିଶ୍ଚିତ ଭାବରେ ବାସୁର କାମ। ପୁରୁଣା ଅଧା ଭଙ୍ଗା ଗେଟ୍। ସେଥିରେ ପୁଣି ତାଲା ! ଧକ୍‌କାଏ ପକାଇଲେ ଗେଟ୍‌ଟା ଭୁଷୁଡି ପଡିବ, ଅଥଚ....।

ଦେବାଶୀଷ ଫାଟକ ଭିତର ଦେଇ ବାହାରକୁ ଚାହିଁଲା। ଅନ୍ଧାରରେ ଅଭ୍ୟସ୍ତ ହୋଇଗଲାଣି ଆଖି ଦୁଇଟି ତା'ର। ଏତେ ସମୟ ଯେଉଁଟା ଗୋଟିଏ ମୋଟା କଳା ଚଦର ବୋଲି ମନେ ହେଉଥିଲା, ଏବେ ସେଇଠି ତିନି କୋଣିଆ, ଚାରି କୋଣିଆ ଆକାରମାନ ସେ ଦେଖି ପାରୁଛି।

ଏଇଠି ରହିଛନ୍ତି କାମ ଆଶାରେ ଆସିଥିବା ମଣିଷମାନେ। ଛିଣ୍ଡା ଟାର୍ପୋଲିନ ବା ପ୍ଲାଷ୍ଟିକ ଚଦରକୁ ତମ୍ବୁ ଭଳି କରି ତା' ଭିତରେ ସେମାନେ ପଡି ରହିଛନ୍ତି। କି ଅନିଶ୍ଚିତ ଜୀବନ ସେମାନଙ୍କର ! ସକାଳେ କାରଖାନାର ସିଟି ବାଜିବା ଆଗରୁ ବାହାରି ଯାଇ ଗେଟ ପାଖରେ ଧାଡି ବାନ୍ଧିବେ। ପ୍ରୟୋଜନ ଅନୁସାରେ ଜଣେ କ୍ଲର୍କ ଆସି କିଛି ଲୋକଙ୍କୁ ଭିତରକୁ ଡାକି ନେବେ। ଅନ୍ୟମାନେ ମୁଣ୍ଡ ତଳକୁ ପୋତି ଫେରି ଆସିବେ ପଡିଆକୁ। ଯେଉଁମାନଙ୍କୁ କାମ ମିଳିବ ସେମାନେ ସନ୍ଧ୍ୟାବେଳେ ମଜୁରୀ ପଇସାରେ ଡାଲି, ଚାଉଳ, କେତେବେଳେ କେମିତି ଆଳୁଟାଏ କି ବାଇଗଣଟାଏ କିଣି ଫେରିଥିବେ। ଯଦି କେହି ବେଖାତିରେ କରି ମଦ ପିଇ ପଇସାତକ ଉଡେଇ ଦେଲା, ବାସ୍-। ସେଦିନ ରାତିରେ ତା' ପରିବାରକୁ ପେଟରେ ଓଦାକନା ପକାଇ ଶୋଇବାକୁ ହେବ।

ହୁଏତ ଏଇଭଳି କିଛି ହୋଇଛି କାନ୍ଦୁଥିବା ପିଲାଟିର ପରିବାରରେ। ଦେବାଶୀଷର ଜାଣିବା ଉପାୟ ନାହିଁ। ଏବେ ଶାନ୍ତ, ନିସ୍ତବ୍ଧ ହୋଇଯାଇଛି ସ୍ଥାନଟି।

ଦେବାଶୀଷ ଫେରିଯିବାକୁ ବସିଲା। ହଠାତ୍ କ'ଣ ଗୋଟିଏ ଖସ ଖସ ଶବ୍ଦରେ ପାଦ ଦୁଇଟି ରହିଗଲା ତା'ର। ଫାଟକଠାରୁ ଅଳ୍ପ ଦୂରରେ ଥିବା

ଛିଣ୍ଡା ପ୍ଲାଷ୍ଟିକ ଚଦର ଘେରା ତମ୍ବୁ ଭିତରୁ ବାହାରକୁ ଚାଲି ଆସିଲା ଛାୟା ମୂର୍ତ୍ତିଟିଏ। ପୁଅ କି ଝିଅ ଜଣାପଡୁନି। କିନ୍ତୁ ଛୋଟ ପିଲାଟିଏ ନିଶ୍ଚୟ। କିଛି ସମୟ ଠିଆ ହୋଇ ଧପ୍ କରି ବସି ପଡିଲା ସେ। ତା'ପରେ ଆରମ୍ଭ ହୋଇଗଲା କାଶ। ଛାତି ଭିତର ମନ୍ଥି ହୋଇଯାଉଛି ଯେମିତି ତା'ର। କିଛି ସମୟ ଧରି କାଶିବା ପରେ କୁନ୍ଥେଇ କୁନ୍ଥେଇ ସେ କାନ୍ଦିବାକୁ ଆରମ୍ଭ କଲା।

ଏ ତ ସେଇ କାନ୍ଦ! ଏଇ ତା'ହେଲେ ସେଇ ପିଲା ଯାହାର କାନ୍ଦ ସେ ଖାଇବାବେଳେ ଶୁଣିଥିଲା। ଜୋର୍ ଥଣ୍ଡା ନିଶ୍ଚୟ ଧରିଯାଇଛି ତାକୁ, ନହେଲେ ଏମିତି କାଶ। ସହି ନପାରି ବିଚରା କାନ୍ଦୁଛି।

କମ୍ପାନୀର ନିଜ ଶ୍ରମିକମାନଙ୍କୁ ଘର ଦିଆ ହୋଇଛି। ସେମାନଙ୍କର ପିଲାଙ୍କ ପାଇଁ ଅଛି ସ୍କୁଲ। କିଏ ଯଦି ଅସୁସ୍ଥ ହୋଇପଡେ ତା'ର ଦେଖାଶୁଣା କରିବା ପାଇଁ ଅଛି ଛୋଟ ଡାକ୍ତରଖାନାଟିଏ।

ହେଲେ, ଏସବୁ ବ୍ୟବସ୍ଥା ତ ଆଉ ଚାରିମାସ କାମ କରିବାକୁ ଆସୁଥିବା ମୂଲିଆମାନଙ୍କ ପାଇଁ କରାଯାଇ ପାରିବ ନାହିଁ। କଂପାନୀର ଜେନେରାଲ ମ୍ୟାନେଜର୍ ଲୋକଟି ଭଲ। କିନ୍ତୁ ଭଲ ଲୋକ ବୋଲି କ'ଣ କାରଖାନାର ନିୟମ ଭାଙ୍ଗି ଦେଇ ପଡିଆରେ ପଡି ରହିଥିବା ମୂଲିଆମାନଙ୍କୁ କମ୍ପାଉଣ୍ଡ ଭିତରେ ରଖେଇ ପାରିବେ? କାରଖାନାର ଡାକ୍ତରଖାନାରେ ସେମାନଙ୍କର ଚିକିତ୍ସା ବ୍ୟବସ୍ଥା କରି ପାରିବେ? ସହଜେ ତ ଡାକ୍ତରଖାନା ଛୋଟ ଓ ଷ୍ଟାଫ୍ କମ୍ ବୋଲି କାରଖାନା କର୍ମଚାରୀମାନଙ୍କ ମଧ୍ୟରେ ଅସନ୍ତୋଷ ରହିଛି। ତା' ଉପରେ ପୁଣି ବାହାର ରୋଗୀ ଆସିବାର ବ୍ୟବସ୍ଥା କରିଦେଲେ, କମ୍ପାନୀ ଚାଲିବ କେମିତି?

ତା'ହେଲେ, ଦୂରରୁ ଆସିଥିବା ଏ ମୂଲିଆମାନେ ଅସୁସ୍ଥ ହେଲେ କ'ଣ କରନ୍ତି? କୋଡିଏ କିଲୋମିଟର ଦୂର ସହରକୁ ଯାଇ ସରକାରୀ ଡାକ୍ତରଖାନାର ଡାକ୍ତରଙ୍କୁ ଦେଖାଇବା ଏମାନଙ୍କ ପକ୍ଷରେ ସମ୍ଭବ ନୁହଁ। ତେବେ?

ଦୀର୍ଘ ନିଶ୍ୱାସ ନେଇ ଫେରି ଆସିଲା ଦେବାଶୀଷ। ତା' କ୍ଲାନ୍ତ ଆଖିକୁ ସେଦିନ ବହୁତ ଡେରିରେ ନିଦ ଆସିଥିଲା।

ଏମିତିରେ ସବୁଦିନ ସେ ସାତଟା ଭିତରେ ପ୍ରସ୍ତୁତ ହୋଇ ସାରିଥାଏ। ଅଥଚ ପରଦିନ ସକାଳେ ତା'ର ନିଦ ଭାଙ୍ଗିଲା ସାତଟା କୋଡିଏରେ। ଇସ୍...। ତା' ବି ବୋଧହୁଏ ହୋଇ ନ ଥାଆନ୍ତା ଯଦି ସକାଳୁ ପ୍ରତାପ ଗୁଡାଏ ପାଟିତୁଣ୍ଡ

ଆରମ୍ଭ କରି ନଥାଆନ୍ତା ।

କବାଟ ପାଖରେ ଆସି ଠିଆ ହେଲା ଦେବାଶୀଷ । ଦୁଇହାତ ହଲେଇ ପ୍ରତାପ ଏବେ ମଧ୍ୟ ପାଟି କରି ଚାଲିଛି, ''ବାସ୍ତୁ, ତୁମେ ଏହାର ଗୋଟିଏ ବ୍ୟବସ୍ଥା କର । ଦିନଯାକର କ୍ଲାନ୍ତି ପରେ ମଣିଷ ରାତିରେ ଟିକିଏ ଶୋଇବ, ତା' ବି ସମ୍ଭବ ନୁହଁ !''

''କ'ଣ ହେଲା ପ୍ରତାପ ?'' ନିଦୁଆ ସ୍ୱରରେ ଦେବାଶୀଷ ପଚାରିଲା ।

ସାର୍ଟର ବୋତାମ ଲଗାଉ ଲଗାଉ କୋଠରୀ ଭିତରୁ ବାହାରି ଆସିଲା ଅରୁଣାଂଶୁ, ''ତମେ କ'ଣ କୁମ୍ଭକର୍ଣ୍ଣ ନିଦରେ ଶୋଇଥିଲ କି ? କିଛି କେମିତି ଜାଣିନ ?''

''କୁହ, କ'ଣ ହୋଇଛି ?''

''କ'ଣ ହୋଇଛି ?'' ଉତ୍ତ୍ୟକ୍ତ ଭାବରେ ପ୍ରତାପ ଆରମ୍ଭ କଲା, ''ଭୋର ହେବା ଆଗରୁ ଏ ମୂଲିଆ ବସ୍ତିରେ କି ଅଶାନ୍ତି ! କିଏ ଖଁ ଖଁ ହୋଇ କାଶୁଛି ତ କିଏ ପାଟି କରି କନ୍ଦାଉଛି । ଏମିତି ଜାଗାରେ ଭଦ୍ରଲୋକ ରହି ପାରିବେ ?''

ପୂର୍ବ ରାତି କଥା ଦେବାଶୀଷର ମନେ ପଡିଗଲା, ''ହଁ, ସେଇ ଯୋଉ ପିଲାଟି କାନ୍ଦୁଥିଲା, ସେ ହିଁ କାଶୁଥିଲା ନା କ'ଣ ।''

''ତୁମେ ଶୁଣିଛଟି ? ତୁମ ନିଦ କେମିତି ଭାଙ୍ଗିଲା ନାହିଁ ? ପିଲାର କାଶ ଏମିତି ବଢିଗଲା ଯେ ତା' ମା' ବାପା ଉଠି ପାଟିତୁଣ୍ଡ ଆରମ୍ଭ କରିଦେଲେ । ଆଉ ଦି ଚାରିଟା ଲୋକ ମଧ୍ୟ ମିଶିଗଲେ ସେଥିରେ ।''

ନା- ଦେବାଶୀଷ ଏସବୁ ଜାଣି ନାହିଁ । ରାତି ଡେରିରେ ଶୋଇଲା ତ ନିଦ ନିଶ୍ଚୟ ଖୁବ ଗଭୀର ହୋଇଯାଇଥିଲା ।

''ବାସ୍ତୁ, ତୁମେ ସେମାନଙ୍କୁ କହିଦିଅ,'' ପ୍ରତାପ ସେ ପର୍ଯ୍ୟନ୍ତ ଥଣ୍ଡା ହୋଇ ନଥିଲା, ''ପିଲା ଯଦି ଅସୁସ୍ଥ, ତେବେ ତାକୁ ଡାକ୍ତର ଦେଖାନ୍ତୁ । ରାତିର ଏ ଡ୍ରାମା ବନ୍ଦ କରିବାକୁ ହେବ । ନହେଲେ ପେଡି ପୁଟୁଳା ଉଠେଇ ଚାଲି ଯାଆନ୍ତୁ ପଡିଆର ଆର କଣକୁ ଯେଉଁଠୁ କେହି ସେମାନଙ୍କର ଗଳାର ସ୍ୱର ଶୁଣି ନପାରିବେ ।''

''ଆଜ୍ଞା ସାର୍ ।''

ବାସ୍ତୁର କଥା ସରିବା ଆଗରୁ ପ୍ରତାପ ଧପ୍ ଧପ୍ କରି ବାହାରକୁ ଚାଲିଗଲା ।

"ତୁମେ ବ୍ରେକ୍‌ଫାଷ୍ଟ ବ୍ୟବସ୍ଥା କର। ମୁଁ ସିଗାରେଟ୍ କିଣି ଆସୁଛି।" ଗାଡ଼ି ଷ୍ଟାର୍ଟ କରି ଚାଲିଗଲା ସେ।

ଅରୁଣାଂଶୁ ଡାଇନିଙ୍ଗ୍ ଟେବୁଲ ପାଖ ଚୌକୀ ଉପରେ ବସିଗଲା। ଯେମିତି କିଛି ବି ହୋଇନି ସେମିତିଆ ଭାବରେ କହିଲା, "ଆଜି ବ୍ରେକ୍‌ଫାଷ୍ଟର କି ବ୍ୟବସ୍ଥା, ବାସୁ ?"

"ସାର୍ ଆପଣ ପରା କହିଥିଲେ ଫ୍ରେଞ୍ଚ ଟୋଷ୍ଟ କରିବାକୁ..."

"ଗୁଡ୍! ଗୁଡ୍! ଶୀଘ୍ର ଆଣ। ଦେବାଶୀଷ, ତୁମେ ଏ ପର୍ଯ୍ୟନ୍ତ ଦାନ୍ତ ଘଷିନ ? ଫ୍ରେଞ୍ଚ ଟୋଷ୍ଟ ଥଣ୍ଡା ହୋଇଗଲେ କ'ଣ ଖାଇ ପାରିବ ?"

ଏସବୁ ଭିତରେ ବି କେବଳ ଖାଦ୍ୟ ଚିନ୍ତା କରିପାରୁଛି ଅରୁଣାଂଶୁ! କିଛି ନ କହି ଦେବାଶୀଷ ନିଜ ରୁମ୍‌କୁ ଚାଲିଆସିଲା। ସେ ପ୍ରତାପର କଥା ଭୁଲି ପାରୁ ନଥିଲା। କେତେ ସହଜରେ ସେ କହିଦେଲା- ପିଲାର ମା, ବାପାଙ୍କୁ କୁହ ଡାକ୍ତର ଦେଖାଇବେ।

କୋଡ଼ିଏ କିଲୋମିଟର ଯାଇ ଡାକ୍ତର ଦେଖାଇବା କ'ଣ ଏମାନଙ୍କ ପାଇଁ ସହଜ କଥା ? ହଁ, ଏଠୁ ସହରକୁ ବସ୍‌ର ବ୍ୟବସ୍ଥା ଅଛି। କିନ୍ତୁ ଭଡ଼ା ଲାଗେ। ତା'ଛଡ଼ା ଦିନବେଳେ କାମ ବନ୍ଦ କରି ସରକାରୀ ଡାକ୍ତରଖାନାକୁ ଗଲେ ସେମାନଙ୍କୁ ମଜୁରୀ ଦେବ କିଏ ? ମଜୁରୀ ନ ପାଇଲେ ଖାଇବେ କ'ଣ ? ସନ୍ଧ୍ୟାବେଳେ ହୁଏତ ଯାଇପାରନ୍ତେ, କିନ୍ତୁ ସନ୍ଧ୍ୟାବେଳେ ସରକାରୀ ହସ୍‌ପିଟାଲରେ ଥିବ କିଏ ? ଆଉ ପ୍ରାଇଭେଟ ପ୍ରାକଟିସ୍ କରୁଥିବା ଡାକ୍ତରଙ୍କ ଫିସ କ'ଣ ସେମାନେ ଦେଇପାରିବେ ?

ସୁନା ପଲଙ୍କରେ ଝୁଲି ଝୁଲି ବଢ଼ି ଆସିଥିବା ପ୍ରତାପ କେବେହେଲେ ଏମିତି ତଳେଇ କରି ଭାବି ପାରିବ ନାହିଁ।

ତଉଲିଆ ନେଇ ଗାଧୁଆ ଘରେ ପଶିଲା ଦେବାଶୀଷ। ସକାଳର ଗହଳଚହଳ ଆରମ୍ଭ ହୋଇଯାଇଛି ମୂଲିଆ ବସ୍ତିରେ। ସେମାନେ ନିଶ୍ଚୟ କାରଖାନାକୁ ଯିବା ପାଇଁ ବାହାରୁଛନ୍ତି। ତଥାପି ସବୁ ଗହଳ ଚହଳକୁ ଟପି ଧୀରେ ଧୀରେ ଭାସି ଆସୁଛି କାହାର ଘଁ ଘଁ କାଶ। କଫ ଘଡ ଘଡ କରୁଛି ଯେମିତି କାହା ଛାତି ଭିତରେ।

ଓଃ, କାହିଁକି ସେ ଏତେ ବ୍ୟତିବ୍ୟସ୍ତ ହୋଇପଡୁଛି ? କାହିଁକି ଅରୁଣାଂଶୁ ବା ପ୍ରତାପ ଭଳି ଆଡେଇ ଦେଇ ପାରୁନି ଅନ୍ୟର ସମସ୍ୟାକୁ ?

ମନକୁ ଦୃଢ଼ କରି ଜୋରରେ କଳ ଖୋଲିଲା ଦେବାଶୀଷ। ବାଲ୍‌ଟିରେ ପାଣି ପଡ଼ିବାର ଶବ୍ଦରେ ଲୁଚିଗଲା ପୃଥିବୀର ସମସ୍ତ କୋଳାହଳ।

ପୁଣି ସନ୍ଧ୍ୟା। ବାରଣ୍ଡାର ବେତଚୌକିରେ ବସି ଅନ୍ଧାର ନଇଁ ଆସିବାର ଦୃଶ୍ୟ ଦେଖୁଥିଲା ଦେବାଶୀଷ।

ଗୋଟିଏ ପ୍ଲେଟ ପକୁଡ଼ି ହାତରେ ଧରି ଖାଇ ଖାଇ ଆସି ପହଞ୍ଚିଲା ଅରୁଣାଂଶୁ, ''ନିଅ ଦେବାଶୀଷ, ଖାଅ। ତୁମକୁ ଭୋକ କେମିତି ଏତେ କମ୍ ବୁଝି ପାରୁନି।''

ପ୍ଲେଟରୁ ଗୋଟିଏ ପକୁଡ଼ି ନେଇ ଦେବାଶୀଷ କହିଲା, ''ବାସ୍, ଆଉ ନାହିଁ। ଏବେ ଚାହା ପିଇ ଦେଇଛି ତ ଦୁଇ କପ, ସେଥିପାଇଁ ଭୋକ ନାହିଁ। ...ପ୍ରତାପକୁ ଦେଉନ।''

''ପ୍ରତାପ? ଏବେ ପ୍ରତାପ ପାଖକୁ ଗଲେ ମାଡ ଖାଇବାକୁ ହେବ। ସେ ଫୋନରେ ପ୍ରେମାଳାପ ଚଳେଇଛି। ତା' ଗାର୍ଲଫ୍ରେଣ୍ଡର ଫୋନ ଆସିଛି ବମ୍ବେରୁ।''

''ଓ ଆଚ୍ଛା।'' ଦେବାଶୀଷ ଚୁପ ରହିଗଲା। ପ୍ରତାପର ଗାର୍ଲଫ୍ରେଣ୍ଡ କଥା ସେ ବହୁତ ଶୁଣିଛି। କେଉଁ ନେଭି ଅଫିସରଙ୍କ ଝିଅ। ଇଣ୍ଟିରିଅର ଡେକୋରେଟର୍। ନିଜର ଅଫିସ ଅଛି ବମ୍ବେରେ। କ'ଣ ମୋନା କି ସୋନା ତା'ର ନାଁ।

''ତୁମେ ତାଜା ଖବର ଶୁଣିଛ?'' ଅରୁଣାଂଶୁ ଯେମିତି ଦେବାଶୀଷକୁ ନୀରବ ରହିବାକୁ ଦେବା ପାଇଁ ଚାହୁଁ ନ ଥିଲା।

''ନା- ମୁଁ ଟି.ଭି. ଖୋଲିନି।''

''ଧେତ୍‌ତେରି। ମୁଁ କ'ଣ ଟେଲିଭିଜନ ସମ୍ବାଦ କଥା କହୁଛି? ଆଞ୍ଚଳିକ ସମ୍ବାଦ। ଏଇ ମୂଲିଆ ପିଲାର ଖବର।''

''କ'ଣ ହେଲା?'' ଦେବାଶୀଷ ଆତଙ୍କିତ ଭାବରେ ପଚାରି ଦେଲା।

''ଆଜି ସକାଳେ ପ୍ରତାପର ପାଟିତୁଣ୍ଡ ପରେ ବାସୁ ଯାଇଥିଲା ମୂଲିଆ ବସ୍ତିକୁ। ସେ ଯେଉଁ ପିଲାଟା କାଶି ହୁଏ, ତାକୁ ଜମା ପାଞ୍ଚ ବର୍ଷ। ଏମିତି ମାସେ ଧରି କାଶ ଚାଲିଛି ତା'ର। ଖାଇପାରୁନି, ଶୋଇପାରୁନି କି ଚଲାବୁଲା ଭଲରେ କରିପାରୁନି। ତା' ବାପ କୁଆଡେ କହିଲା ଯେ କାଶିଲେ ବେଳେବେଳେ ରକ୍ତ ବାହାରୁଛି ତା'ର।''

''ରକ୍ତ??''

"ହଁ, ଏଥର ବୁଝିଲ ତ। ନିଶ୍ଚିତ ଭାବରେ ଟି.ବି। କି ସାଂଘାତିକ ଅବସ୍ଥା ! ସହରରେ ଟି.ବି. ହସ୍ପିଟାଲ୍‌ଟେ ଅଛି ଯେ ସେଠି ଭୀଷଣ ପଇସା ଲାଗେ। ତା' ବାପା ମା' କ'ଣ ପାରିବେ ? ଆଉ ଏମିତି ଗୋଟିଏ ଡିଆଁ ରୋଗ ନେଇ ଗେଷ୍ଟ ହାଉସ୍ ପାଖରେ ସେମାନେ ପଡି ରହିବା କ'ଣ ଉଚିତ ହେଉଛି ?"

ଦେବାଶୀଷ କେବଳ ଅରୁଣାଂଶୁକୁ ଚାହିଁ ରହିଥିଲା।

"ଆରେ, ଏମିତି ଦେଖୁଛ କ'ଣ ? ସକାଳେ ପ୍ରତାପ ଠିକ୍ କହିଥିଲା। ସେ ପିଲାକୁ ଏମିତି ଏଠି ପକାଇ ରଖିବା ଉଚିତ ହେଉନି। ମୁଁ ତ ସବୁ ଶୁଣି ବାସୁକୁ କହି ଦେଇଛି।"

"କ'ଣ ?" ଖୁବ୍ ଆସ୍ତେ ପଚାରିଲା ଦେବାଶୀଷ।

"ପିଲା ବାପାକୁ କହିଦେବା ପାଇଁ ଯେ ଛୁଆକୁ ନେଇ ଗାଁ ଫେରିଯାଆନ୍ତୁ। ଦରକାର ପଡିଲେ ପଛେ ବସ ଭଡାଟା ଆମେ ମିଶି କରି ଦେଇଦେବା। ନାଇଁ କି ? ...ରୁହ, ମୁଁ ଆଉ ଟିକିଏ ପକୁଡି ନେଇ ଆସେ। ଶ୍ରୀନିବାସକୁ କହିଲି ଆଣି ବାରଣ୍ଡାରେ ଦେଇଯିବାକୁ। ଶ୍ରୀନିବାସ..." ଅରୁଣାଂଶୁ ଉଠି ଚାଲିଗଲା।

ତା' ଯିବା ରାସ୍ତାକୁ ଚାହିଁ ଦେବାଶୀଷ ଗୋଟିଏ ନିଷ୍ପତ୍ତି ନେବାର ଚେଷ୍ଟା କରୁଥିଲା।

ମୋନା ସାଙ୍ଗରେ ଅଧଘଣ୍ଟା ଧରି କଥା କହିବା ପରେ ପ୍ରତାପର ମନଟା ଭାରି ଖୁସି ହୋଇଯାଇଥିଲା। କେତେ ମାସ ହୋଇଗଲାଣି ଦେଖା ହୋଇନି ତା' ସାଙ୍ଗରେ। ନା- ଟ୍ରେନିଙ୍ଗ ସରିବା କ୍ଷଣି ସେ ବମ୍ବେ ଚାଲିଯବ। ମୋନା ବି ତ କେତେ ଖୋଜୁଥିବ ତାକୁ। ତା' ସହିତ କଟେଇଥିବା ସୁନ୍ଦର ମୁହୂର୍ତ୍ତଗୁଡିକ ବିଷୟରେ ଭାବୁ ଭାବୁ ପ୍ରତାପର ଗଭୀର ନିଦ ହୋଇ ଯାଇଥିଲା। ରାତିରେ ଡିନାର୍ ଖାଇବାକୁ ମଧ୍ୟ ଉଠିଲା ନାହିଁ ସେ।

କେତେ ରାତି ହେବ କେଜାଣି, ଗୋଟିଏ ପରିଚିତ ଶବ୍ଦରେ ପ୍ରତାପର ଆଖି ଦୁଇଟି ସାମାନ୍ୟ ମେଲି ହୋଇଗଲା। ଗୋଟାଏ ଗାଡିର ଶବ୍ଦ ନା କ'ଣ ! କିନ୍ତୁ ଏତେ ରାତିରେ ଏଠି ଗାଡି ନେଇ ଆସିବ କିଏ ? କଡ ବୁଲେଇ ନେଇଥିଲା ସେ।

ନା- କୋଉଠୁ କିଛି ଶବ୍ଦ ଶୁଣାଯାଉ ନାହିଁ ଆଉ। ବାସୁ ନିଶ୍ଚୟ ମୂଲିଆ ପିଲାଟିକୁ ଏଠୁ ଉଠେଇବାର ବ୍ୟବସ୍ଥା କରି ଦେଇଛି।

ଥ୍ୟାଙ୍କ ଗଡ୍ !

ଖୁବ୍ ଶୀଘ୍ର ପ୍ରତାପ ଆଗ ଭଳି ଗଭୀର ନିଦରେ ହଜିଗଲା ।

''ଆଜ୍ଞା ! ସାର୍ !! ଉଠନ୍ତୁ ଆଜ୍ଞା !''

ସକାଳୁ ସକାଳୁ ବାସୁର ଚିତ୍କାରରେ ସମସ୍ତଙ୍କର ନିଦ ଭାଙ୍ଗିଗଲା । ଏକାଡିଆଁକେ ବିଛଣା ଛାଡି ପ୍ରତାପ ବାହାର ବାରଣ୍ଡାରେ ପହଞ୍ଚିଗଲା । ଆଖି ମଳି ମଳି ନିଜ ରୁମ୍‌ରୁ ବାହାରି ଆସିଲା ଅରୁଣାଂଶୁ ।

''କ'ଣ ହେଲା ବାସୁ ? ଏମିତି ଚିତ୍କାର କାହିଁକି କରୁଛ ?''

''ସାର୍, ଚୋର ସାର୍ ! ରାତିରେ ଚୋର ପଶିଥିଲା ।''

''ପାଗଳ ନା କ'ଣ ? ଚୋର କମ୍ପାଉଣ୍ଡ ଭିତରେ ପଶିବ କେମିତି ?''

ଏତେ ବଡ ପାଚେରୀ । ଗେଟ୍‌ରେ ସିକ୍ୟୁରିଟି ଗାର୍ଡ । ଧେତ୍- ଅଯଥାରେ ନିଦ ଭଙ୍ଗେଇ ଦେଇଥିବାରୁ ଅରୁଣାଂଶୁ ବିରକ୍ତ ହୋଇ ପଡିଥିଲା ।

''ଆଜ୍ଞା, ଏଇ ଶଳା ମୂଲିଆଙ୍କ କାମ । ଏଇଠି ଡେରା ପକେଇ ରହିଛନ୍ତି । ରାତିରେ ଚୁପ୍‌ଚାପ୍ ହାତ ସଫେଇ !''

ବାସୁକୁ ଚୁପ୍ କରେଇ ଦେଲା ପ୍ରତାପ, ''କ'ଣ ଚୋରୀ ହୋଇଛି ?...ହେଇ ତ ଟି.ଭି. ସେଇଠି ରହିଛି । ଚନ୍ଦନକାଠର ହାତୀଟା ବି ଥୁଆ ହୋଇଛି । ବାକି ସବୁ ଜିନିଷ ଠିକ୍ ଥିବା ଭଳି ଲାଗୁଛି । ...ତୁମେ ଜାଣିଲ କେମିତି ଚୋର ପଶିଥିଲା ବୋଲି ?''

''ଆଜ୍ଞା କ'ଣ କହୁଛନ୍ତି ? ଫାଟକରେ ମୁଁ ନିଜେ ରାତିରେ ତାଲା ପକେଇ ଚାବି ଏଇଠି ଖାଇବା ଟେବୁଲ ଉପରେ ରଖିଥିଲି । ଫାଟକ ଖୋଲା । ଦାଣ୍ଡ କବାଟ ମେଲା... ଆପଣମାନେ ବରଂ ନିଜ ନିଜ କୋଠରୀକୁ ଯାଇ ଦେଖନ୍ତୁ କିଛି ଯାଇଛି କି ନାହିଁ ।''

ଅରୁଣାଂଶୁ ଅନିଚ୍ଛାରେ ତା' କୋଠରୀ ଭିତରକୁ ଗଲା । ଚୋରୀ ହେବା ଭଳି କ'ଣ ଏମିତି ଅଛି ଯେ ! କିଛି ଲୁଗାପଟା, ଗୋଟିଏ ପୁରୁଣା ଟେପ୍‌ରେକର୍ଡର ଆଉ ଦୁଇ ଚାରି ପ୍ୟାକେଟ୍ ବିସ୍କୁଟ । ପର୍ସ ତ ପ୍ରାୟ ଖାଲି ! କ'ଣ ମିଳିବ ଚୋରକୁ ?

ହଠାତ୍ ପ୍ରତାପର ପାଟି ଗେଷ୍ଟ ହାଉସ୍ କମ୍ପେଇଦେଲା, ''ମୋ କାର୍ ଚାବି ? କାର୍ ଚାବି କାହିଁ ? ଟେବୁଲ ଉପରେ ପର୍ସ ପାଖରେ କାଲି ସନ୍ଧ୍ୟାବେଳେ

ରଖିଥିଲି। ପର୍ସ ଅଛି। ଅଥଚ ଚାବି ନାହିଁ। ମୋ ଗାଡ଼ି...'' ପାଗଳଙ୍କ ଭଳି ବାହାରକୁ ଧାଇଁଗଲା ପ୍ରତାପ।

ପୋର୍ଟିକୋ ଶୂନ୍ୟ। ଚକର ଦାଗ ଏବେ ବି ରହିଛି, ଅଥଚ ଗାଡ଼ି ନାହିଁ। ଖାଲି ପାଦରେ ଏ ମୁଣ୍ଡରୁ ସେମୁଣ୍ଡ ଦୁଇଥର ଧାଇଁ ଗଲା ପ୍ରତାପ। ନୂଆ ଗାଡ଼ି, ବର୍ଷେ ବି ହୋଇନି। ଚାକିରି ପାଇବାର ଖୁସିରେ ମା' କିଣି ଦେଇଥିଲେ। ଆଉ ଏମିତି...।

ଅରୁଣାଂଶୁ ପ୍ରତାପ କାନ୍ଧରେ ହାତ ରଖିଲା, ''ବ୍ୟସ୍ତ ହୁଅନା, ପ୍ରତାପ। ମୁଁ ପୋଲିସ୍‌କୁ ଫୋନ୍ କରୁଛି। ଗାଡ଼ି ନିଶ୍ଚୟ ମିଳିଯିବ।''

''ଆଉ ମିଳିବ!''

''ଆଚ୍ଛା, ଗାଡ଼ିର ଇନସ୍ୟୁରାନ୍‌ସ କରିଥିଲ ତ?''

''ଇନ୍‌ସ୍ୟୁରାନ୍‌ସ ତ ଅଛି, ହେଲେ କି ଝାମେଲା... ଜାଣ ଅରୁଣାଂଶୁ, ରାତିରେ ମୁଁ ଗୋଟିଏ ଗାଡ଼ି ଶବ୍ଦ ଶୁଣିଥିଲି। କିନ୍ତୁ ସେଇଟା ଯେ ମୋ ଗାଡ଼ି, ଭାବି ପାରିନି। ଓଃ, ଉଠିକରି ଥରେ ଦେଖି ଥାଆନ୍ତି ହେଲେ। ସେଇ ସାଙ୍ଗେ ସାଙ୍ଗେ ପୋଲିସ୍‌କୁ ଖବର ଦେଇଥିଲେ ଗାଡ଼ି ମିଳିଯାଇଥାନ୍ତା। ଚୋର ନେଇ ପାରି ନଥାଆନ୍ତା।'' ବିବ୍ରତ ଭାବରେ ପ୍ରତାପ କହି ପକେଇଲା।

ଅରୁଣାଂଶୁ ଚିନ୍ତିତ ଭାବରେ ପଚାରିଲା, ''ହେଲେ ଗାଡ଼ିଟା ଚୋର ବାହାରକୁ ନେଲା କୋଉ ବାଟେ? ପଛ ଫାଟକ ତ ନିହାତି ଛୋଟ।''

''ସତକଥା ତ, ପଛ ଫାଟକ ବାଟେ ଗାଡ଼ି ନେବା ଅସମ୍ଭବ। ନିଶ୍ଚୟ ମେନ୍‌ଗେଟ୍ ବାଟେ ଚୋର ଗାଡ଼ି ନେଇଛି। ହେଲେ, ସିକ୍ୟୁରିଟି ଗାର୍ଡ କ'ଣ କରୁଥିଲା? ଗେଟ୍ ଖୋଲି ଗାଡ଼ି ଛାଡ଼ିଦେଲା କେମିତି? ଶଳା, ନିଶ୍ଚୟ ଚୋରଠୁଁ ପଇସା ଖାଇଛି। ତା' ମଜା ଛଡ଼ଉଛି। ...ବାସୁ, ତୁମେ ଟିକିଏ ଫ୍ୟାକ୍ଟରୀର ସିକ୍ୟୁରିଟି ଅଫିସରଙ୍କୁ ଖବର ଦେଇଆସ। ଅରୁଣାଂଶୁ, ପୋଲିସକୁ ଫୋନ୍...।''

ହଠାତ୍ ଭୂତ ଲାଗିବା ଭଳି ହାଉଳି ଖାଇଲା ଶ୍ରୀନିବାସ, ''ଆଜ୍ଞା, ହେଇ ତ ଗାଡ଼ି।''

ଚାରିଟା ମଣିଷ ଯେମିତି ପଥର ପାଲଟି ଗଲେ। ଗେଷ୍ଟ ହାଉସ୍ ସାମ୍ନା ରାସ୍ତା ଦେଇ ଧୀରେ ଧୀରେ ଆଗେଇ ଆସୁଥିଲା ପ୍ରତାପର ନୀଳ ମାରୁତି। ଗାଡ଼ିଟି ଆସି ପୋର୍ଟିକୋ ତଳେ ଅଟକିଗଲା। ଡ୍ରାଇଭର୍ ପଟ କବାଟ ଖୋଲି

ବାହାରକୁ ବାହାରି ଆସିଲା ଦେବାଶୀଷ।

ଦେବାଶୀଷ ??

ପ୍ରତାପ ତଥାପି ସ୍ତବ୍ଧ ହୋଇ ଚାହିଁ ରହିଥିଲା। ତା'ର ଡାହାଣ ହାତରେ ଗାଡି ଚାବିଟା ରଖିଦେଇ ଦେବାଶୀଷ କହିଲା, ''ସରି ପ୍ରତାପ, ତୁମକୁ ନ କହି ଗାଡିଟା ଟିକିଏ ନେଇ ଯାଇଥିଲି।''

ଏତେବେଳେକେ ସମ୍ବିତ ଫେରି ପାଇଲା ପ୍ରତାପ। ତା'ର ଆଖି ଦୁଇଟା ରାଗରେ ଜଳି ଉଠିଲା। ''ଆଇ ଡୋଣ୍ଟ ବିଲିଭ୍ ଦିସ୍! ମୁଁ ସତରେ ବିଶ୍ୱାସ କରି ପାରୁନି, ଦେବାଶୀଷ! ଏମିତି ମତେ ନ କହି ଗାଡି ନେଇଯିବାର ମାନେ କ'ଣ? ଆଉ କିଏ ହୋଇଥିଲେ ଅଲଗା କଥା। କିନ୍ତୁ ତୁମେ ଯେ ଏମିତି କିଛି କରିପାର, ତା' ତ ମୁଁ ଭାବି ପାରୁନି। ମୁଁ ଗାଡି ଚୋରି ହୋଇଗଲା ଭାବି ମୁଣ୍ଡ ଖରାପ କରି ସାରିଲିଣି! ଅଥଚ ତୁମେ ଆନନ୍ଦରେ ଗାଡି ନେଇ ବୁଲି ବୁଲି ଫେରୁଛ! ମାଇଁ ଗଡ୍!!''

ଦେବାଶୀଷ ଶାନ୍ତ ଭାବରେ ପ୍ରତାପର କଥା ଶୁଣିନେଲା। ତା'ପରେ ଦୋଷ ସ୍ୱୀକାର କରିଦେବା ଭଳି ଖୁବ୍ ଧୀରେ କହିଲା, ''ସତରେ ଏମିତି ନ କହି ଗାଡି ନେବାଟା ମୋର ଭୁଲ ହୋଇଛି। କିନ୍ତୁ ତୁମେ ଏତେ ଗଭୀର ନିଦରେ ଶୋଇଥିଲ ଯେ ତୁମକୁ ମୁଁ ଉଠେଇବାକୁ ଚାହିଁଲିନି।...ପ୍ରତାପ, କାଲି ରାତିରେ ମୂଲିଆ ପିଲାଟି ଭୀଷଣ ଅସୁସ୍ଥ ହୋଇପଡିଥିଲା। ତା'ର କାଶ, ବାନ୍ତି ଆଉ ବିକଳ କାନ୍ଦ ସହିପାରିଲିନି ମୁଁ। ସେଥିପାଇଁ ଗାଡିରେ ତାକୁ ନେଇ ସହରକୁ ଚାଲିଗଲି।...ଡାକ୍ତରଖାନାରେ ଆଡମିଟ୍ କରେଇ ଦେଇ ଆସୁଛି। ଯା ହେଉ, ଡାକ୍ତର କହିଛନ୍ତି ଯେ ବୋଧହୁଏ ଏଇଟା ଟି.ବି. ନୁହଁ। ଫୁସ୍‌ଫୁସ୍‌ରେ ଇନ୍‌ଫେକ୍‌ସନ। ଆଣ୍ଟିବାୟୋଟିକସରେ ଠିକ୍ ହୋଇଯିବ। ତଥାପି ସବୁ ପରୀକ୍ଷା କରିବା ପାଇଁ ଦିନଟିଏ ତାକୁ ରଖିବେ।...ମତେ କ୍ଷମା କରିଦେବ, ପ୍ରତାପ।''

ମୁଣ୍ଡ ତଳକୁ ନୁଆଁଇ ସ୍ଥାଣୁ ପାଲଟିଯାଇଥିବା ମଣିଷମାନଙ୍କୁ ଟପି ଦେବାଶୀଷ ଭିତରକୁ ଚାଲିଗଲା। □□

# ଅନ୍ୱେଷୀ

କରବୀର ଭୀଷଣ ରାଗ ହୋଇଥିଲା ଅଭୟ ଉପରେ। ଏମିତି ଗୋଟିଏ ବିଶେଷ ଦିନରେ ବି ଜଣେ ସମୟ କରି ଅଫିସରୁ ଫେରି ଆସି ପାରେ ନାହିଁ? ନିଜେ କରବୀ ତା' ସ୍କୁଲ ଛୁଟୀ ନ ହେଉଣୁ ଆସି ଘରେ ହାଜର। ଅଥଚ ଅଭୟର ଦେଖା ନାହିଁ! ଏଇ କେତେଟା ଦିନରେ ସେ ଆଉ ପାଞ୍ଚଜଣଙ୍କ ଭଳି ହୋଇଗଲା! ସେମାନଙ୍କର ବିବାହିତ ଜୀବନ ଅଭୟ ପାଇଁ ହୋଇଗଲା ଗତାନୁଗତିକ ?

ନହେଲେ କି ଏମିତି ଗୋଟିଏ ଦିନକୁ ବେଖାତିର୍ କରି ସେ ଅଫିସରେ ବସି ରହିଥାଆନ୍ତା ? ଆଜି ଯେ ତାଙ୍କର ତୃତୀୟ 'ଆନିଭର୍ସାରି'! ଆରେ ନା, ତିନିବର୍ଷ ନୁହଁ, ବାହାଘରର ତିନିମାସ ପୂରିଲା ଆଜି। ଅନ୍ୟମାନେ ଯିଏ ଯେତେ ଥଟ୍ଟା ତାମସା କରନ୍ତୁ ପଛକେ କରବୀ ଓ ଅଭୟ ପାଇଁ ତ ଦିନଟି ଗୁରୁତ୍ୱପୂର୍ଣ୍ଣ! ଅନ୍ତତଃ କରବୀ ସେକଥା ଏପର୍ଯ୍ୟନ୍ତ ଭାବିଥିଲା। ହେଲେ ଅଭୟର କୌଣସି ଭାବନା ହିଁ ନାହିଁ! ସକାଳୁ ଏତେ ଯୋଜନା- ସିନେମା ଯିବେ, ବାହାରେ ଖାଇବେ; ଅଥଚ ସମୟ କରି ସେ ଘରକୁ ଆସିପାରିଲା ନାହିଁ!

ରାଗରେ ଯେତେବେଳେ ମୁହଁ ଫୁଲାଇ କରବୀ ବସିଥିଲା, ସେତେବେଳେ ସ୍କୁଟରରେ ଆସି ପହଞ୍ଚିଲା ଅଭୟ। ଘରେ ପଶୁ ନ ପଶୁଣୁ ଆଦର ନାହିଁ, ମିଠା କଥା ନାହିଁ, ଡେରିରେ ଆସିଛି ବୋଲି କୌଣସି ଦୋଷୀ ଭାବ ନାହିଁ,

ସିଧାସଳଖ କରବୀକୁ କହିଲା, ''ଶୀଘ୍ର ବାହାରିପଡ। ଡିନାର୍ ପାଇଁ ଯିବାକୁ ହେବ। ହେଡ୍ ଅଫିସ୍‌ରୁ ଜେନେରାଲ ମ୍ୟାନେଜର୍ ରାଠୋର୍ ଆସିଛନ୍ତି, ତାଙ୍କ ଖାତିରରେ ଡିନାର୍।''

କରବୀର ଆଖି, ନାକ, କାନ ଦେଇ ରାଗଗୁଡ଼ାକ ଛିଟିକି ପଡ଼ିଲା, ''ଆଜି ଭଳି ଦିନରେ ତୁମେ ଏତେ ଡେରି କରି ଫେରୁଛ? ପୁଣି କ'ଣ ନା, ଅଫିସିଆଲ୍ ଡିନାର୍! ମୁଁ ଯିବି ନାହିଁ। ତୁମର ଯିବା କଥା ତ ଯାଅ।''

''ସେମିତି ଅସୁବିଧାରେ ନ ପଡ଼ିଥିଲେ ମୁଁ କ'ଣ ଆଜି ଏତେ ଡେରି କରିଥାଆନ୍ତି?''

ବାଧ ହୋଇ ଅଭୟକୁ କୋମଳ ହେବାକୁ ହେଲା, ''ଆଗରୁ କୌଣସି ଖବର ନ ଦେଇ ହଠାତ୍ ରାଠୋର୍ ଆସି ପହଞ୍ଚିଗଲେ। କ'ଣ ବ୍ୟକ୍ତିଗତ କାମରେ ତ୍ରିଭାନ୍ଦ୍ରମ ଆସିଥିଲେ। ସେଇଠୁ ଏଠିକି ଚାଲି ଆସିଲେ। ଆଜି ଦିନଟା ଯାକ ମିଟିଙ୍ଗରେ କଟିଗଲା। ତୁମେ ଟିକିଏ ବୁଝ, ପ୍ଲିଜ୍।...କିନ୍ତୁ ଡେରି କର ନାହିଁ। ସାଢେ ସାତଟା ସୁଦ୍ଧା ପହଞ୍ଚିବାକୁ ହେବ।...ଆରେ, ବଡ଼ ଇଣ୍ଟରେଷ୍ଟିଙ୍ଗ୍ ଲୋକ ଏ ରାଠୋର ବୁଢା। ତାକୁ ଦେଖିଲେ ତୁମକୁ ଗପ ଲେଖିବାର ଉପାଦାନ ମିଳିଯିବ।''

''ହଁ, ତୁମ ରାଠୋର୍‌କୁ ନଦେଖିଲେ ଆଉ କ'ଣ ମୁଁ ଗପ ଲେଖିପାରୁଛି!'' ହତାଦର କରି କରବୀ ସିନା କହିଦେଲା, କିନ୍ତୁ ଚୁପ୍‌ଚାପ୍ ଉଠିଯାଇ ସନ୍ଧ୍ୟା ପାଇଁ ପ୍ରସ୍ତୁତ ହେବାକୁ ଲାଗିଲା।

ଅଫିସ୍‌ର କ୍ଲବ୍ ହାଉସ୍‌ରେ ରାତ୍ରିଭୋଜନର ଆୟୋଜନ ହୋଇଥିଲା। ଏହା ପୂର୍ବରୁ କରବୀ ଥରଟିଏ ଏଇଭଳି ଅଫିସ୍‌ର ଗୋଟିଏ ଡିନାର୍‌ରେ ଭାଗ ନେଇଥିଲା। ତା'ଛଡା ନୂଆ ବାହାହୋଇ ଆସିଛି ବୋଲି ପ୍ରାୟ ସମସ୍ତେ ତାକୁ ଘରକୁ ଡାକି ଥରେ ଥରେ ଖୁଆଇଥିଲେ। ତେଣୁ କରବୀ ସମସ୍ତଙ୍କୁ ଏହା ଭିତରେ ଚିହ୍ନିଯାଇଥିଲା।

କ୍ଲବ୍‌ର ସୁନ୍ଦର ଲନ୍‌ରେ ଯେଉଁ ଗୋରା ହୋଇ ଅତି ଆକର୍ଷଣୀୟ ଚେହେରାର ମଧ୍ୟବୟସ୍କ ଭଦ୍ରଲୋକ ଜଣକ ଠିଆ ହୋଇଥିଲେ ସେ ହିଁ କେବଳ ତା'ର ଅଚିହ୍ନା। ନିଶ୍ଚୟ ସେଇ ହେଉଛନ୍ତି ଜେନେରାଲ ମ୍ୟାନେଜର୍ ରାଠୋର୍। ବୟସ ପଚାଶରୁ କମ୍ ହେବ ନାହିଁ, କିନ୍ତୁ ନିଜକୁ ସଜେଇ ବାଗେଇ ରଖିଛନ୍ତି ସେ। ବାଁ ହାତରେ ହ୍ୱିସ୍‌କି ଗ୍ଲାସ୍। ଡାହାଣ ହାତ ଘେରି ରହିଥିଲା ଜଣେ କମ୍

ବୟସର ମହିଳାଙ୍କ ଅଣ୍ଟା ଚାରିପଟେ।

ସୁନ୍ଦରୀ ମହିଳା ଜଣକ ଶାଢ଼ି ତ ପିନ୍ଧିଥିଲେ, କିନ୍ତୁ ଏ କେଉଁଠିକାର ଶାଢ଼ି ପିନ୍ଧା ଷ୍ଟାଇଲ୍? ସୁନ୍ଦରୀଙ୍କ ସ୍ପର୍ଶରେ ଯେମିତି ଲଜ୍ଜିତ ହୋଇ ଶାଢ଼ିଟା ଗୋଟେଇ ହୋଇ ଯାଇଥିଲା। ଏ ଜେନେରାଲ୍ ମ୍ୟାନେଜରଙ୍କ ସ୍ତ୍ରୀ?

"ହ୍ୟାଲୋ ଅଭୟ। ଦିସ୍ ଲଭ୍‌ଲି ଲେଡି ମଷ୍ଟ ବି ୟୋର୍ ବ୍ରାଇଡ୍। ଗୁଡ୍ ଇଭିନିଙ୍ଗ୍। ମୁଁ ସତ୍ୟ ରାଠୋର୍।"

ମୁହୂର୍ତ୍ତକ ପାଇଁ ସୁନ୍ଦରୀଙ୍କ ଅଣ୍ଟାରୁ ହାତ କାଢି କରବୀ ଉଦ୍ଦେଶ୍ୟରେ ବଢେଇ ଦେଲେ ସେଇ ଅଚିହ୍ନା ଭଦ୍ରଲୋକ ଜଣକ। କରବୀ ହାତ ଯୋଡ଼ିଲା। ଏହା କ'ଣ ଅପମାନିତ କରିବା ଭଳି କଥା ହେଲା? ହେଉ ପଛକେ।

କିଛି ସମୟ ପାଇଁ ଚୁପ୍ ହୋଇଯାଇ ସତ୍ୟ ରାଠୋର୍ ଡାହାଣ ହାତକୁ ପୁଣି ଥରେ ତାଙ୍କ ସଙ୍ଗିନୀଙ୍କ ଅଣ୍ଟାରେ ଗୁଡେଇ ନେଲେ। ତାଙ୍କର ପରିଚୟ କରାଇଦେଇ କହିଲେ, "ୟେ ରୋମିଲା ଆନନ୍ଦ। ମୋର ଅତି ଘନିଷ୍ଠ ବାନ୍ଧବୀ। ଇଜ୍'ଣ୍ଟ ସି ଗ୍ଲାମରସ୍?"

"ଓ ସତ୍ୟ, ୟୁ ଆର୍ ସୋ ନଟି।" ଆଖି ମିଟ୍‌ମିଟ୍ କରି ରୋମିଲା ସତ୍ୟଙ୍କ ହାତରେ ହାତ ଛନ୍ଦି ଦେଲେ।

ବଡ ଅସ୍ୱସ୍ତି ଲାଗିଲା କରବୀକୁ। ଓଡିଶାର ଗୋଟିଏ ଛୋଟ ସହରର ଝିଅ ସେ। ବାହା ହୋଇ ରହିଛି ଦକ୍ଷିଣ ଭାରତର ଆଉ ଗୋଟିଏ ଛୋଟ ସହରରେ। ଏଭଳି ଦୃଷ୍ଟିକଟୁ ହେବା ଭଳି ବ୍ୟବହାର ସହିତ ସେ ଅଭ୍ୟସ୍ତ ନୁହଁ। ଅନ୍ୟମାନେ ଏହାକୁ ଅତ୍ୟାଧୁନିକତା କହିପାରନ୍ତି, ପାଶ୍ଚାତ୍ୟ ସଭ୍ୟତାର ପ୍ରଭାବ କହିପାରନ୍ତି। କିନ୍ତୁ କରବୀର ମନେହୁଏ ଏହା ନିହାତି ଅସୌଜନ୍ୟମୂଳକ ବ୍ୟବହାର। ସବୁ ପାଇଁ ଗୋଟିଏ ସ୍ଥାନକାଳପାତ୍ର ତ ଅଛି!

ଅଦ୍ଭୁତ ଲୋକ ଏ ସତ୍ୟ ରାଠୋର। କିଏ ମନା କରୁଛି ତାଙ୍କୁ ନାରୀବନ୍ଧୁ ନେଇ ବୁଲିବାକୁ? କିଏ ତାଙ୍କୁ ବାନ୍ଧବୀମାନଙ୍କ ସହିତ ଘନିଷ୍ଠ ହେବାରେ ବାଧା ଦେଉଛି? ହେଲେ, ଏମିତି ସମସ୍ତଙ୍କ ସାମ୍ନାରେ?? ସତ୍ୟଙ୍କର ହାତ ରୋମିଲାଙ୍କ ଅଣ୍ଟା ଉପରୁ ଉଠିଯାଇ ବାରମ୍ବାର ତାଙ୍କର ଖୋଲା ପିଠିକୁ ଆଉଁସି ଦେଉଛି। ଦେହ ସିରସିରେଇ ଉଠିଲା କରବୀର।

ଅସହ୍ୟ ଏକଦମ୍! କମ୍ପାନୀର ଅଫିସରମାନଙ୍କ କଥା ଛାଡ, କ୍ଲବରେ ତ

ୱେଟର୍ ଓ ଅନ୍ୟାନ୍ୟ ଲୋକମାନେ ବୁଲୁଛନ୍ତି। କ'ଣ ଭାବୁଥିବେ ସେମାନେ? କି ସମ୍ମାନ ସେମାନଙ୍କର ରହିଯାଇଥିବ ଜେନେରାଲ୍ ମ୍ୟାନେଜରଙ୍କ ପାଇଁ?

ହଁ ମ, ତା'ର କ'ଣ ଯାଉଛି? ଅନ୍ୟ କେହି ଯଦି ନିଜର ମାନସମ୍ମାନକୁ ଜାଣିଶୁଣି ଗୋଡରେ ଦଳିଦେବ, ତେବେ ତାକୁ କ'ଣ କିଏ ଅଟକେଇ ପାରିବ?

ସେଦିନ ସନ୍ଧ୍ୟାପରେ ଘରକୁ ଫେରି ନିଜର ଓଜନିଆ କାନଫୁଲକୁ ଖୋଲି ରଖୁ ରଖୁ କରବୀ ଅଭୟକୁ କହିଲା, ‘‘ଆଖି ପବିତ୍ର ହୋଇଗଲା ଆଜି! ବୁଢା ବୟସରେ ଜଣେ ଏତେ ନିର୍ଲଜ ହୋଇପାରେ? ଏବେଠୁଁ ସାବଧାନ କରେଇ ଦେଉଛି, ଏଇ ରାଠୋର୍‌ର ‘ଭଲ’ ଗୁଣଗୁଡାକ ଯେମିତି ନ ଶିଖ!’’

ଅଭୟକୁ ମଜା ଲାଗିଲା, ‘‘କାହିଁକି କ୍ଷତି କ'ଣ? ବୁଢା ତ ବେଶ୍ ଜମେଇ କରି ଅଛି।’’

‘‘ତା'ର ସିନା ସ୍ତ୍ରୀ ନାହିଁ ବୋଲି ଏତେ କଥା। ମନେରଖ, ତୁମର ରହିଛି ଗୋଟିଏ ତିନିମାସର ପୁରୁଣା ସ୍ତ୍ରୀ।’’

‘‘ସ୍ତ୍ରୀ ନ ରଖିବାକୁ କେତେ ଡେରି? ଡିଭୋର୍ସ ନାଁ ଶୁଣିନ?’’ ତକିଆ ଉପରେ ମୁଣ୍ଡ ଦେଇ ଗଡି ପଡୁ ପଡୁ ଅଭୟ କହିଲା।

‘‘ଡିଭୋର୍ସ! ଦେଖିବି କେମିତି ଏତେ ସହଜରେ ଛାଡ ପାଉଛ! ବେଶୀ ଉଛୁଳିଲେ ମରିଯିବି ଜାଣିଥା। ଆଉ ତା'ପରେ ଭୂତ ହୋଇ ତୁମର ଓ ତୁମ ଗାର୍ଲଫ୍ରେଣ୍ଡ ମୁଣ୍ଡରେ ବସିବି।’’

‘‘ଆରେ, ଆରେ,’’ ଆଖି ମିଟ୍ ମିଟ୍ କରି ଅଭୟ କହିଲା, ‘‘ବିଚରା ମୋ ଗାର୍ଲଫ୍ରେଣ୍ଡ କଲା କ'ଣ? ତାକୁ କାହିଁକି ହଇରାଣ କରିବ?’’

କରବୀ ଆଉ କଥା ନ କହି ହେଆର୍ ବ୍ରସ୍ ଧରି ଅଭୟକୁ ଆକ୍ରମଣ କଲା ଏବଂ ତା' ଛାତିରେ ମୁହଁ ଗୁଞ୍ଜିଦେଇ ଫିକ୍ କରି ହସିଦେଲା।

ସତ୍ୟ ରାଠୋର୍ ରିଜିଓନାଲ ଅଫିସ୍‌ରେ ଦୁଇଦିନ ରହିବା ପାଇଁ ଆସିଥିଲେ। କିନ୍ତୁ ରହିଗଲେ ସାତଦିନ। ଦିଲ୍ଲୀର ହୋ ହଲ୍ଲା ପରେ ତାଙ୍କୁ ଭାରି ଭଲ ଲାଗିଯାଇଥିଲା ଛୋଟ ସହରର ଶାନ୍ତ ବାତାବରଣ। ରହିବାରେ ବା ଅସୁବିଧା କ'ଣ? କମ୍ପାନୀର ଗେଷ୍ଟ ହାଉସ୍ ଅଛି। ସେଠି ରାନ୍ଧିବାକୁ, ଖବର ବୁଝିବାକୁ ଲୋକ ମଧ୍ୟ ରହିଛନ୍ତି।

ହଠାତ୍ ଦିନେ ଅଫିସ୍‌ରୁ ଫେରି ଅଭୟ କହିଲା, ‘‘କାଲି ଆମ ଦୁଇ

ଜଣଙ୍କୁ ସନ୍ଧ୍ୟାବେଳେ ଚାହା ପିଇବା ପାଇଁ ସତ୍ୟ ରାଠୋର୍ ଗେଷ୍ଟହାଉସ୍‌କୁ ଡାକିଛନ୍ତି।''

କରବୀ ଆଶ୍ଚର୍ଯ୍ୟ ହେଲା। ସେଦିନର ସନ୍ଧ୍ୟାରେ ଏତେ ଅଳ୍ପ ସମୟ ପାଇଁ ଦେଖା। ସେମିତି କିଛି ମନ ମିଳିଯିବା ଭଳି କଥାବାର୍ତ୍ତା ମଧ୍ୟ ହୋଇନାହିଁ, ତେବେ ବିନା କାରଣରେ ଜଣେ ଜୁନିଅର୍ ଅଫିସରକୁ ପତ୍ନୀ ସହ ନିମନ୍ତ୍ରଣ କାହିଁକି ?

ମନ କଥା ପଢ଼ି ପାରିବା ଭଳି ଅଭୟ ଉତ୍ତର ଦେଲା, ''କ'ଣ ଏତେ ଭାବି ହେଉଛ ? ନିମନ୍ତ୍ରଣ ମତେ ନୁହଁ, ବିଶେଷ କରି ତୁମକୁ। ତୁମେ ବୁଢ଼ାକୁ ଭାରି ଭଲ ଲାଗିଯାଇଛ। ତା' ଭାଷାରେ ଏଭଳି 'ସିରିୟସ୍ ଓ ଇଣ୍ଟେଲିଜେଣ୍ଟ ୟଙ୍ଗ ଲେଡି' କୁଆଡେ ପ୍ରାୟ ଦେଖିବାକୁ ମିଳନ୍ତି ନାହିଁ। ତୁମର ବୁଦ୍ଧିମତ୍ତା ଦେଖି ସେ ଅଭିଭୂତ। ସେଥିପାଇଁ ତୁମ ସାଙ୍ଗରେ କିଛି 'ଇଣ୍ଟେଲେକ୍‌ଚୁଆଲ୍ ଡିସ୍‌କସନ୍' କରିବା ପାଇଁ ଏ ନିମନ୍ତ୍ରଣ। ଆଉ ତୁମେ ଓଡିଆଣୀ ତ ମୋତେ ଛାଡି ଏକା ଏକା ଯିବ ନାହିଁ, ସେଥିପାଇଁ ଏ ଅଧମକୁ ମଧ୍ୟ ଡାକିଛନ୍ତି।''

କରବୀର ମୁହଁ ଲାଲ୍ ହୋଇଗଲା। ଗମ୍ଭୀର ଭାବରେ ସେ କହିଲା, ''ତୁମେ ତାଙ୍କୁ ମନା କରିଦିଅ। ମୁଁ ଯାଇ ପାରିବି ନାହିଁ। ଛି- ମତେ କ'ଣ ସେ ରୋମିଲା ଆଦି ଗୋତ୍ରର ବୋଲି ଭାବି ନେଇଛନ୍ତି ନା କ'ଣ ?''

ଅଭୟ ବୁଝିନେଲା ଯେ କରବୀକୁ ଖରାପ ଲାଗିଛି। ବୋଧହୁଏ ଏମିତି ଫେଣେଇ ନାଟକୀୟ ଭାବରେ କଥା କହିବାଟା ତା'ର ଉଚିତ ହୋଇନାହିଁ।

''କରବୀ, ମୁଁ ଥଟ୍ଟାରେ ଏମିତି କହିଲି, ତୁମେ ସିରିୟସ୍‌ଲି ନେଇ ଗଲ ? ମିଷ୍ଟର ରାଠୋର୍ ଆଦୌ ଖରାପ କରି କିଛି କହିନାହାନ୍ତି। ମୁଁ ଟିକିଏ ଚିଡେଇ ଦେଲି ତୁମକୁ। ସେଦିନ ପାର୍ଟିରେ ତାଙ୍କୁ ଦେଖି ତୁମର ଗୋଟିଏ ଭୁଲ ଧାରଣା ହୋଇଯାଇଛି। ହେଲେ, ସେ ମଣିଷ ଖରାପ ନୁହନ୍ତି। ମୁଁ ତ ତାଙ୍କୁ ଏତେଦିନ ଧରି ଦେଖୁଛି।''

କରବୀର ରାଗ ତଥାପି କମି ନ ଥିଲା। ''ନିଜର ଚେହେରା ଏତେ ବେଶୀ ଆକର୍ଷଣୀୟ ବୋଲି ତୁମ ମିଷ୍ଟର ରାଠୋର୍‌ଙ୍କର ବଡ ଅହଙ୍କାର। ସେ କ'ଣ ଭାବିଛନ୍ତି ଯେ ତାଙ୍କ ଚେହେରା ଓ ପଇସା ଦେଖି ଜଗତର ସବୁ ଝିଅ ତାଙ୍କ ପାଇଁ ପାଗଳୀ ହୋଇଯିବେ ? ତାଙ୍କ ପଛେ ପଛେ ଦୌଡିବେ ?''

''ତୁମେ ସେମିତି କାହିଁକି ଭାବୁଛ ? ଆମ ଅଫିସ୍‌ରେ ବି ତ ସ୍ତ୍ରୀଲୋକମାନେ କାମ କରନ୍ତି । ସେମାନଙ୍କୁ ଖରାପ ଲାଗିଲା ଭଳି କଥା କେବେହେଲେ କହିନାହାନ୍ତି ରାଠୋର୍ । ସେ ତାଙ୍କ ବ୍ୟକ୍ତିଗତ ଜୀବନରେ ଯେମିତି ହୁଅନ୍ତୁ, ଯାହା କରନ୍ତୁ ପଛକେ, ଅନ୍ୟମାନଙ୍କ ସାମ୍ନାରେ ନିହାତି ଭଦ୍ର ।...ମୁଁ ତୁମକୁ ଚିଡେଇ ଦେଲି ନା ।''

ଅଭୟକୁ ବୁଲି ଚାହିଁଲା କରବୀ, ''ଆଉ କେବେହେଲେ ଏମିତି ସବୁ କଥା କହି ଥଟ୍ଟା କରିବ ନାହିଁ । ମୋତେ ଜମା ଭଲ ଲାଗେ ନାହିଁ ।''

କାନ ଧରିଲା ଅଭୟ, ''ଆଦୌ ନୁହଁ ।''

ପରଦିନ ସନ୍ଧ୍ୟାରେ କିଛି ଫୁଲ ଧରି କରବୀ ଗେଷ୍ଟ ହାଉସ୍ ଫାଟକ ପାଖରେ ସ୍କୁଟର୍‌ରୁ ଓହ୍ଲେଇଲା । ଅଭୟ ସ୍କୁଟର୍ ରଖୁ ରଖୁ ଭିତରୁ ଚାଲି ଆସିଲେ ନିଜେ ସତ୍ୟ ରାଠୋର୍ ।

''ଗୁଡ୍ ଇଭିନିଙ୍ଗ୍ ମିସେସ୍ ଶତପଥୀ । ୟୁ ଲୁକ୍ ୱଣ୍ଡରଫୁଲ୍ । ଆସ ଅଭୟ, ଭିତରକୁ ଆସ ।''

ଡ୍ରଇଂରୁମ୍‌ରେ ପାଦ ଦେଇ କରବୀ ଯେମିତି କାହାକୁ ଖୋଜୁଥିଲା, ''ରୋମିଲା କାହାନ୍ତି ?''

''ଓ ରୋମିଲା, ସେ ତ କେବେଠୁ ଦିଲ୍ଲୀ ଫେରିଗଲାଣି । ସେ କ'ଣ ଏଇ ଛୋଟ ସହରରେ ବେଶୀଦିନ ରହି ପାରିବ ? ତା'ର ନିଜର ବ୍ୟବସାୟ ଅଛି, ବନ୍ଧୁବାନ୍ଧବ ଅଛନ୍ତି । ସମସ୍ତଙ୍କୁ କ'ଣ ଛାଡିଛୁଡି ଦେଇ ପାରିବ ସେ ? ଯଦି ତୁମର କୌଣସି ଆପତ୍ତି ନ ଥାଏ ଫୁଲତକ ତୁମେ ମତେ ଦେଇପାର ।''

କରବୀ ଗୋଲାପ ଗୁଚ୍ଛକୁ ସତ୍ୟ ରାଠୋର୍‌ଙ୍କ ହାତକୁ ବଢେଇ ଦେଲା ।

''କି ସୁନ୍ଦର ଗୋଲାପ ! ଜେନିଫର୍ ଧଳା ଗୋଲାପକୁ ଭାରି ଭଲ ପାଉଥିଲା ।''

ଅଜାଣତରେ କଥାଟା ବାହାରି ପଡିଲା ସତ୍ୟଙ୍କର । ପରମୁହୂର୍ତ୍ତରେ ହିଁ ସେ ସଚେତନ ହୋଇଗଲେ । ଚଟ୍ କରି କଥା ବୁଲେଇ ଦେଇ ସେ ପଚାରିଲେ, ''କ'ଣ ପିଇବ ତୁମେମାନେ ? ଚାହା ନା କଫି ?''

ଗେଷ୍ଟ ହାଉସ୍‌ର ଶିବରାଜନ୍ କଫି ନେଇ ଆସିଲା । କଫି ସାଙ୍ଗରେ ଚକୋଲେଟ୍ କେକ୍, ସିଙ୍ଗଡା ।

କେକ୍‌ରୁ ଟିକିଏ କାମୁଡିନେଇ ସତ୍ୟ କହିଲେ, ''ମିସେସ୍ ଶତପଥୀ, ଅଭୟ

କହୁଥିଲା ତୁମେ ଗପ ଲେଖ। କ'ଣ ନେଇ ଲେଖ ତୁମେ ?''

ନିଜ ବିଷୟରେ କହିବାକୁ କରବୀର ବଡ କୁଣ୍ଠା। ଅଳ୍ପ ଅଳ୍ପ କହୁ କହୁ କେତେବେଳେ ଯେ ସେ ସାବଲୀଳ ହୋଇଗଲା, ସେ ନିଜେ ବି ଜାଣିପାରିଲା ନାହିଁ। ସେ 'ମିସେସ୍ ଶତପଥୀ'ରୁ ହୋଇଗଲା 'କରବୀ'। ତା'ପରେ ପୁରୀର ସମୁଦ୍ରକୂଳ, କେରଳର ନଡିଆଗଛଠୁଁ ନେଇ ସତ୍ୟଙ୍କର କବିତା ପ୍ରତି ଦୁର୍ବଳତା-ସବୁ ବିଷୟରେ କଥା ପଡିଲା।

ପାର୍ଟିର ସତ୍ୟ ରାଠୋର୍ ଓ ଏଇ ଭଦ୍ରଲୋକ କ'ଣ ଏକା ମଣିଷ ? ସେଦିନ ତାଙ୍କ ଚେହେରାରେ ଯେଉଁ 'ଡ୍ୟାମ୍ କେଆର୍'ର ଚିହ୍ନ ସ୍ପଷ୍ଟ ଭାବରେ ଫୁଟି ଉଠିଥିଲା, କାହିଁ ସେଇଟା ? ଏଭଳି ବୁଦ୍ଧିଦୀପ୍ତ ଚରିତ୍ରଟିଏ ଲୁଚି ରହିଥିଲା ପର୍ଦ୍ଦାର ଅନ୍ତରାଳରେ !

ସତ୍ୟ ରାଠୋର୍‌ଙ୍କ ସାଙ୍ଗରେ କଥାବାର୍ତ୍ତା କରିବାକୁ ଉଭୟ ଅଭୟ ଓ କରବୀଙ୍କୁ ଭାରି ଭଲ ଲାଗୁଥିଲା। ସନ୍ଧ୍ୟା ଧୀରେ ଧୀରେ କଟିଯାଇ ରାତି ଅଧିକ ହେବାକୁ ଲାଗିଲା। କରବୀ ଉଠିଲା। ଏଥର ଫେରିବାକୁ ହେବ। ଏମିତି ଚାହା ପିଇବାକୁ ଆସି କିଏ ଜମେଇ ବସିଯାଏ ନା କ'ଣ ରାତି ଆଠଟା ପର୍ଯ୍ୟନ୍ତ !

ସତ୍ୟ କିନ୍ତୁ ନଛୋଡବନ୍ଧା। ''ନା, ତୁମେମାନେ ଏବେ ଯାଇପାରିବ ନାହିଁ। ଆଜି ମୋ ସାଙ୍ଗରେ ଏକାଠି ଖାଇ ଘରକୁ ଫେରିବ।''

କରବୀ ମନା କରିପାରିଲା ନାହିଁ। ତା'ର କୋଉ ଘରେ ପିଲା କାନ୍ଦୁଛି ଯେ !

ପୁଣି କେତେଆଡର କେତେ କଥା ଆସି ପଡିଲା। ହଠାତ୍ ସତ୍ୟ ତାଙ୍କର ପୁରୁଣା ଘର କଥା, ପିଲାଦିନ କଟାଇଥିବା ଲାହୋର୍ ସହର କଥା ଏବଂ କେବେଠାରୁ ସେପୁରକୁ ଯାଇ ସାରିଥିବା ଜମିଦାର ବାପା ଓ ମା'ଙ୍କ କଥା କହୁ କହୁ ଉଠିଗଲେ। ''ରୁହ, ତୁମକୁ ଗୋଟିଏ ଜିନିଷ ଦେଖାଇବି।''

ଭିତର ଘରୁ ଫେରିବାବେଳେ ତାଙ୍କ ହାତରେ ଥିଲା ଛୋଟ ଆଲବମ୍‌ଟିଏ। କରବୀ ହାତକୁ ସେଇଟା ବଢେଇ ଦେଇ କହିଲେ, ''ମୋ ପିଲାମାନଙ୍କର ଫଟୋ।''

ଆଲବମ୍‌ର ପ୍ରଥମ ପୃଷ୍ଠାରେ ଥିଲା ଗୋଟିଏ ଝିଅର ରଙ୍ଗୀନ ଫଟୋ।

ନୀଳ ଆଖି, ଲମ୍ବା ନାକ। କୁଞ୍ଚକୁଞ୍ଚିଆ ମାଟିଆ ବାଳ ଅପୂର୍ବ ସୁନ୍ଦର ମୁହଁଟିକୁ ଘେରି ରହିଛି।

''ଏ ହେଉଛି ସୋନାଲ୍- ମୋର ଗୋଟିଏ ବୋଲି ଝିଅ, ତୁମ ବୟସର ହେବ, କରବୀ। ସେଦିନ ତୁମକୁ ପାର୍ଟିରେ ଦେଖି ମୋର ହଠାତ୍ ସୋନାଲ୍ କଥା ମନେ ପଡିଗଲା। ସୋନାଲ୍ ଯଦି ଭାରତରେ ମୋ ପାଖରେ ବଢ଼ି ଥାଆନ୍ତା, ତାହେଲେ ବୋଧହୁଏ ତୁମ ଭଳି ହୋଇଥାଆନ୍ତା। ଅନ୍ତତଃ ମୁଁ ତ ସେୟା ଚାହିଁ ଥାଆନ୍ତି।''

କରବୀର ଆଖିକୁ ପାଣି ଚାଲି ଆସିଲା। ସତ୍ୟଙ୍କ ସହିତ ଯଦିଓ ସେ ଏ ପର୍ଯ୍ୟନ୍ତ ସାବଲୀଳ କଥାବାର୍ତ୍ତା କରି ଆସୁଥିଲା, ତଥାପି ମନତଳେ ଥିଲା ଭୟଟିଏ। ତାକୁ ଅପମାନ କଲା ଭଳି କିଛି କହି ପକେଇବେ ନାହିଁ ତ ସେ? ଇସ୍- ଏ ଲୋକଟି ସଂପର୍କରେ ଏମିତି ଆଜେବାଜେ ଚିନ୍ତା ସେ କେମିତି କରି ନେଇଥିଲା? ସେ ଯେ କରବୀ ଭିତରେ ଖୋଜୁଛନ୍ତି ତାଙ୍କର ଝିଅକୁ!

''ସୋନାଲ୍ ଭାରତରେ ରହନ୍ତି ନାହିଁ?''

''ନା- ସୋନାଲ୍‌ର ମା' ଇଂଲିଶ୍। ବାହାଘରର ଦୁଇବର୍ଷ ଭିତରେ ତା' ସାଙ୍ଗରେ ମୋର ଡିଭୋର୍ସ ହୋଇଗଲା। ତା'ପରେ ସେ ଝିଅକୁ ନେଇ ଚାଲିଗଲା ଲଣ୍ଡନ। ସେଠି ସେ ଆଉଥରେ ବାହା ହୋଇଛି। ସୋନାଲ୍ ଏତେଦିନ ମା' ପାଖରେ ରହିବା ପରେ ଏବେ ନିଜ ଆପାର୍ଟମେଣ୍ଟକୁ ଚାଲିଯାଇଛି। ମଝିରେ ମଝିରେ ଚିଠି, ଫଟୋ ପଠାଏ। କିନ୍ତୁ କାହିଁ କେତେ ବର୍ଷ ହେଲାଣି ଦେଖା ହୋଇନାହିଁ ତା' ସାଙ୍ଗରେ।''

''ଏ ଦୁଇଜଣ କିଏ?'' ଝୁଙ୍କିପଡି ଆଲ୍‌ବମ୍ ଦେଖୁ ଦେଖୁ ପଚାରିଦେଲା ଅଭୟ। କାନ୍ଧରେ ହାତ ପକାପକି ହୋଇ ଦୁଇଜଣ ଅଠର ଉଣେଇଶ ବର୍ଷର ପୁଅ କ୍ୟାମେରା ଆଡକୁ ଚାହିଁ ହସୁଥିଲେ।

''ସନି ଓ ଭିକି। ମୋର ଦୁଇ ଯାଆଁଳା ପୁଅ। ଏବେ ଦିଲ୍ଲୀ ବିଶ୍ୱବିଦ୍ୟାଳୟରେ ପଢୁଛନ୍ତି।'' ସତ୍ୟ ଗତାନୁଗତିକ ସ୍ୱରରେ କହିଲେ।

''ଆପଣଙ୍କ ପାଖରେ ଥାଆନ୍ତି?'' ଅଭୟ ସ୍ୱତଃସ୍ଫୂର୍ତ୍ତ ଭାବରେ ପଚାରିଦେଲା। ସତ୍ୟ ନିଜେ ଇ ତ ଦିଲ୍ଲୀରେ।

କିଛି ସମୟ ଚୁପ ହୋଇଗଲେ ସତ୍ୟ। ତା'ପରେ ଖୁବ୍ ଧୀରେ ଧୀରେ

କହିଲେ, ''ନା- ସେମାନେ ତାଙ୍କର ମା'ଙ୍କ ସାଙ୍ଗରେ ରହନ୍ତି। ମଝିରେ ମଝିରେ ମୋ ସାଙ୍ଗରେ ଦେଖାହୁଏ। ତେବେ ଶୋଭା ବେଶୀ ପସନ୍ଦ କରେ ନାହିଁ। ଆଠବର୍ଷ ତଳେ ସେ ମୋଠାରୁ ଛାଡପତ୍ର ନେଇଯାଇଛି।''

ଅଭୟ କାହାଠୁଁ ଜାଣ ଏ ବିଷୟରେ ଶୁଣିଥିଲା। କିଏ ଜଣେ ଅଫିସ୍‌ରେ ଥଟ୍ଟା କରି କହିଥିଲା, ''ରାଠୋର୍ ବୁଡ଼ା ମୋଗଲ ପରିବାରର ରାଜପୁତ୍ର ହୋଇ ଜନ୍ମ ହେବା ଉଚିତ ଥିଲା। କେତେ ସୁନ୍ଦର ନିଜର ଗୋଟିଏ ହ୍ୟାରେମ୍ ଖୋଲି ଆନନ୍ଦରେ ରହିଥାଆନ୍ତା। ଏମିତି ବାରମ୍ବାର ଛାଡପତ୍ର ଝାମେଲା ଭିତରେ ତାକୁ ପଶିବାକୁ ହୋଇ ନ ଥାଆନ୍ତା।''

ଅଭୟ ଏ ସବୁ ଜାଣେ, ତେଣୁ ଆଶ୍ଚର୍ଯ୍ୟ ହେବ କାହିଁକି? କିନ୍ତୁ କରବୀ? ଯିଏ ନିଜ ମନ ଭିତରେ ଭୁଲ୍ ଠିକ୍‌ର ଗୋଟିଏ ଲକ୍ଷ୍ମଣରେଖା ଟାଣି ରଖିଛି, ତା'ର ଏକଥା ଶୁଣି କି ପ୍ରତିକ୍ରିୟା? କଣେଇ ସ୍ତ୍ରୀକୁ ଥରେ ଦେଖିନେଲା ସେ।

ଆଶ୍ଚର୍ଯ୍ୟ, କରବୀ ମୁହଁରେ ବିସ୍ମୟର ଚିହ୍ନ ମାତ୍ର ନାହିଁ। ଏଇଟା ଯେମିତି ନିହାତି ସାଧାରଣ କଥା। ଆଲ୍‌ବମ୍‌ର ବାକୀ ଫଟୋଗୁଡିକ ଘୁରେଇ ଘୁରେଇ କେବଳ ଦେଖୁଥିଲା ସେ।

''ଆପଣଙ୍କର ଏଇ ତିନି ପୁଅ ଝିଅ, ମିଷ୍ଟର ରାଠୋର୍?'' ଆଲ୍‌ବମ୍ ଉପରୁ ମୁହଁ ଉଠାଇ କରବୀ ପଚାରିଲା।

ସତ୍ୟ ଚୁପ୍ ହୋଇଗଲେ କିଛି ସମୟ ପାଇଁ। ବୋଧହୁଏ କହିବେ କି ନ କହିବେ, ସେଇ ଦ୍ୱନ୍ଦ୍ୱରେ ପଡିଯାଇଥିଲେ ସେ। ପକେଟରୁ ପର୍ସ କାଢି ସେ ହାତରେ ଧରିଲେ। ତା' ଭିତରେ ଥିଲା ସାମାନ୍ୟ ମୋଡିମାଡି ହୋଇଯାଇଥିବା ଦୁଇଟି ଫଟୋ। ନୀରବ ଭାବରେ ଫଟୋ ଦୁଇଟିକୁ କରବୀ ହାତକୁ ବଢେଇଦେଲେ ସେ। କଥା କହିବାର ଶକ୍ତି ଯେମିତି ଲୋପ ପାଇଯାଇଥିଲା ତାଙ୍କର।

ପ୍ରଥମ ଫଟୋଟି ଜଣେ ଅତି ଆକର୍ଷଣୀୟା ମହିଳାଙ୍କର। ତିନି ଚାରି ମାସର ପୁଅକୁ କାଖେଇ ସେ ହସୁଥିଲେ। ପିଲାଟିର ମୁହଁରେ ସତ୍ୟଙ୍କ ମୁହଁର ପ୍ରତିଛବି।

ଓହୋ, ଅଭୟ ମନେ ମନେ ହସିଲା। ଏଇ ପୁଅଟି ତାହେଲେ ସତ୍ୟଙ୍କର ସବୁଠାରୁ ପ୍ରିୟ। ନହେଲେ ତା' ଫଟୋଟିକୁ ଏମିତି ପର୍ସରେ ଧରି ଧରି ବୁଲୁଥାଆନ୍ତେ? ଆଉ ତା' ମା'? କେତେ ନମ୍ବର ସ୍ତ୍ରୀ ସତ୍ୟଙ୍କର?

ସତ୍ୟ ଯେମିତି ଅଭୟର ମନ ପଢି ନେଇଥିଲେ। ରହି ରହି କହିଲେ,

"ମୋର ପ୍ରଥମ ସ୍ତ୍ରୀ ଜେନିଫର୍। ପୁଅ ଆଦିତ୍ୟ।" କଥା କହିବାକୁ ତାଙ୍କୁ କଷ୍ଟ ହେଉଥିଲା। ଆଖି ଉପରେ କିଏ ଟାଣିଦେଇଥିଲା ଯନ୍ତ୍ରଣାର ପର୍ଦ୍ଦାଟିଏ।

କରବୀ ସେଇ ଆଖି ଦୁଇଟିକୁ ଥରେ ଦେଖି ନେଇ ଆଉ କିଛି ପଚାରି ପାରିଲା ନାହିଁ। କିଏ ଜାଣେ, କେଉଁ ଦୁଃଖର ପାହାଡକୁ ମନ ଭିତରେ ସାଇତି ରଖିଛନ୍ତି ସତ୍ୟ ରାଠୋର୍! କି ପରିସ୍ଥିତିରେ, କିଭଳି ଘଟଣା ଚକ୍ରରେ ପ୍ରଥମ ସ୍ତ୍ରୀ ତାଙ୍କ ପାଖରୁ ଚାଲିଯାଇଛନ୍ତି, ସେକଥା କ'ଣ କରବୀ ପଚାରିପାରିବ ?

ପ୍ରଥମ ଫଟୋତଳେ ଥିବା ଅନ୍ୟ ଫଟୋଟିକୁ ସେ ସାମ୍ନାକୁ ଆଣିଲା। କୌଣସି ଗୋଟିଏ ବିଦେଶୀ ସହରରେ ସାଇକେଲ୍ ଧରି ଠିଆ ହୋଇଛି ଯୁବକଟିଏ।

ସତ୍ୟଙ୍କ ଓଠରେ ହସ ଖେଳିଗଲା। କ୍ଷଣିକ ପୂର୍ବର ଯନ୍ତ୍ରଣା ଦୂରେଇଗଲା ଆଖି ଉପରୁ। "ଏଇ ସେଇ ଆଦିତ୍ୟ। କେତେ ବଡ ହୋଇ ଗଲାଣି! ପି.ଏଚ୍.ଡି. କରିବାକୁ ଯାଇଛି ପିଟ୍ସବର୍ଗ। ଏବେ ଏଇ ଫଟୋ ପଠାଇ ଚିଠି ଲେଖିଛି ଯେ ପ୍ରାୟ ସରିଆସିଲାଣି ପି.ଏଚ୍.ଡି। ସେଠି ତାକୁ ଚାକିରି ମିଳୁଛି। କିନ୍ତୁ ତା'ର କୌଣସି ଆଗ୍ରହ ନାହିଁ। ତା'ର ଇଚ୍ଛା ଫେରିଆସି ତା' ବାବା ପାଖରେ ରହିବ। ପିଲାଦିନଟା ତା'ର କଟିଛି କେବଳ ହଷ୍ଟେଲ୍‌ରେ। ମୁଁ ପାଖରେ ରଖି ପାରିନାହିଁ। ଏବେ ସେ ଆଦୌ ମୋଠାରୁ ଦୂରେଇ ରହିବାକୁ ପ୍ରସ୍ତୁତ ନୁହଁ।"

ଅଭୟ ସତ୍ୟଙ୍କ ମୁହଁକୁ ଚାହିଁଲା। ନିଜ ପିଲାକୁ ପାଖରେ ପାଇବା ପାଇଁ ଏ ବାପଟିର କେତେ ଆଶା! ସତରେ କ'ଣ ସେ ଆଶା ପୂରଣ ହେବ? ନା ଅନ୍ୟ ତିନିଜଣଙ୍କ ଭଳି ଏଇ ପିଲାଟି ମଧ୍ୟ ସତ୍ୟଙ୍କଠାରୁ ଦୂରେଇଯିବ? ଦୂରରେ ରହିବ? ଯଦି ଆଦିତ୍ୟର ମନ ପରିବର୍ତ୍ତନ ହୋଇଯାଏ? ଏତେଦିନ ହଷ୍ଟେଲ୍‌ରେ ରହିବା ପରେ ଯଦି ସେ ମା' ପାଖରେ ରହିବାକୁ ପସନ୍ଦ କରେ?

ନା- ଅଭୟ ଏସବୁ କଥା ସତ୍ୟ ରାଠୋର୍‌ଙ୍କୁ କହି ପାରିଲା ନାହିଁ। ସେ ଥାଆନ୍ତୁ, ନିଜର ଆଶା ନେଇ। ଅଭୟ କାହିଁକି ତାଙ୍କ ଆଶା ଭାଙ୍ଗି ଦେବ? ଘରକୁ ଫେରିବାବେଳେ କରବୀ ନିଜ ଭାବନାରେ ମଜ୍ଜି ଯାଇଥିଲା। ତା'ର ସେଇ ନୀରବତା ଅଭୟ ଭାଙ୍ଗି ନ ଥିଲା। ତା'ର ବି କାହିଁକି କଥା କହିବାକୁ ଇଚ୍ଛା ହେଉ ନ ଥିଲା। ଅନ୍ତତଃ ସତ୍ୟଙ୍କ ବିଷୟରେ କୌଣସି ଆଲୋଚନା କରିବାର ଆଗ୍ରହ ନ ଥିଲା।

କି ଦୁଃଖୀ ମଣିଷଟିଏ! ସବୁ ଥାଇ ମଧ୍ୟ କିଛି ଉପଭୋଗ କରିପାରୁ

ନାହାନ୍ତି ସେ। ଏଇ ସୁନ୍ଦର ଓ ସଫଳ ମଣିଷଟି ଭିତରେ କ'ଣ ଅଭାବ ରହିଯାଇଛି ? କାହିଁକି କାହା ସାଙ୍ଗରେ ସଂସାର ପାତି ପାରୁନାହାନ୍ତି ସେ ?

ସତ୍ୟ ରାଠୋର୍ ଦିଲ୍ଲୀ ଫେରିଯିବାର ଅଳ୍ପ କେଇମାସ ଭିତରେ ନିଜେ ଅଭୟର ଦିଲ୍ଲୀ ବଦଳି ହୋଇଗଲା। ସଂପୂର୍ଣ୍ଣ ଭାବରେ ବିପରୀତ ଆବହାଓ୍ୱା। କାହିଁ କେରଳର ସେଇ ଶାନ୍ତ ଛୋଟ ସହର ଆଉ କାହିଁ ବସ୍ତୁବାଦୀ ରାଜଧାନୀ ଦିଲ୍ଲୀ ! କରବୀର ଦମ୍ ଯେମିତି ଅଟକିଯାଉଥିଲା କଂକ୍ରିଟ୍‌ର ଜଙ୍ଗଲ ଭିତରେ। କେବଳ ଅଭୟର ଚାକିରି ପାଇଁ ରହିବା କଥା ! କରବୀ କିଛି ନ କରି ବେଶୀଦିନ ଘରେ ରହିପାରିଲା ନାହିଁ। ଦିଲ୍ଲୀ ବିଶ୍ୱବିଦ୍ୟାଳୟରେ ଗୋଟିଏ କୋର୍ସ କରିବା ପାଇଁ ଭର୍ତ୍ତି ହୋଇଯାଇଥିଲା ସେ।

ଦିଲ୍ଲୀ ଆସିବା ପରେ ସତ୍ୟ ରାଠୋର୍‌ଙ୍କ ସହିତ ସେମାନଙ୍କର ପରିଚୟର ସୀମାରେଖା ଆଉ ଟିକିଏ ଅଧିକ ହୋଇଗଲା। ଅଭୟ ପ୍ରଥମେ ଏଇ ସିନିଅର୍ ଅଫିସର୍‌ଙ୍କଠାରୁ ଦୂରେଇ ରହିବା ପାଇଁ ଚାହିଁଥିଲା। କିଏ ଯଦି କହେ ଯେ ସେ ଜି.ଏମ୍‌ଙ୍କର ଚାମଚାଗିରି କରୁଛି ବା ପ୍ରମୋସନ୍ ପାଇଁ ତେଲ ଲଗାଉଛି, ତେବେ ? କିନ୍ତୁ ସତ୍ୟ ଆଦୌ ସେମାନଙ୍କୁ ଛାଡ଼ିବା ପାଇଁ ପ୍ରସ୍ତୁତ ନ ଥିଲେ। କ୍ରମଶଃ ଅଫିସ୍‌ର ସରହଦ ବ୍ୟତୀତ ସାମାଜିକ ଭାବରେ ସଂପର୍କଟିଏ ଗଢ଼ି ଉଠିଲା।

ସତ୍ୟଙ୍କର ଦୁଇ ପୁଅ ସନି ଓ ଭିକି ସହିତ ମଧ୍ୟ ପରିଚୟ ହୋଇଗଲା। ବେଳେବେଳେ ବାପାଙ୍କ ପାଖକୁ ଆସନ୍ତି ସେମାନେ। ହେଲେ ଅଭୟର ମନେ ହୁଏ ଯେ ସେମାନଙ୍କର ଆସିବାଟା କେବଳ ପାଇବା ଆଶାରେ। ବାପାଙ୍କ ପକେଟ୍‌ରୁ କିଛି ଆଦାୟ କରି ନେବାଟା ଉଦ୍ଦେଶ୍ୟ। ସେ ଉଦ୍ଦେଶ୍ୟ ଥରେ ପୂରଣ ହୋଇଗଲେ ଆଉ କିଏ ଧରାଛୁଆଁ ଦିଏ ?

ସେମାନଙ୍କ ସାଙ୍ଗରେ ବେଳେବେଳେ କରବୀର ବିଶ୍ୱବିଦ୍ୟାଳୟରେ ଦେଖା ହୋଇଯାଏ। କ୍ୟାଣ୍ଟିନ୍‌ରେ ନହେଲେ ବସ୍‌ଷ୍ଟପ୍‌ରେ। କରବୀ ଅଭ୍ୟାସବଶତଃ କହିଦିଏ "ହ୍ୟାଲୋ !" ସେମାନେ କୌଣସି ମତେ ପ୍ରତ୍ୟୁତ୍ତର ଦେଇ ସେ ସ୍ଥାନ ଛାଡ଼ି ଚାଲିଯାଆନ୍ତି। କେଜାଣି, ହୁଏତ ମନେ କରୁଥିବେ କରବୀ ତାଙ୍କ ବାପାଙ୍କ ଦଳର ମଣିଷ। ଅର୍ଥାତ୍ ବିଶ୍ୱାସଯୋଗ୍ୟ ନୁହଁ।

କରବୀ ସେମାନଙ୍କୁ ଦୋଷ ଦେଇ ପାରେ ନାହିଁ। ଯେତେବେଳେ ବାପାଙ୍କ

ପ୍ରତି ସେମାନଙ୍କର କୌଣସି ସମ୍ମାନ ନାହିଁ, ସେତେବେଳେ ତାଙ୍କର ବନ୍ଧୁ ବା ପରିଚିତଙ୍କୁ ସମ୍ମାନ ଦେଖାଇବାର ପ୍ରଶ୍ନ କାହିଁକି ଉଠୁଛି? ସତ୍ୟ ରାଠୋର୍ କ'ଣ ପିଲାଙ୍କର ସମ୍ମାନ ପାଇବା ଭଳି କାର୍ଯ୍ୟ କରନ୍ତି? ଏତେ ଭଲ ମଣିଷ, କିନ୍ତୁ ତାଙ୍କର ସେଇ ଗୋଟିଏ ଗୁଣ ତାଙ୍କୁ ପିଲାଙ୍କ ଆଖିରେ ନିଶ୍ଚୟ ଛୋଟ କରିଦିଏ।

ସତ୍ୟ ରାଠୋର୍ ଯେମିତି ମନେ କରନ୍ତି ଯେ ଏକନାରୀବ୍ରତ ପାଳନ କରିବା ଏକ ଗର୍ହିତ କାର୍ଯ୍ୟ। ବିଭିନ୍ନ ଉତ୍ସବରେ, ବିଭିନ୍ନ ପାର୍ଟିରେ, ଭିନ୍ନ ଭିନ୍ନ ମହିଳାଙ୍କ ସହିତ ତାଙ୍କୁ ଦେଖେ କରବୀ। ସମସ୍ତଙ୍କୁ ଚିହ୍ନାଇ ଦିଅନ୍ତି ବାନ୍ଧବୀ ବୋଲି। କିନ୍ତୁ ସେମାନଙ୍କ ସହିତ କେତେଦୂର ଯେ ଘନିଷ୍ଠତା ତାହା ତ ବୁଝେଇ କହିବା ଦରକାର ହୁଏ ନାହିଁ! ସତ୍ୟଙ୍କ ଆଚରଣରୁ, କଥାବାର୍ତ୍ତାରୁ, ଆଖିର ଇଙ୍ଗିତରୁ ଠିକ୍ ପଢ଼ିନେଇ ହୁଏ।

ଅଭୟ ଚିଡ଼ାଏ, ''ସମସ୍ତେ କ'ଣ ମୋଭଳି ଦୁର୍ଭାଗା? ଦେଖୁନ, ମତେ ତୁମେ ଏମିତି ଜାଲରେ ପକେଇ ଦେଇଛ ଯେ ମୁଁ ଟିକିଏ ହଲଚଲ୍ ହୋଇ ପାରୁନି। ଆଉ ଏ ବୁଢ଼ା ରାଠୋର୍‌ର କି ଭାଗ୍ୟ! ଏବେ ବି ନୂଆ ନୂଆ ପରୀ ଆସି ଗୁଡେଇ ହୋଇ ଯାଉଛନ୍ତି ତା' ଦେହରେ।''

କରବୀ ଚିଡ଼ିଯାଏ, ''ଭାଗ୍ୟ? ଦୁର୍ଭାଗ୍ୟ କୁହ। ସବୁ ପଇସାର ଖେଳ। କେବଳ ଦାମୀ ଉପହାର ଲୋଭରେ ଏ ବାନ୍ଧବୀ ଦଳ ଲେସି ହୋଇ ରହିଛନ୍ତି। ଆଉ ଏ ସତ୍ୟ ରାଠୋର୍ ବି କେମିତିକା ଲୋକ? ଏତେ ବଡ ବଡ ପିଲାଙ୍କ ସାମ୍ନାରେ ନିର୍ଲଜ୍ଜଙ୍କ ଭଳି ବ୍ୟବହାର କରନ୍ତି କେମିତି? ସେଥିପାଇଁ ପିଲାଗୁଡ଼ାକ ପାଖ ପୁଶୁନାହାନ୍ତି।''

ସେଦିନ ଅଭୟ ଗମ୍ଭୀର ହୋଇଯାଇ କହିଥିଲା, ''ଆଚ୍ଛା କହିଲ କରବୀ, ତାଙ୍କର ଏମିତି ବ୍ୟବହାର ଯୋଗୁଁ ପିଲାମାନେ ତାଙ୍କ ପାଖରେ ରହୁନାହାନ୍ତି ନା ପିଲାଏ ତାଙ୍କୁ ନ ପଚାରିବାରୁ ସେ ଏମିତି ନିଜ ଜୀବନ ସହିତ ଖେଳି ଚାଲିଛନ୍ତି?''

ଏ ପ୍ରଶ୍ନର ଉତ୍ତର ନ ଥିଲା।

କିଛି ମାସ କଟିଗଲା। ହଠାତ୍ ଦିନେ ଅଭୟ ଅଫିସ୍‌ରୁ ଆସି କହିଲା, ''ସତ୍ୟ ରାଠୋର୍ ଲମ୍ବା ଛୁଟୀ ନେଇ ଚାଲିଯାଇଛନ୍ତି। କେହି ଜାଣନ୍ତି ନାହିଁ କୁଆଡେ।''

ଏମିତି କାହାକୁ କିଛି ନ କହି ଚାଲିଯିବାର ଉଦ୍ଦେଶ୍ୟ କ'ଣ ? ମନ ମିଚ୍ଛାଢ଼ୀ ଲୋକ, କିଏ ଜାଣେ ହୁଏତ କୌଣସି ବିଦେଶିନୀ ସହିତ ବିଦେଶ ହିଁ ପଳେଇଛନ୍ତି ।

କରବୀର ବେଳେବେଳେ ସତ୍ୟଙ୍କ କଥା ମନେପଡେ । ଅଭୟର ସିନିଅର୍ ଅଫିସର୍ ହେଲେ ମଧ୍ୟ କିଛିଟା ସଂପର୍କ ତ ଗଢି ଉଠିଥିଲା ! କେମିତି କେଉଁଠି ଅଛନ୍ତି କେଜାଣି ? ସେଥିପାଇଁ ଯେଉଁଦିନ ଲାଇବ୍ରେରୀ ସାମ୍ନାରେ ସନିକୁ ସେ ସାଙ୍ଗମାନଙ୍କ ସହିତ ଦେଖିଲା, ନିଜେ କରବୀ ବଡ ବଡ ପାଦ ପକାଇ ତା' ପାଖରେ ପହଞ୍ଚିଗଲା ।

''ହ୍ୟାଲୋ ସନି, କେମିତି ଅଛ ?''

''ଭଲ ।''

''ମିଷ୍ଟର୍ ରାଠୋର୍‌ଙ୍କ ଖବର କ'ଣ ? କେଉଁଠି ଅଛନ୍ତି ?''

''ପାପା ?'' ବୀତସ୍ପୃହ ଭାବରେ ସେ ଉତ୍ତର ଦେଲା, ''ପାପା ଆଜିକାଲି ମହୀଶୂର୍‌ରେ ।''

''ମହୀଶୂର୍‌ରେ ? କ'ଣ କରୁଛନ୍ତି ?''

ଏଥର କରବୀ ମୁହଁକୁ ସିଧାସଳଖ ଚାହିଁଲା ସନି, ''କାହିଁ ପାପାଙ୍କ ଗୁଣଗ୍ରାମ ଅଜଣା କି ? କୋଉ ଗାର୍ଲଫ୍ରେଣ୍ଡ ଧରି ପଡି ରହିଥିବେ । ନହେଲେ କ'ଣ କିଏ ଦିଲ୍ଲୀ ଛାଡି ଏମିତିଆ ଜାଗାକୁ ଯାଏ ?...ହୁଏତ ଆଉଥରେ ବାହାସାହା ହୋଇସାରିବେଣି ।''

କରବୀ ସନିର ଯିବା ରାସ୍ତାକୁ ଚାହିଁ ଅବାକ୍ ହୋଇଯାଇଥିଲା । କେଉଁ ପୁଅ ବାପାଙ୍କ ସଂପର୍କରେ ଏମିତି କଥା କହିପାରେ ? ଛି- ଛି । ସେ ବାପ ମଧ୍ୟ ଧନ୍ୟ !!

ତା'ପରେ ଦୁଇବର୍ଷ କଟିଗଲାଣି । କରବୀ କୋର୍ସ ସାରି ଆଜିକାଲି ଗୋଟିଏ ଭଲ ସ୍କୁଲ୍‌ରେ ପଢାଉଛି । ସେମାନଙ୍କୁ ଆଉ ଦିଲ୍ଲୀ ଖରାପ ଲାଗୁନାହିଁ ।

ସେଥର ଶୀତଦିନର ଛୁଟୀରେ ଲିଭ୍ ଟ୍ରାଭେଲ୍ ନେଇ ଅଭୟ ଓ କରବୀ ଦକ୍ଷିଣ ଭାରତ ବୁଲି ବାହାରିଥିଲେ । ବାହାଘର ପରେ କେରଳରେ ରହିଥିଲେ ମଧ୍ୟ ଆଖପାଖ ଅଞ୍ଚଳ ବୁଲିବା ହୋଇ ନ ଥିଲା । ମାଡ୍ରାସ୍, ପଣ୍ଡିଚେରୀ, ଉଟି ହୋଇ ସେମାନେ ପହଞ୍ଚିଥିଲେ ମହୀଶୂର୍‌ରେ । ମହୀଶୂର୍‌ରେ ତିନିଦିନ ରହି ଯିବା କଥା ବାଙ୍ଗାଲୋର୍ ଓ ବାଙ୍ଗାଲୋର୍‌ରୁ ରାଜଧାନୀ ଏକ୍ସପ୍ରେସ୍‌ରେ ଦିଲ୍ଲୀ ।

ମହୀଶୁର୍‌ର ହୋଟେଲ୍ ରୁମ୍ ଭିତରେ ବିଶ୍ରାମ କରୁ କରୁ ହଠାତ୍ ଅଭୟର ଯେମିତି କ'ଣ ମନେ ପଡ଼ିଗଲା।

''ଆଚ୍ଛା କରବୀ, ସତ୍ୟ ରାଠୋର୍ ଆସି ମହୀଶୁର୍‌ରେ ରହିଛନ୍ତି ବୋଲି ସନି କହିଥିଲା ନା ?''

ପତ୍ରିକା ଉପରୁ ମୁହଁଟେକି ଚାହିଁଲା କରବୀ, ''ସେ ତ ହେଲାଣି ଦୁଇବର୍ଷ ତଳ କଥା। ଏତେଦିନ କ'ଣ ସେ ଯାଯାବର ମଣିଷ ଏଠି ପଡ଼ି ରହିଥିବେ ?''

''କିଏ ଜାଣେ ? ହୁଏତ ଥିବେ। ଟିକେ ଟେଲିଫୋନ୍ ଡାଇରେକ୍ଟରିଟା ଆଣ ତ।''

ଡାଇରେକ୍ଟରିରେ ନାଁ ଗୁଡ଼ା ଦେଖୁ ଦେଖୁ ଗୋଟିଏ ଜାଗାରେ ଅଭୟର ଆଖି ଅଟକିଗଲା। ''ହେଇ ତ, ପରିଷ୍କାର ଭାବରେ ଲେଖା ହୋଇଛି- ରାଠୋର୍, ସତ୍ୟ ନାରାୟଣ। ପାଖରେ ଫୋନ୍ ନମ୍ବର।''

କରବୀ ବିରକ୍ତ ହେଲା, ''କେମିତି ଜାଣିଲ ଏ ସେଇ ସତ୍ୟ ରାଠୋର୍ ? ଯଦି ଆଉ କିଏ ହୋଇଥିବେ ?''

''ଦେଖାଯିବ।'' ଫୋନ୍ ନମ୍ବର ଡାଏଲ୍ କଲା ଅଭୟ।

''ମିଷ୍ଟର ରାଠୋର୍ ?''

''ୟେସ୍।''

''ସାର୍, ନମସ୍କାର। ମୁଁ ଅଭୟ ଶତପଥୀ।''

କେଇ ମିନିଟ୍‌ର ନୀରବତା। ଅଭୟ କ'ଣ ଭୁଲ୍ ସତ୍ୟ ରାଠୋର୍‌ଙ୍କ ନମ୍ବର୍‌ରେ ଫୋନ୍ କଲା ? କ୍ଷମା ମାଗି ନେଇ ଫୋନ୍ ରଖି ଦେବ କି ?

''ଅଭୟ ! ଏବେ ବି ମୁଁ ବିଶ୍ୱାସ କରି ପାରୁନାହିଁ !! ଏକା ଆସିଛ ନା କରବୀ ଅଛି ସାଙ୍ଗରେ ?...କେଉଁଠି ଉଠିଛ ? ମୁଁ ଆସୁଛି। ତୁମକୁ ଘରକୁ ଆସିବାକୁ ହେବ।''

ଅଳ୍ପ ସମୟ ଭିତରେ ପୁରୁଣା ଫିଆଟ୍‌ରେ ପହଞ୍ଚିଗଲେ ସତ୍ୟ ରାଠୋର୍। ଆଉ ସେମାନଙ୍କୁ ନେଇଗଲେ ମହୀଶୁର୍‌ର ଅପେକ୍ଷାକୃତ ଏକ ଶାନ୍ତ ଅଞ୍ଚଳକୁ ଯେଉଁଠି ସୁନ୍ଦର ଛୋଟ ଫ୍ଲାଟ୍‌ଟିଏ ତାଙ୍କର ଥିଲା।

ଏଇଠି ରହୁଛନ୍ତି ସତ୍ୟ ରାଠୋର୍ ? ଯିଏ ଦିଲ୍ଲୀର ଡ଼ିଫେନ୍‌ସ କଲୋନିରେ ବିରାଟ ବଙ୍ଗଳାରେ ରହୁଥିଲେ, ସେ ଏବେ ବାରଶହ ବର୍ଗଫୁଟର ଏଇ ଛୋଟ

ଫ୍ଲାଟ୍‌ରେ ରହି ପାରୁଛନ୍ତି ? ଏକା ନା ଆଉ କିଏ ଅଛି ସାଙ୍ଗରେ ?

ତା' ମନ ତଳ ପ୍ରଶ୍ନ ପଢିନେଲେ କି ସତ୍ୟ ? ଜରବୀ ଆଡକୁ ଚାହିଁ ହସି ଦେଇ କହିଲେ, "ମୁଁ ପୁଅ ବୋହୂଙ୍କ ସାଙ୍ଗରେ ଏଠି ରହେ। ଏବେ ଅବଶ୍ୟ ଘରେ କେହି ନାହିଁ। ପୁଅ ଏଠି ଫ୍ୟାକ୍ଟରି କରିଛି। ତାକୁ ବୋହୂ ସାହାଯ୍ୟ କରେ।"

କୋଉ ପୁଅ ? କୋଉ ବୋହୂ ? କାହା କଥା କହୁଛନ୍ତି ସେ ?

"ଆଦିତ୍ୟ କଥା ମନେନାହିଁ ତୁମର ? ପିଟ୍‌ସବର୍ଗରେ ପି.ଏଚ୍.ଡି କରୁଥିଲା ? କହୁ ନ ଥିଲି ଯେ ସେ ମୋ ପାଖକୁ ଫେରି ଆସିବା ପାଇଁ ଚାହୁଁଛି।...ସେ ଫେରିଆସି ଜବରଦସ୍ତି ମତେ ମହୀଶୂର୍ ନେଇ ଆସିଲା। ମୁଁ ତ ଆଦୌ ଏଠିକି ଆସିବାକୁ ଚାହିଁ ନ ଥିଲି।"

"ହଁ, ଏମିତି ଗୋଟିଏ ଅଜଣା ସ୍ଥାନକୁ ଆସି କିଏ ବା ରହିବା ପାଇଁ ଚାହିଁବ ?" ଜରବୀ କହିଲା।

"ଅଜଣା ?" ସତ୍ୟ ଆଶ୍ଚର୍ଯ୍ୟ ହେଲେ, "ମହୀଶୂର୍ ପୁଣି ମୋର ଅଜଣା ? ମୋ ଜୀବନର ଶ୍ରେଷ୍ଠ ଆଠବର୍ଷ ଏଇଠି କଟେଇଛି ମୁଁ। ଏ ସହରର ମାଟି, ପଥର, ପାଣି, ପବନ- ସମସ୍ତଙ୍କ ସହିତ ମୋର ଅନ୍ତରଙ୍ଗ ସଂପର୍କ ଅଛି।"

"ତେବେ ?"

"ଜେନିଫର୍ ମତେ ଛାଡି ଚାଲି ଯିବା ପରେ ଆଉ ମୁଁ ଏ ସହରରେ ରହିବା କଥା ଭାବି ପାରି ନ ଥିଲି। ସେଥିପାଇଁ ତା'ପରେ କେବେ ଏଠିକି ଆସିନି ମୁଁ।"

ଗେଷ୍ଟ ହାଉସ୍‌ରେ ଦେଖିଥିବା ଜେନିଫର୍‌ଙ୍କ ଫଟୋ କଥା ଜରବୀର ମନେ ପଡିଗଲା। ସତରେ ଅପୂର୍ବ ସୁନ୍ଦରୀ। ସେଥିପାଇଁ ତାଙ୍କୁ ସତ୍ୟ ଏତେ ଝୁରି ହେଉଛନ୍ତି !

"ଆଉ ଏତେ ବର୍ଷ ପରେ..."

"ଏସବୁ ଆଦିତ୍ୟ ଯୋଗୁଁ। ମୁଁ ତ ଆସିବାକୁ ପ୍ରସ୍ତୁତ ନ ଥିଲି। ସେ ହିଁ ମତେ ଟାଣି ଟାଣି ଏଇଠି ପହଞ୍ଚେଇଲା। କହିଲା ଯେ ସେ ଏଇଠି ଫ୍ୟାକ୍ଟରୀ କରିବା କଥା ସ୍ଥିର କରିଛି। ମତେ ଜବରଦସ୍ତି ପାଖରେ ରଖାଇଲା। କିଛି ମାସ ପରେ ଏଇଠିକାର ଝିଅଟିଏକୁ ବାହା ହେଲା ସେ।"

ହସିଲା କରବୀ, ''ଭଲ ହେଲା। ଆଦିତ୍ୟଙ୍କ ପାଖରେ ରହି ଆପଣ ବଡ ସନ୍ତୁଷ୍ଟ ଲାଗୁଛନ୍ତି।''

ଦୀର୍ଘନିଶ୍ୱାସ ନେଲେ ସତ୍ୟ, ''ହଁ, ମୋ ଜୀବନର ଶାନ୍ତି ମୁଁ ଫେରିପାଇଛି।...ଖାଲି ଯଦି ଜେନିଫର୍ ଥାଆନ୍ତା ପାଖରେ !''

''ଜେନିଫର୍‌କୁ ଫେରାଇ ଆଣି ପାରିବେ ନାହିଁ? କିଏ ଜାଣେ ହୁଏତ ଏତେ ବର୍ଷ ପରେ ତାଙ୍କର ମନ ପରିବର୍ତ୍ତନ ହୋଇଯାଇଥିବ।''

ସତ୍ୟ ଆଶ୍ଚର୍ଯ୍ୟ ହୋଇ ଅଭୟକୁ ଚାହିଁଲେ, ''ଜେନିଫର୍‌କୁ ଫେରାଇ ଆଣିବି ?''

ହଠାତ୍ ଆଖି ଛଳଛଳ ହୋଇଉଠିଲା ତାଙ୍କର। ''ଯଦି ସମ୍ଭବ ହୋଇଥାନ୍ତା, ତେବେ କ'ଣ ତାକୁ ମୁଁ ଫେରାଇ ଆଣି ନ ଥାଆନ୍ତି? ସେ ତ ଅଭିମାନ କରି ଚାଲିଗଲା ! ତା'ପରେ କେତେ ନାରୀଙ୍କ ଭିତରେ ମୁଁ ଜୀବନର ଶାନ୍ତି ଖୋଜିଛି। ଜେନିଫର୍ ସହିତ କଟାଇଥିବା ଅପୂର୍ବ ମୁହୂର୍ତ୍ତମାନ ଖୋଜିଛି। କାହିଁ, କିଛି ପାଇଲି ନାହିଁ ତ !''

ଅଭୟ ଓ କରବୀଙ୍କ ହାତ ଧରି ସେ ନିଜ ଶୋଇବା ଘର ଭିତରକୁ ନେଇଗଲେ। ଘର ମଝିରେ ଖଟ। ଆଉ ଖଟ ପାଖ କାନ୍ଥରେ ଟଙ୍ଗା ହୋଇଥିଲା ଜେନିଫର୍‌ଙ୍କର ବିରାଟ ଫଟୋ। ସାମ୍ନାରେ ଧୂପ। ଫଟୋ ଉପରେ ଝୁଲୁଥିଲା ଧଳା ଗୋଲାପର ମାଳା। □□

# ତୁଳନା

ନିଜ ଗେଟ୍ ପାଖରୁ ବୁଲିପଡି ଇନ୍ଦ୍ରାଣୀ ଉଦ୍ଦେଶ୍ୟରେ ହାତ ଟିକିଏ ହଲେଇ ଦେଇ ସୁଜାତା ଘର ଭିତରକୁ ପଶିଗଲା। ଗୋଟିଏ ଗ୍ଲାସ୍ ପାଣି ଢକ ଢକ କରି ପିଇନେଇ ନିଜକୁ ନିଜେ ତାଗିଦା କରି ବସିଲା ସେ।

ନା- ଆଉ ନୁହଁ।

ଆଉ ଆଦୌ ନୁହଁ। ଯାହା ବି ହୋଇଯାଉ! ଭୂମିକଂପ ହେଉ, ବନ୍ୟା ହେଉ ସେ ଇନ୍ଦ୍ରାଣୀ ଘରକୁ ଏମିତି ସବୁଦିନ ଚାଲିଯିବ ନାହିଁ।

ଗ୍ଲାସ୍‌ଟାକୁ ଧୋଇ ନେଇ ଓଲଟେଇ ରଖୁ ରଖୁ ସୁଜାତା କିନ୍ତୁ ଜାଣିଥିଲା ଯେ ତା'ର ଏଇ ପ୍ରତିଜ୍ଞାର କୌଣସି ମାନେ ହୁଏ ନାହିଁ। ଆଗରୁ ବହୁଥର ସେ ଏ ପ୍ରତିଜ୍ଞା କରି ସାରିଛି, ହେଲେ ଥରଟିଏ ବି ରଖି ପାରିନାହିଁ।

ଏମିତିରେ ଦେଖିବାକୁ ଗଲେ ଇନ୍ଦ୍ରାଣୀ ସାଙ୍ଗରେ ତା'ର କ'ଣ ବା ମେଳ ଅଛି ?

ସେ ସୁଜାତା ଦାସ। ବୟସ ପଇଁଚାଳିଶ। ଚେହେରା ସାଧାରଣ। ସ୍ୱାମୀ ପରିତୋଷ ଦାସ ସରକାରୀ ଚାକିରିଆ। ଗୋଟିଏ ବୋଲି ପୁଅ- ପିନାକୀ। ଏଇ ବର୍ଷ ବ୍ୟାଙ୍କ୍‌ରେ ଚାକିରିଟିଏ ପାଇଛି।

ଆଉ ଏ ଇନ୍ଦ୍ରାଣୀ! ତା' ବୟସ ମାତ୍ର ଅଣତିରିଶ। ବଡଲୋକ ବାପା ମା'ଙ୍କର ସାନ ଝିଅ। ବିରାଟ ବ୍ୟବସାୟୀ ପରିବାରର ବଡ ବୋହୂ। ବାହାଘରର

ପ୍ରଥମ ସାତବର୍ଷ ଦିଲ୍ଲୀରେ ଶାଶୁଘରେ ଥିଲା। ଏବେ ଏଇ ସହରରେ ବ୍ୟବସାୟ ଆରମ୍ଭ କରିବା ପାଇଁ ତା' ସ୍ୱାମୀ ଅନୀଲ୍ ଆସିଛି। ସେଇଥିପାଇଁ ସାତ ବର୍ଷର ଝିଅ ଇରାକୁ ଧରି ଇନ୍ଦ୍ରାଣୀ ଏଇଠି।

ପ୍ରଥମ ଥର ଯେତେବେଳେ ପରିଚୟ ହେଲା, ଇନ୍ଦ୍ରାଣୀ ସେତେବେଳେ କହିଥିଲା, "ମାତ୍ର ବାର ଲକ୍ଷରେ ଏଇ ଘରଟା ମିଳିଗଲା ତ, ଆମେ ସେଥିପାଇଁ କିଣିନେଲୁ। ହଉ ପଛେ ସହରଠୁଁ ଦୂର। ଆଉ କେଇଟା ବର୍ଷରେ ଏଠି କେତେ ଘର ହୋଇଯିବ। ସେତେବେଳେ ଜାଗାଟି ପୁରୁଣା ହୋଇଯିବନି କି? ନା କ'ଣ କହୁଛ?"

ସେଇ ପ୍ରଥମ ଦେଖାରେ ଏମିତି 'ଲକ୍ଷ'ରେ କଥାବାର୍ତ୍ତା ସୁଜାତାକୁ କେମିତି ଟିକିଏ ଅଦ୍ଭୁତ ଲାଗିଥିଲା। କିନ୍ତୁ ମନରୁ ସେ କଥା ପୋଛି ନେଇ ଇନ୍ଦ୍ରାଣୀର ପ୍ରଶ୍ନର ଉତ୍ତର ପାଇଁ ଭାଷା ଖୋଜିଥିଲା ସେ। ମାତ୍ର ବାର ଲକ୍ଷ!! ଗଣ ଭାରରେ ବୁଡି ନ ଯାଇ ପକେଟ୍‌ରୁ କାଢି ବାର ଲକ୍ଷ!!

ଆଉ ସ୍ୱାମୀର ତେଇଶ ବର୍ଷର ଚାକିରି ପରେ ସୁଜାତାର କି ଅବସ୍ଥା? ଚାରିଆଡୁ ଟଙ୍କା ଗୋଟେଇ ଗାଟେଇ ପଚାଶ ହଜାର ଏକାଠି କରି ଘରଟିଏ ପାଇଁ ଶେଷରେ ଆବେଦନ ପତ୍ରଟିଏ ପକେଇ ପାରିଥିଲେ ପରିତୋଷ। ଘର ମିଳିଗଲା ପରେ ସରକାରୀ ଲୋନ୍, ଏଲ୍.ଆଇ.ସି ଲୋନ୍, ଆଉ ପୁଣି ସାଙ୍ଗ କେଇଜଣଙ୍କ ଠାରୁ କିଛି ହାତପତା। କୌଣସି ମତେ ତିନି ଲକ୍ଷ ଟଙ୍କାଟା ଯୋଗାଡ ହୋଇଗଲା। ପୁଅ ଏ ବର୍ଷ ଚାକିରି କଲା, ସେଇଟା ରକ୍ଷା। ନ ହେଲେ କେମିତି ଯେ କ'ଣ ହୋଇଥାଆନ୍ତା ସୁଜାତା ଭାବି କୂଳକିନାରା ପାଏ ନାହିଁ।

ଏକଥା କ'ଣ ସେ ନୂଆ ପରିଚିତ ହୋଇଥିବା ଇନ୍ଦ୍ରାଣୀକୁ କହିପାରେ?

ଆପାତତଃ ମୁହଁରେ ହସ ଖେଳାଇ ସେଦିନ ସେ କହିଥିଲା, "ହଁ, ତା' ନୁହଁ ତ ଆଉ କ'ଣ? ମନଲାଖି ଘରଟିଏ ଯେତେବେଳେ ନିଜ ବଜେଟ୍‌ରେ ମିଳିଗଲା, କିଣି ନେବା ହିଁ ଭଲ।"

ସେଦିନ ଘରକୁ ଫେରିବା ପରେ ସୁଜାତା ଭାବିଥିଲା, ବେଶ୍ ହେଲା। ପରିଚୟ ହୋଇଗଲା। ସେଇ ଯଥେଷ୍ଟ। ନ ହେଲେ ଏ ଧନୀର ଦୁଲାଳୀ ସାଙ୍ଗରେ ତା'ର ବା କି ସଂପର୍କ?

କିନ୍ତୁ କାହିଁକି ଯେ ତା' ପରଦିନ ସେ ଇନ୍ଦ୍ରାଣୀ ଘରେ ପହଞ୍ଚିଗଲା, ଏ କଥାର ଉତ୍ତର ସୁଜାତା ଦେଇ ପାରିବ ନାହିଁ। ହୁଏତ ଦେଇ ପାରିବେ ନୂଆ କଲୋନୀର ଇଟାଗଦା, ବାଲି ସ୍ତୂପମାନେ ଯେଉଁମାନେ କି ଗତ କୁଡ଼ିବର୍ଷ ଧରି ସୁଜାତାର ଏକାକୀତ୍ୱକୁ ଦେଖିଛନ୍ତି, ତା'ର ଦୀର୍ଘଶ୍ୱାସକୁ ଶୁଣିଛନ୍ତି।

କ'ଣ କା ଜାଣେ [illegible] ଜାଣେ ମଦୋଷେ। ପରିତୋଷ ଯାଉ ଯାଉ ଅବଶ୍ୟ ସାଢେ ନଅ ବାଜିଯାଏ। ତା'ପରେ ବାପ ପୁଅ ଫେରୁ ଫେରୁ ସନ୍ଧ୍ୟା ଛଅ। ଏତେ ଗୁଡ଼ାଏ ସମୟ ସୁଜାତାର ହାତରେ। କେତେ ଆଉ ଶୋଇ, ଗପ ବହି ପଢି, ଟି.ଭି ଦେଖି କଟେଇବ? ଆଖପାଖରେ କେହି ଜଣେ ହେଲେ ଥାଆନ୍ତା। ମଝିରେ ବ୍ୟତିବ୍ୟସ୍ତ ହୋଇ ଚାକିରିଟିଏ ପାଇଁ ଚେଷ୍ଟା କରିଥିଲା ସେ। ଆଉ କିଛି ନ ହେଲେ ନର୍ସରୀ ସ୍କୁଲରେ ପଢେଇ ତ ପାରିବ?

ଶେଷରେ ଚାକିରିଟିଏ ମଧ୍ୟ ମିଳି ଯାଇଥିଲା। କିନ୍ତୁ ସୁଜାତା ବେଶୀ ଦିନ ପଢାଇ ପାରିଲା ନାହିଁ। ଧୂଳିଆ ରାସ୍ତାରେ ଦୁଇଘଣ୍ଟା ବସ୍‌ରେ ଯିବା ଆସିବା କରି ବହୁଦିନରୁ ଦବି ରହିଥିବା ବ୍ରୋଙ୍କାଇଟିସ୍ ବାହାରି ପଡିଥିଲା ତା'ର। ବାପ୍-ବାପପୁଅଙ୍କର ତାଗିଦାରେ ଶେଷରେ ଚାକିରି ଛାଡିବାକୁ ହେଲା।

ପୁଣି ସେଇ ଏକା ଏକା ଜୀବନ।

ସେତିକିବେଳେ ଅବିର୍ଭାବ ଏଇ ଇନ୍ଦ୍ରାଣୀର। ଲମ୍ବା ଦି'ପହର ସମୟରେ ଯେତେବେଳେ ଚାରିଆଡ ଶୁନ୍‌ଶାନ୍ ହୋଇଯାଏ, ରାସ୍ତାରେ ସାଇକେଲ୍‌ଟିଏ ବା ସ୍କୁଟର୍‌ଟାଏ ଦେଖିବା ବିରଳ ହୋଇପଡେ, ଠିକ୍ ସେତିକିବେଳେ ତା'ର ପାଦ ଦିଇଟା ଟାଣି ହୋଇଯାଏ ଇନ୍ଦ୍ରାଣୀ ଘର ଆଡକୁ।

ତେବେ ତା'ର ସେଇ ବଡଲୋକୀ ଗପ?

ଉଃ! ସବୁଦିନ ସୁଜାତାର ଅସହ୍ୟ ମନେ ହୁଏ। ସେ ନିଜକୁ ବୁଝାଏ। ଇନ୍ଦ୍ରାଣୀର ବା ଏଥିରେ ଦୋଷ କ'ଣ? ଝିଅଟି ଏମିତିରେ ତ ଭଲ। ସେ କ'ଣ ଆଉ ଦେଖେଇ ହୋଇ, ଗର୍ବ କରି ଏସବୁ କଥା କହୁଛି? ଯାହା ସତ, ସେଇଟା ହିଁ ମେଲାଇ ଦେଉଛି। ତା'ଠୁଁ ଡ଼ାଲି ଦର ବଢିଲା, କଣ୍ଟ୍ରୋଲ୍‌ର ଚିନି ବାଢେ- ଏଇଭଳି କଥା ଯଦି ଶୁଣିବାକୁ ସୁଜାତା ଆଶାକରେ, ତେବେ ସେଇଟା ତା'ର ହିଁ ଭୁଲ୍।

ସେ ସବୁ ବୁଝେ। ତଥାପି କାହିଁକି ଯେ ତାକୁ ଅଣନିଶ୍ୱାସୀ ଲାଗେ, ସୁଜାତା ନିଜେ ସେ କଥା ଜାଣିପାରେ ନାହିଁ। ଦୋକାନରେ ପହଞ୍ଚି କିଲୋ ଆଠ ଟଙ୍କା ଦେଇ ଚାଉଳ କିଣିବ ନା ସାତ ଟଙ୍କା କିଲୋର- ସେଇଥିରେ ସୁଜାତାର ଗୁଡାଏ ସମୟ ଚାଲିଯାଏ। ମାତ୍ର କେଇଟା ଟଙ୍କା ପାଇଁ ଯିଏ ଦିନଟାଯାକ ଚିନ୍ତା କରି କରି କଟାଇଦିଏ, ତା' ଆଗରେ ଯଦି ଜଣେ ପାଞ୍ଚଖଣ୍ଡ ସିଲ୍କ ଶାଢୀ ଖୋଲି ଦେଖାଏ ? ଆଉ ପୁଣି କହେ, "ଏଇ ସେଦିନ ଦୋକାନରେ ବୁଲିବା ବେଳେ ହଠାତ୍ ପସନ୍ଦ ହୋଇଗଲା। କୋଉଟା କିଣିବି ଜାଣି ପାରିଲି ନାହିଁ। ବଡ ଭଉଣୀ ସାଙ୍ଗରେ ଥିଲା। ସେ କହିଲା- 'ନେଇ ଯାଆନା ପାଞ୍ଚଖଣ୍ଡ ଯାକ'।"

ସୁଜାତା ବାଧହୋଇ ହସେ। କହେ, "ଭଲ କଲ। ସବୁଗୁଡାକ ତୁମକୁ ମାନିବ।"

ଆଉ ପୁଣି କେତେବେଳେ ନୂଆ ଡିଜାଇନ୍‌ର ଗହଣା ସେଟ୍ ଖୋଲି ଦେଖାଏ। "ଜନ୍ମଦିନ ପାଇଁ ଶାଶୁ ଶ୍ୱଶୁର ପଠେଇଛନ୍ତି। ମା' କାଲି ଫୋନ୍‌ରେ କହୁଥିଲେ ଯେ ଏଥର ହୀରାର କାନଫୁଲଟିଏ ଦେବେ।"

ନିଜ କାନରେ ପିନ୍ଧିଥିବା ନାଲି ପଥର ବସା ଛୋଟ କାନଫୁଲ ଉପରେ ହାତ ଟିକିଏ ମାରି ଦେଇ ସୁଜାତା ହସେ। କହେ, "ବାଃ ବେଶ୍ ଭଲ ତ।"

ପୁଣି ପଚାରେ, "ଆଉ ଅନୀଲ୍ ?"

ଇନ୍ଦ୍ରାଣୀ ଆଖି ବୁଲେଇ ନେଇ କେମିତି ଭାବରେ କହେ, "ତାଙ୍କ କଥା ଆଉ କହୁଛ କାହିଁକି ?"

ସୁଜାତା ଅବା ମୂର୍ଖଙ୍କ ଭଳି ପଚାରେ କେମିତି ? ପୃଥିବୀର ସର୍ବଶ୍ରେଷ୍ଠ ଜିନିଷ ତୋଳିଆଣି ଦେବେ ନାହିଁ ଇନ୍ଦ୍ରାଣୀର ସ୍ୱାମୀ ?

ଘରକୁ ଫେରି ସେ ନିଜକୁ ସତର୍କ କରାଏ। ସମାଜର ଦୁଇ ଭିନ୍ନ ସ୍ତରର ଦୁଇଟି ସ୍ତ୍ରୀଲୋକ ଭିତରେ ପୁଣି ବନ୍ଧୁତ୍ୱ କାହିଁକି ? ସେ ନିଜ ତରଫରୁ ସଂପର୍କ ହାଲୁକା କରିଦେବ।

କିନ୍ତୁ ତା' ଆଉ ହୁଏ ନାହିଁ। ବରଂ ଦିନକୁ ଦିନ ଦୁଇଜଣଙ୍କର ସୌହାର୍ଦ୍ୟ ବଢିବାକୁ ଲାଗେ। ଗୋଟିଏ ଗୋଟିଏ ଇଟା ରଖୁ ରଖୁ କେତେବେଳେ ଯେ ପ୍ରାସାଦଟିଏ ଗଢି ହୋଇଯାଏ, ସେ କଥା ନା ସୁଜାତା ଜାଣିପାରେ ନା ଇନ୍ଦ୍ରାଣୀ।

ସୁଜାତାର ଏମିତି କହିବାକୁ ବା କେତେ କଥା ଥାଏ ? ତା'ଛଡା ତା' ମଧ୍ୟବିତ୍ତ ପରିବାର ବିଷୟରେ ଗପିବା ଆରମ୍ଭ କରୁ କରୁ ପାଟିରେ କଥା ସବୁ ଅଟକି ଅଟକି ଯାଏ । ବରଂ ଇନ୍ଦ୍ରାଣୀ ହିଁ କହୁ ।

ଇନ୍ଦ୍ରାଣୀର ଗପିବାରେ ହେଳା ନାହିଁ, ସେ ତା' ନଣନ୍ଦମାନଙ୍କ କଥା ଗପେ । ଭିଣୋଇମାନଙ୍କର ବ୍ୟବସାୟର ସଫଳତା କଥା କହେ । ହନିମୁନ୍‌ରେ ଯାଇଥିବା ସୁଇଜରଲ୍ୟାଣ୍ଡର ବର୍ଣ୍ଣନା କରେ । ଶାଶୁ ଶ୍ୱଶୁରଙ୍କର ସ୍ନେହ ଆଦର ମନେ ପକାଇ ଆଖି ଛଳ ଛଳ କରେ । ତେବେ ଅଧିକାଂଶ ସମୟରେ ତା' କଥାର ନାୟକ ଅନୀଲ । ତା' ସ୍ୱାମୀ ଅନୀଲ ଯାହା ସାଙ୍ଗରେ ତା'ର ଆଠବର୍ଷ ତଳେ ବାହାଘର ହୋଇଥିଲା ।

ନା- ପରସ୍ପରର ପସନ୍ଦରେ ନୁହଁ । ଦୁଇ ପରିବାରର ଆଶୀର୍ବାଦରେ ଜାତକ ମିଳା ହୋଇ ବାହାଘର ହୋଇଥିଲା ।

''ଜାଣିଛ ?'' ଏମିତି ଦିନେ କହୁ କହୁ ଇନ୍ଦ୍ରାଣୀ କହି ପକେଇଥିଲା, ''ଅନୀଲଙ୍କୁ ଏବେ ଯେମିତି ଦେଖୁଛ, ଆଗରୁ କିନ୍ତୁ ସେ ସେଇମିତି ନଥିଲେ ।''

''ମାନେ ?''

''କଲେଜରେ ପଢ଼ିବା ବେଳଠୁଁ ହିଁ ସେ ଅନ୍ୟରକମ ହୋଇ ଯାଇଥିଲେ । ଆଉ ଯେତେ ସବୁ ବାଜେ ନିଶା ।''

''କ'ଣ ମଦ ?'' ସୁଜାତା ଆଖି ବଡ ବଡ କରିଥିଲା ।

''ଆରେ ନା,'' ହସି ହସି ଉତ୍ତର ଦେଇଥିଲା ଇନ୍ଦ୍ରାଣୀ, ''ସୁରା ନୁହଁ ସାକୀ । ଇସ୍- କେତେ ଯେ ଝିଅଙ୍କ ସାଙ୍ଗରେ ସଂପର୍କ ଥିଲା ! ଆଗ କାଳରେ ଜାହାଜ କ୍ୟାପ୍‌ଟେନ୍‌ମାନଙ୍କର ସବୁ ବନ୍ଦରରେ ଗୋଟିଏ ଗୋଟିଏ ସ୍ତ୍ରୀ ରହିବା ଭଳି ଅନୀଲଙ୍କର ସବୁ ଗଳିରେ ଗୋଟିଏ ଗୋଟିଏ ଗାର୍ଲଫ୍ରେଣ୍ଡ ଥିଲେ ।''

''କ'ଣ କହୁଛ !'' ସୁଜାତା କେବଳ ସିନେମାରେ ଏମିତି ସବୁ ହେବାର ଦେଖିଛି । କିନ୍ତୁ ବାସ୍ତବ ଜୀବନରେ ଏତେବେଶୀ ଉଦ୍‌ଶୃଙ୍ଖଳତା କ'ଣ ସମ୍ଭବ ?

''ଯା ହେଉ, ବାହାଘର ପରେ ବୋଧହୁଏ ତୁମଭଳି ସୁନ୍ଦରୀ ସ୍ତ୍ରୀକୁ ପାଇ ସବୁ ନିଶା ଛାଡିଗଲା ?''

ହଠାତ୍ ସେଦିନ ଇନ୍ଦ୍ରାଣୀ ଗମ୍ଭୀର ହୋଇଯାଇଥିଲା । ''ଶାଶୁ ଶ୍ୱଶୁର ମଧ୍ୟ ସେଇଭଳି କିଛି ହେବାର ଆଶା ରଖିଥିଲେ । ଭାବିଥିଲେ ବାହାଘର ପରେ ସବୁ

ଠିକ୍ ହୋଇଯିବ। ନା- ସେମିତି କିଛି ହୋଇ ନ ଥିଲା। ଆମ ଘରେ ତ ଆଗରୁ କେହି କିଛି ଜାଣି ନଥିଲେ। ଜାଣିଥିଲେ କ'ଣ ବାହାଘର ହେବାକୁ ଦେଇଥାଆନ୍ତେ? ଘର ଲୋକଙ୍କ କଥା ଛାଡ, ମୁଁ ତ ବର୍ଷେ କାଳ ବୁଝି ପାରି ନଥିଲି। ତା'ପରେ ଏମିତି ଦିନେ ଜାଣିଗଲି।''

''ତୁମେ ଅନୀଲଙ୍କୁ କିଛି କହିଲ ନାହିଁ?''

''ହଁ ପଚାରିଥିଲି। ସେ ସବୁ ମାନିଗଲେ। କ'ଣ କହିଥିଲେ ଜାଣ? କହିଥିଲେ ଯେ ତାଙ୍କର ଆବଶ୍ୟକତା କେବଳ ଗୋଟିଏ ନାରୀରେ ପୂରଣ ହେବ ନାହିଁ। ତେବେ ମୁଁ ଯେମିତି ବ୍ୟସ୍ତ ବିବ୍ରତ ନ ହୁଏ। ମୁଁ ସବୁବେଳେ ତାଙ୍କର ଏକମାତ୍ର ସ୍ତ୍ରୀ ହୋଇ ରହିବି। ମୋ ପ୍ରତି ସେ କୌଣସି ଅବିଚାର କରିବେ ନାହିଁ।''

ସୁଜାତା ଅସନ୍ତୁଷ୍ଟ ସ୍ୱରରେ କହିଲା, ''ଆଉ ତୁମେ ତାଙ୍କ କଥା ମାନିଗଲ?''

''କ'ଣ କରିଥାଆନ୍ତି ମୁଁ? ସେତେବେଳେ କୋଳକୁ ଲରା ଆସି ସାରିଛି। ବାପଘରକୁ ହୁଏତ ଚାଲିଯାଇ ପାରିଥାଆନ୍ତି। କିନ୍ତୁ...କିନ୍ତୁ ସତରେ ତ ମୋର କୌଣସି ଅଭାବ ଅସୁବିଧା ଅନୀଲ ରଖୁ ନଥିଲେ। ମୋ ସାଙ୍ଗରେ ସମୟ କଟାଉଥିଲେ, ଭଲ ପାଇବା ଦେଉଥିଲେ, ବୁଲେଇ ନେଉଥିଲେ, ଗହଣା କିଣି ଦେଉଥିଲେ!'' ଇନ୍ଦ୍ରାଣୀ ହସିଥିଲା, ''ମୁଁ ଯଦି ନିଜେ ଅନୀଲଙ୍କ ମୁହଁରୁ ଶୁଣି ନ ଥାଆନ୍ତି, ତେବେ ହୁଏତ ଭାବି ନେଇଥାଆନ୍ତି ଯେ ଏଇ ସବୁ ଗାର୍ଲଫ୍ରେଣ୍ଡ ଖବର ମିଛ। କେମିତି କେତେବେଳେ ଯେ ସେମାନଙ୍କ ସହିତ ସେ ସଂପର୍କ ରଖୁଥିଲେ, ମୁଁ ଆଜିଯାଏ ବୁଝିପାରିଲି ନାହିଁ।''

''ଆଉ ହଠାତ୍ ବଦଳିଗଲେ ସେ?'' ସୁଜାତାର କାହିଁକି ଏସବୁ ପରୀକାହାଣୀ ଭଳି ମନେ ହୋଇଥିଲା।

''ହଠାତ୍ ଇ ତ।'' କଥା କହୁ କହୁ ଇନ୍ଦ୍ରାଣୀ ଆତ୍ମବିସ୍ମୃତ ହୋଇ ପଡିଥିଲା।

କିଛି ସମୟ ଚୁପ୍ ରହି ସେ ପୁଣି କଥା ଆରମ୍ଭ କରିଥିଲା। ସେଥର ବାପଘରକୁ ମାସେ ପାଇଁ ଯାଇଥିଲା ଇନ୍ଦ୍ରାଣୀ। ଫେରି ଆସି ଦେଖେ, ଏ ଯେମିତି ଅନ୍ୟ କେଉଁ ଅନୀଲ। ବାଳ କଟା ହୋଇ ନିହାତି ଛୋଟ ଛୋଟ। ବେକରେ ତୁଳସୀ ମାଳି। ଯିଏ ଦିନ ଦି'ପହରେ ବିଛଣା ଛାଡୁଥିଲା, ସେ ଭୋରରୁ ଉଠି ଦୁଇ ଘଣ୍ଟା କେବଳ ପୂଜାଘରେ କଟାଉଛି।

ଇନ୍ଦ୍ରାଣୀ ଅବାକ୍ ହୋଇଯାଇଥିଲା। ପରେ ଶାଶୁଙ୍କଠାରୁ ଶୁଣିଲା ଯେ ସେ

ନଥିବା ବେଳେ ଗୋଟିଏ କୃଷ୍ଣ ମନ୍ଦିରକୁ ଅନୀଲକୁ ତା'ର ଜଣେ ସାଙ୍ଗ ଜୋର ଜବରଦସ୍ତି କରି ନେଇଯାଇଥିଲା। ସେଦିନ ଜନ୍ମାଷ୍ଟମୀ। ମନ୍ଦିରରେ ପ୍ରବଳ ଭିଡ। ତଥାପି ସେଇ ଭିଡ ଭିତରେ ସାଙ୍ଗ ଜଣଙ୍କ ଅନୀଲକୁ ପ୍ରଧାନ ପୂଜାରୀ ବାବା ରାମଦାସଙ୍କ ସହିତ ଚିହ୍ନା ପରିଚୟ କରେଇ ଦେଇଥିଲା। ସେଇ ଦୁଇ ତିନି ମିନିଟ୍‌ର କଥାବାର୍ତ୍ତା ଅନୀଲର ଜୀବନକୁ ଓଲଟପାଲଟ କରିଦେଇଥିଲା। ତା' ପରଦିନ ତଉଡିରେ ବାନ୍ଧି କିଏ ଟାଣିବା ଭଳି ସେ ପୁଣି ପହଞ୍ଚି ଯାଇଥିଲା ମନ୍ଦିରରେ। ବାବା ରାମଦାସଙ୍କ ପାଖରେ। କ୍ରମଶଃ ନିତିଦିନିଆ ରୁଟୀନ୍ ହୋଇଗଲା ଏଇଟା। ତା'ପରେ ଦିନେ ଅନୀଲ ସେଇ ବାବାଙ୍କଠାରୁ ଦୀକ୍ଷା ନେଇଗଲା ଏବଂ ହଠାତ୍ ବଦଳିଗଲା ତା' ପୃଥିବୀ। ନିଜ ଉପାର୍ଜନର ଯେଉଁ ବିରାଟ ଅଂଶଟି ହୋଟେଲ ଖାଦ୍ୟରେ ଓ ନାରୀବନ୍ଧୁମାନଙ୍କୁ ଉପହାର ଦେବାରେ ଖର୍ଚ୍ଚ ହୋଇଯାଉଥିଲା, ସେଇଟା ମନ୍ଦିରର ପାଣ୍ଠିକୁ ଯିବାରେ ଲାଗିଲା। ଆଉ ଅନୀଲର ସନ୍ଧ୍ୟାଗୁଡିକ କେଉଁ ବାର୍‌ରେ ବନ୍ଧୁମାନଙ୍କ ହୋ ହଲ୍ଲାରେ ନ କଟି କଟୁଥିଲା ମନ୍ଦିରର ପ୍ରାଙ୍ଗଣରେ। ବାବାଙ୍କ ମୁହଁରୁ କୃଷ୍ଣଲୀଳା ଶୁଣିବା ପାଇଁ ନିଜର ସବୁ କାମକୁ ପଛରେ ପକାଇ ଧାଇଁ ଆସୁଥିଲା ସେ।

''ମୋତେ କେମିତି ଅବାକ୍ ଲାଗିଥିଲା। ଭାବିଥିଲି କ'ଣ ଗୋଟାଏ ମୁଣ୍ଡରେ ପଶିଛି, ଦିନ କେଇଟାରେ ନିଶା ଉତୁରିଯିବ। କିନ୍ତୁ କାହିଁ? ସେମିତି ତ କିଛି ହେଲା ନାହିଁ। ଦିଲ୍ଲୀ ଛାଡିବା ପରେ ମଧ୍ୟ କିଛି ବଦଳିଲା ନାହିଁ। ଏବେ ଏଠିକାର ଗୋଟିଏ କୃଷ୍ଣ ମନ୍ଦିର ସହିତ ଅନୀଲ ଜଡିତ ହୋଇ ପଡିଛନ୍ତି। ବ୍ୟବସାୟରେ କଟାଉଥିବା ସମୟତକ ଛାଡିଦେଲେ ବାକୀ ବେଳ କଟୁଛି ମନ୍ଦିରରେ। ମନ୍ଦିରର ମହାରାଜଙ୍କ ପାଖରେ।'' ଇନ୍ଦ୍ରାଣୀ କଥା ଶେଷ କରିଥିଲା।

''ଆଉ ତାଙ୍କ ଗାର୍ଲଫ୍ରେଣ୍ଡମାନଙ୍କର କି ଦଶା ହେଲା? ଅନୀଲ କ'ଣ ଏକଦମ ସେମାନଙ୍କର ପାଖ ପଶିବା ଛାଡି ଦେଲେ?'' ସୁଜାତାର କାହିଁକି ଟିକିଏ ଥଟ୍ଟା କରିବାକୁ ଇଚ୍ଛା ହେଲା।

''ହୁଁ, ଗାର୍ଲଫ୍ରେଣ୍ଡ କଥା ପଡିଛି। ମୋ ପାଖକୁ ତ...'' ହଠାତ୍ ଓଠ ଉପରେ ଦାନ୍ତ ମାଡି ଦେଇ ନିଜ କଥା ନିଜେ ବନ୍ଦ କରେଇ ଦେଲା ଇନ୍ଦ୍ରାଣୀ। ''ହେ ଛାଡ ମ, ମୋର ନା ସେତେବେଳେ କିଛି ଚିନ୍ତା ଥିଲା, ନା ଏବେ କିଛି ଅଛି।''

ସେଦିନ ଘରକୁ ଫେରିବା ପରେ ସୁଜାତାର ଛାତି ଭିତରେ ଅସ୍ୱସ୍ତି ଭରି ଯାଇଥିଲା। ମଣିଷଟିଏ କ'ଣ ଏମିତି ହଠାତ୍ ବଦଳି ଯାଇପାରେ ?

ଅନୀଲ କ'ଣ ସତରେ ବଦଳି ଯାଇଛି ନା ପର୍ଦ୍ଦାର ଅନ୍ତରାଳରେ ନିଜର ଲମ୍ପଟ ଜୀବନକୁ ପୂର୍ବଭଳି ସଜେଇ ସାଇତି ରଖିଛି ? କାହିଁ, ସେମିତି ମନେ ହୁଏନି ତ !

ଅଳ୍ପ କେତେଥର ମାତ୍ର ଦେଖିଥିବା ଅନୀଲର ମୁହଁ ସୁଜାତା ଆଖି ଆଗରେ ଖେଳିଗଲା ! ଗୋରା ତକତକ ଆକର୍ଷଣୀୟ ଚେହେରା। ଛଅଫୁଟ ପାଖାପାଖି ଡେଙ୍ଗା। କେତେ ବା ବୟସ ହେବ ? ବଡ ଜୋର୍ ପଇଁତିରିଶ।

କିନ୍ତୁ ତା' ଆଖିରେ ବୟସର ଉଦ୍ଦାମତା ଦେଖିବାକୁ ମିଳେ ନାହିଁ। ମାର୍ଜିତ ଚାଲିଚଳଣ ଏବଂ କିଭଳି ଏକ ନିର୍ଲିପ୍ତ ଭାବ ମୁହଁ ଉପରେ। ହୁଏତ ଏବେ ସେ ନିଜକୁ ସଂପୂର୍ଣ୍ଣ ରୂପେ ନିୟନ୍ତ୍ରିତ କରିପାରିଛି ଏବଂ ବାହାଘରର ପ୍ରଥମ କେଇବର୍ଷର ଅବିଶ୍ୱସ୍ତତାକୁ ପୋଛି ଦେବାର ନିରନ୍ତର ଚେଷ୍ଟା କରି ଚାଲିଛି।

ଅନୀଲ ଗେରୁଆ ଲୁଗା ପିନ୍ଧେ ନାହିଁ କି ରୁଦ୍ରାକ୍ଷ ଧରି ଘୁରି ବୁଲେ ନାହିଁ। କିନ୍ତୁ ସବୁବେଳେ ଦେହରେ ମଣ୍ଡ ଦିଆ ହୋଇ ଇସ୍ତ୍ରୀ କରାଯାଇଥିବା ଧଳା ପାଇଜାମା, ପଞ୍ଜାବୀ। ମୁଣ୍ଡରେ ପ୍ରାୟ ଚାୟନେବା ଭଳି ଛୋଟ ଛୋଟ ବାଳ। ବେକରେ ସରୁ ତୁଳସୀ ମାଳିଟିଏ। ତା'ର ଲୁଗାପଟାରୁ ମାଦକଭରା ବିଦେଶୀ କୋଲନ୍‌ର ବାସ୍ନା ବାହାରେ ନାହିଁ। ବରଂ ପୂଜା ଘରର ସ୍ନିଗ୍ଧ ଧୂପ ବାସ୍ନା ତା' ଆଖପାଖରେ ଖେଳାଇ ହୋଇପଡେ।

ତଥାପି....

ରାତିରେ ରୋଷେଇ କରିବାବେଳେ ସୁଜାତାର ମନ ସେଦିନ କାହିଁ କେଉଁଠିକି ଚାଲି ଯାଇଥିଲା। ତା' ମନ ତଳେ ଉଙ୍କିମାରିଥିଲା ଅସଂଖ୍ୟ ପ୍ରଶ୍ନ। ଇଚ୍ଛା ହେଉଥିଲା ଧାଇଁଯାଇ ଇନ୍ଦ୍ରାଣୀ ସାମ୍ନାରେ ରଖିଦେବ ସେସବୁକୁ।

ହେଲେ ତା' ଆଉ ହେଲା ନାହିଁ। ଅନ୍ତତଃ ପରବର୍ତ୍ତୀ ପଚିଶ ଦିନ ଆଉ ହୋଇ ପାରିଲା ନାହିଁ। ପୁଅ ପିନାକୀ ସେଇଦିନ ବ୍ୟାଙ୍କ୍‌ରୁ ଶହେ ତିନି ଜର ନେଇ ଫେରିଲା। ପରଦିନ ସକାଳକୁ ତା' ଦେହ ସାରା ହାଡଫୁଟିର ଚିହ୍ନ ପରିଷ୍କାର ରୂପେ ଫୁଟି ସାରିଥିଲା। ସୁଜାତା ଓ ପରିତୋଷ ବ୍ୟତିବ୍ୟସ୍ତ ହୋଇ ପଡିଥିଲେ। ରୋଗଟି ଯେ ଏତେ ଭୟଙ୍କର ହୋଇପାରେ ସେ ଧାରଣା ତାଙ୍କର

ନଥିଲା । ଶେଷରେ ଡାକ୍ତରଙ୍କୁ ଡାକିବାକୁ ପଡିଥିଲା । ସେ କହିଥିଲେ ଯେ ବର୍ତ୍ତମାନଙ୍କୁ ହାଡଫୁଟି ହେଲେ ଏଇଭଳି ହୋଇଯିବାର ସମ୍ଭାବନା ରହେ। ତେବେ ଭୟର କିଛି ନାହିଁ। ଧୈର୍ଯ୍ୟର ସହ କେବଳ ଯତ୍ନ କରିଯିବାକୁ ହେବ।

ସୁଜାତା ସବୁ କରିଥିଲା । ନିଜର ସମସ୍ତ କାମକୁ ଆଡେଇ ଦେଇ କେବଳ ପିନାକୀର ଯତ୍ନ କରି ଚାଲିଥିଲା ।

ଥରେ ଖବର ନେବାକୁ ଇନ୍ଦ୍ରାଣୀ ଆସିଥିଲା । ତାକୁ ସଦର ଦରଜା ପାର ହେବାକୁ ଦେଇ ନଥିଲା ସୁଜାତା । କ'ଣ ଦରକାର ? ଡିଆଁ ରୋଗ । ପୁଣି ତା'ର ଛୋଟ ଝିଅ । କବାଟ ପାଖରୁ ହିଁ ଇନ୍ଦ୍ରାଣୀ ଫେରି ଯାଇଥିଲା । ତା'ପରେ ଆଉ ତା'ର ଖବର କିଛି ରଖି ପାରିନି ସୁଜାତା ।

ଯେଉଁଦିନ ସଂପୂର୍ଣ୍ଣ ସୁସ୍ଥ ହୋଇ ପିନାକୀ ବ୍ୟାଙ୍କ୍‌ରେ ଜଏନ୍ କଲା, ସେଦିନ ସୁଜାତାର ପାଦ ଦି'ଟା ଅସ୍ଥିର ହୋଇପଡିଲା । ଘରକାମ ତରବର ହୋଇ ଶେଷ କରିଦେଇ ପିନାକୀର ବିଛଣା ପତ୍ର ଖରାରେ ମେଲାଇ ଦେଇ ସେ ଇନ୍ଦ୍ରାଣୀ ଘରକୁ ବାହାରି ପଡିଲା ।

କଲିଂବେଲ୍ ଶବ୍ଦରେ ନିଜେ କବାଟ ଖୋଲିଲା ଇନ୍ଦ୍ରାଣୀ ।

ହସ ହସ ମୁହଁରେ ସୁଜାତା କ'ଣ କହିବାକୁ ଯାଉଥିଲା, କିନ୍ତୁ ଇନ୍ଦ୍ରାଣୀର ମୁହଁ ଦେଖି ଚୁପ୍ ହୋଇଗଲା, ଏ କି ଚେହେରା ହୋଇଛି ତା'ର ? ଲାଲ୍ ଲାଲ୍ ଆଖିତଳେ କଳା ଦାଗ । ଶୁଖିଲା ମୁହଁ, ବାଳରେ ପାନିଆ ବାଜିନାହିଁ। ଦେହରେ ଏ ପର୍ଯ୍ୟନ୍ତ ରାତିର ନାଇଟ୍ ଗାଉନ୍ !

''ଦେହ ଭଲ ନାହିଁ କି ଇନ୍ଦ୍ରାଣୀ ? ଏ କି ଚେହେରା କରି ରଖିଛ ?'' ସୁଜାତାକୁ ଭାରି ଖରାପ ଲାଗୁଥିଲା । ଇସ୍- ସେ ପୁଅର ଯତ୍ନ ନେବାରେ ଏତେ ବେଶୀ ମଜ୍ଜିଗଲା ଯେ ଏକମାତ୍ର ପଡୋଶିନୀଟିର ଖବର ଅନ୍ତର ଟିକିଏ ରଖି ପାରିଲା ନାହିଁ।

''ଆରେ ନାଇଁ ମ, କିଛି ହୋଇନି। ଭିତରକୁ ଆସ ।'' ଓଠରେ ସାମାନ୍ୟ ହସ ଖେଳାଇବାର ଚେଷ୍ଟା କଲା ଇନ୍ଦ୍ରାଣୀ, ''ଆଜି ଏ ପର୍ଯ୍ୟନ୍ତ ଗାଧୋଇନି ତ, ସେଇଥି ପାଇଁ...''

ଦିନ ଦୁଇଟା ବାଜିବ, ଅଥଚ ଇନ୍ଦ୍ରାଣୀ ଗାଧୋଇ ନାହିଁ? ଯିଏ ସକାଳୁ ଗାଧୁଆ ଶେଷ କରି, ସୁନ୍ଦର ପୋଷାକ ପିନ୍ଧି, ହାଲୁକା ପ୍ରସାଧାନ କରି ପୃଥିବୀକୁ

ତା'ର ସୁନ୍ଦର ମୁହଁଟିକୁ ଦେଖାଏ, ସେ ପୁଣି ଏ ପର୍ଯ୍ୟନ୍ତ ଗାଧୋଇ ନାହିଁ!

ସୁଜାତାକୁ ଅବାକ୍ ଲାଗିଲା, କିନ୍ତୁ ଇନ୍ଦ୍ରାଣୀ ତାକୁ କିଛି କହିବାକୁ ଦେଲା ନାହିଁ। "ତୁମେ ବସି ଏଇ ପତ୍ରିକା ସବୁ ଓଲଟାଉ ଥାଅ। ମୁଁ ଚଟ୍ କରି ଗାଧୋଇ ଆସୁଛି। ତା'ପରେ ଗପିବା।"

ଦୁଇ ଚାରିଟା ପତ୍ରିକା ସୁଜାତା ସାମ୍ନାରେ ରଖିଦେଇ ତରବର ହୋଇ ଭିତରକୁ ଚାଲିଗଲା ସେ।

ସୁଜାତା ପତ୍ରିକାରେ ହାତ ଦେଲା। ଧେତ୍- ସବୁଗୁଡାକ ସିନେମା ପତ୍ରିକା। ସୁଜାତାର କୌଣସି ଦିନ ସିନେମାରେ ଆଗ୍ରହ ନ ଥିଲା, ଏବେ ମଧ ନାହିଁ। ତା'ଛଡା କିଏ କାହାକୁ ପ୍ରେମ କଲା, କେଉଁ ତାରକାର ଭାଇ ବାଡିଆପିଟା କରି ଜେଲ୍ ଗଲା- ଏ ସବୁରେ ତା'ର କ'ଣ ଯାଏ ଆସେ? କେମିତି ଯେ ଅନ୍ୟମାନେ ଏସବୁ ନିୟମିତ ଭାବରେ ପଢନ୍ତି!

ସୁଜାତା ଚୌକୀରୁ ଉଠି ଆଲମାରୀ ପାଖକୁ ଚାଲିଗଲା। ପାଇନ୍ କାଠରେ ତିଆରି ଆଧୁନିକ ଡିଜାଇନ୍‌ର ଖୋଲା ଆଲମାରୀ। ମୋଟା ଟିଣ୍ଟେଡ୍ କାଚରେ ଥାକଗୁଡ଼ିକ ତିଆରି ହୋଇଛି ଏବଂ ପ୍ରତିଟି ଥାକରେ ରହିଛି ଆଖି ଲାଖି ରହିବା ଭଳି ଘର ସଜାର ଜିନିଷଗୁଡ଼ିକ। ମଝି ଥାକରେ ରଖା ହୋଇଥିବା ଲଗାର ଛୋଟ ବେଳର ଫଟୋଗୁଡ଼ିକ ନିକଟକୁ ସୁଜାତା ଆଗେଇଗଲା। ବାଃ- ଅତି ଚମତ୍କାର ଫଟୋ ତ! ଆଗରୁ ଏଠି ନ ଥିଲା। ବୋଧହୁଏ ଏହା ଭିତରେ ଇନ୍ଦ୍ରାଣୀ ଏସବୁ ଆଲବମ୍‌ରୁ କାଢି ସୁନ୍ଦର ଫ୍ରେମ୍‌ରେ ସଜାଇ ରଖିଛି। ଗୋଟିଏ ଫଟୋ ଫ୍ରେମ୍ ଉଠେଇ ଆଣିଲା ସୁଜାତା।

ହଠାତ୍ ତା' ତଳେ ରଖା ହୋଇଥିବା କ'ଣ ଗୋଟିଏ ଜିନିଷ ତଳେ ପଡିଗଲା। କାର୍ଡ୍‌ଟିଏ। ସାମାନ୍ୟ ଅପ୍ରତିଭ ଭାବରେ ସେଇଟିକୁ ତଳୁ ଉଠେଇ ଆଣି ଥାକରେ ରଖିଦେବାବେଳେ ଅଜାଣତରେ ସୁଜାତା କାର୍ଡଟିକୁ ଖୋଲି ଦେଲା। ଇନ୍ଦ୍ରାଣୀର ବଡ ଭଉଣୀ ପଠେଇଛନ୍ତି। ଆନିଭର୍ସାରୀ କାର୍ଡ। ତାରିଖଟି ଉପରେ ଆଖି ବୁଲେଇ ନେଇ ସୁଜାତା ଟିକିଏ ଆଶ୍ଚର୍ଯ୍ୟ ହେଲା। ଆରେ, ଗତକାଲି ତାହେଲେ ଇନ୍ଦ୍ରାଣୀ, ଅନୀଲଙ୍କର ବିବାହ-ବାର୍ଷିକୀ ଥିଲା?

ହଁ ସତ କଥା ତ, ଇନ୍ଦ୍ରାଣୀ କେତେଥର ଗପୁ ଗପୁ କହିଥିବ। ପନ୍ଦର ସେପ୍ଟେମ୍ବର, କେମିତି ଯେ ସୁଜାତା ଭୁଲିଗଲା!

''ଲରାର ଫଟୋ ଦେଖୁଛ?'' ହାତରେ ଦୁଇ କପ୍ କଫି ଧରି ଗୋଲାପୀ ରଙ୍ଗର ସୁନ୍ଦର ସାଲୁଆର କମିଜଟିଏ ପିନ୍ଧି ଭିତରକୁ ପଶି ଆସିଥିଲା ଇନ୍ଦ୍ରାଣୀ।

କାର୍ଡ ଓ ଫଟୋକୁ ଯଥା ସ୍ଥାନରେ ରଖିଦେଇ ସୁଜାତା କହିଲା, ''ଗତକାଲି ତୁମ ଆନିଭର୍ସାରୀ ଥିଲା ଇନ୍ଦ୍ରାଣୀ?''

ଇନ୍ଦ୍ରାଣୀ ମୁହଁର ସବୁତକ ଉଜ୍ଜ୍ୱଳତା ପୋଛି ହୋଇଗଲା ଯେମିତି। ''ହଁ ଥିଲା ତ।''

''ଦେଖ ତ ମୁଁ କି ଭୋଳା। ଏଇ ସେଦିନ ଯାଏ ମନେଥିଲା। ଅଥଚ... ମେନି ହାପି ରିଟର୍ନସ୍। ମୁଁ ଏମିତି ଭୁଲିଗଲି ବୋଲି ତୁମେ କିଛି ମନେ କରିବନି।''

ଫୁତ୍କାରରେ ଉଡ଼େଇ ଦେବାଭଳି ଇନ୍ଦ୍ରାଣୀର ଓଠ କଣ ଟିକିଏ ଉପରକୁ ଉଠିଗଲା। ସେ କିଛି କହିଲା ନାହିଁ। ତା' ଆଖିର ବୀତସ୍ପୃହ ଭାବ ସୁଜାତାକୁ ଯେମିତି ଆଉ ଟିକିଏ ଦୋଷୀ କରେଇଦେଲା।

''ମୁଁ ଭୁଲିଗଲି ବୋଲି ତୁମେ କିଛି ମନେ କରିନ ତ ଇନ୍ଦ୍ରାଣୀ?'' ସେ ଆଉଥରେ ପଚାରିଦେଲା।

ଏଥର ଇନ୍ଦ୍ରାଣୀ ପାଟି ଖୋଲିଲା, ''ଆରେ ଯାଃ- ଏଇଟା ଗୋଟିଏ କଥା ହେଲା! ତୁମେ ଯେ ଭୁଲିଗଲ, ସେଥିପାଇଁ ମୁଁ ପୁଣି କିଛି ମନେ କରିବି? ପିନାକୀର ଯତ୍ନ କରିବା ଭିତରେ ଏଇ ଛୋଟ କଥାଟା କେମିତି ମନେ ରଖିଥାଆନ୍ତ?''

ହଠାତ୍ ଦୁଇ ଆଖି ଉଛୁଳି ଲୁହ ଗଡିଆସିଲା ତା'ର। ଭଙ୍ଗା ଗଳାରେ କହିଲା, ''ଯାହାର ନିହାତି ମନେ ରଖିବା କଥା, ସେ ଯେତେବେଳେ ଜାଣି ଜାଣି ଭୁଲିଯାଉଛି, ଆଉ ମୁଁ ଅନ୍ୟମାନଙ୍କୁ କ'ଣ କହିବି?''

କାହା କଥା କହୁଛି ଇନ୍ଦ୍ରାଣୀ? ଅନୀଲ? ଅନୀଲ ତେବେ ବିବାହ ବାର୍ଷିକୀ ଦିନଟିକୁ ଭୁଲିଗଲା? ଓହୋ, ଏଇଥିପାଇଁ ତେବେ ଏତେ ଅଭିମାନ। ଦିନ ଦୁଇଟା ଯାଏ ଶୁଖିଲା ମୁହଁ ନେଇ ତେବେ ଏଇଥିପାଇଁ ବସି ରହିଛନ୍ତି ମହାରାଣୀ!

ଇନ୍ଦ୍ରାଣୀ ଆଖିର ଲୁହ ପୋଛିଦେଇ ସୁଜାତା କହିଲା, ''ଏଇ କଥା ପାଇଁ ତେବେ ଏଇମିତି ଚେହେରା କରି ବସିଛ? ଆରେ, ଏମିତି ବେଳେ ବେଳେ ହୋଇଯାଏ। ଅନୀଲଙ୍କର କାନ ଧରି ସିନା ମନେ ପକାଇ ଦେଇଥାଆନ୍ତ! ବାହାଘରର ଆଠବର୍ଷ ପରେ ଏମିତି ଅଭିମାନ କଲେ ଚଳିବ?''

ଇନ୍ଦ୍ରାଣୀର କାନ୍ଦୁରା ଆଖି ଦିଓଟି ସ୍ତବ୍ଧ ହୋଇଗଲା ଯେମିତି ମୁହୂର୍ତ୍ତକ

ପାଇଁ। ଦୁଃଖର ହସଟିଏ ତା' ଓଠରେ ଖେଳିଗଲା। ''କ'ଣ ତୁମେ ଜାଣ ? କ'ଣ ବା ତୁମକୁ ମୁଁ କହିବି ?''

କ୍ଷଣେ ଚୁପ୍ ରହି ସେ ପୁଣି କହିଲା, ''ତୁମେ କହୁଛ ଅନୀଲଙ୍କୁ ମୁଁ ଏକଥା ମନେ ପକାଇ ଦେଲିନି କାହିଁକି। ଯିଏ ଭୁଲିଯାଏ, ତାକୁ ସିନା ମନେ ପକାଇ ଦେବାକୁ ହୁଏ। କିନ୍ତୁ ଯାହାର ସବୁ ମନେଥାଏ ଏବଂ ଯିଏ ମନେ କରେ ଯେ ଏହି ଦିନଟି ଅନ୍ୟ ଦିନମାନଙ୍କ ଭଳି ସାଧାରଣ, ଏହାର କୌଣସି ବିଶେଷତ୍ୱ ହିଁ ନାହିଁ, ତାକୁ କ'ଣ କୁହାଯାଇପାରେ ?''

ଅନୀଲ ଭଳି ମଣିଷ ପୁଣି ଏଭଳି କରିପାରେ ? ସୁଚାତାର ବିଶ୍ୱାସ ହେଉ ନଥିଲା। ତା' ମନ କଥା ପଢିନେବା ଭଳି ଇନ୍ଦ୍ରାଣୀ କହିଲା, ''ମୁଁ ଜାଣେ, ତୁମର ବିଶ୍ୱାସ ହେଉ ନାହିଁ। ତୁମେ କାହିଁକି, ବାହାରର ଆଉ କେହି ମଧ୍ୟ ଏସବୁ କଥା ଅନୁମାନ କରି ପାରିବ ନାହିଁ। ଜାଣ, ଅନୀଲ ନିଜକୁ ମୋହମାୟାମୁକ୍ତ ବୋଲି ମନେ କରନ୍ତି। ସବୁ ଭିତରେ ରହି ମଧ୍ୟ ସବୁଥିରେ ନିସ୍ପୃହ। ବ୍ୟବସାୟ କରିବା, ସାମାଜିକ ଉତ୍ସବରେ ଯୋଗ ଦେବା- ଏସବୁ ତ କର୍ତ୍ତବ୍ୟ। ତେଣୁ କରିବାକୁ ହେବ। ସେଇ କର୍ତ୍ତବ୍ୟର ପର୍ଯ୍ୟାୟରେ ପଡେ ସ୍ତ୍ରୀ ପାଇଁ ଶାଢୀ ଗହଣା କିଣିବା, ଝିଅ ପାଇଁ ଖେଳନା, ଚକ୍‌ଲେଟ୍ ଆଣିବା। କିନ୍ତୁ ସ୍ତ୍ରୀକୁ ଭଲ ପାଇବା, ଆଦର କରିବା- ଏସବୁ କ'ଣ କର୍ତ୍ତବ୍ୟ ? ଏସବୁ ଯେ ନିଛକ ମୋହ, ଲାଳସା !''

ଏତେଦିନ କେବଳ ନିଜ ଭିତରେ ଏସବୁ ଇନ୍ଦ୍ରାଣୀ ଚାପି ରଖିଥିଲା। ଆଜି ଯେମିତି ସବୁ କହି ମନ ପରିଷ୍କାର କରିଦେବ, ହାଲୁକା କରିଦେବ ତା' ହୃଦୟକୁ। ଆଖିରୁ ଲୁହ ପୋଛି ନେଇ ଇନ୍ଦ୍ରାଣୀ ପୁଣି କହି ଚାଲିଲା, ''କାଲି ସାରା ଦିନ ଅପେକ୍ଷା କରି ରହିଲି। କେତେବେଳେ ଅନୀଲଙ୍କର ଦିନଟି ବିଷୟରେ ମନେପଡିବ। ରାତିରେ ଆଉ ରହିପାରିଲି ନାହିଁ, ଅତି ନିଜର କରି ଯେତେବେଳେ ମନେ ପକେଇ ଦେଲି, ସେ କ'ଣ କହିଲେ ଜାଣ ? କହିଲେ, 'ମୁଁ ତ ଜାଣିଛି ଆଠ ବର୍ଷ ତଳେ ଏଇ ତାରିଖରେ ଆମ ବାହାଘର ହୋଇଥିଲା। କିନ୍ତୁ ସେଇ ଦିନକୁ ମନେ ପକାଇ ବିଗଳିତ ହେଉଛ କାହିଁକି ? ନିଜକୁ ଏ କାମନା, ଏ ମାୟାରୁ ମୁକ୍ତ କର, ତେବେ ଯାଇ ପ୍ରକୃତ ଆନନ୍ଦ ପାଇପାରିବ।' ତା'ପରେ କ'ଣ ସବୁ ଶ୍ଳୋକ ବୋଲିବା ଆରମ୍ଭ କରିଦେଇଥିଲେ।''

ଇନ୍ଦ୍ରାଣୀର ପଦ୍ମ ପାଖୁଡ଼ା ଭଳି ଆଖି ଦିଓଟିରେ ଲୁହ ଟଳମଳ କରୁଥିଲା। ସୁନ୍ଦର ଗୋଲାପୀ ଓଠ ଦିଓଟି ବାରମ୍ବାର ଥରି ଉଠୁଥିଲା। ମସୃଣ ଦୁଇ ଗାଲରେ ଛାପି ହୋଇଥିଲା ଲୁହର ଦାଗ।

‘‘ମୁଁ ବହୁତ ଭାବିଛି। ଏଇ ସବୁ ଚିନ୍ତା କରି କରି କେତେ ରାତି ଅନିଦ୍ରାରେ କଟେଇ ଦେଇଛି। ମୁଁ ଜାଣେ, ଅନୀଲ ଦୀକ୍ଷା ନେବା ପରେ ଶାଶୁ ଶ୍ୱଶୁର ସ୍ୱସ୍ତିର ନିଶ୍ୱାସ ନେଇଛନ୍ତି। ମୋ ମା’ ବାପାଙ୍କର ଚିନ୍ତା ଦୂର ହୋଇଛି। କିନ୍ତୁ ମୋ କଥା କିଏ ଭାବି ଦେଖିଛି? ମୋର ତ ମନେ ହୁଏ, ବରଂ ସେଇ ଆଗର ଦିନ ସବୁ ଭଲ ଥିଲା। ଅନୀଲ ହୁଏତ ଏକଚାଟିଆ ମୋର ନ ଥିଲେ। ତାଙ୍କୁ ଆଉ କାହା କାହା ସହିତ ଭାଗ କରିବାକୁ ହେଉଥିଲା। କିନ୍ତୁ ସେଇ ‘ଭାଗର ଅନୀଲ’ ‘ବିନା ଅନୀଲ’ଠାରୁ ବହୁତ ଗୁଣରେ ଭଲ। ତୁମେ କୁହ, ଅନୀଲ ସାମାଜିକ ଦୃଷ୍ଟିରେ ଅତି ଭଲ ହୋଇଯିବାରେ ମୋର କ’ଣ ଲାଭ ହେଲା?’’

ନିଜର ଦୁଇ ହାତକୁ କୋଳରେ ରଖି କେବଳ ଚୁପ୍ ହୋଇ ବସିଥିଲା ସୁଜାତା। ଇନ୍ଦ୍ରାଣୀର ସେଇ ଶେଷ ପ୍ରଶ୍ନଟିର ଉତ୍ତର ତା’ ନିକଟରେ ନ ଥିଲା।
□□

# ପ୍ରତିଚିତ୍ର

କବାଟ ଖୋଲି ଦେଇ ଅବାକ୍ ହୋଇଗଲା ମାନସୀ।

''ବିଜି ? ଏମିତି ହଠାତ୍ ହାଇଦ୍ରାବାଦରୁ ଚାଲି ଆସିଲ ? ତୁମର ପରା ଗୋଆ ଯିବାର ଥିଲା ? ଏକା ନା ମନୋଜ ଆସିଛନ୍ତି ସାଙ୍ଗରେ ?''

ଥମ ଥମ ମୁହଁଟାକୁ ଆଉ ଟିକିଏ ଭାରୀ କରିନେଇ ବିଜୟା ଦୁମ ଦୁମ ହୋଇ ଘର ଭିତରକୁ ପଶିଗଲା। ''କ'ଣ ସବୁତକ ପ୍ରଶ୍ନ ଦାଣ୍ଡ ଦୁଆର ପାଖରେ ପଚାରିଦେବ, ଭାଉଜ ?''

ଛୋଟ ସୁଟକେଶଟା ଧରି କବାଟ ପାଖରେ ମୁହଁ ଦେଖାଇଲା ମନୋଜ, ''ଭଲ ଅଛନ୍ତି ଭାଉଜ ? ଯେ ବିଜିକୁ ଆଉ ପାରି ହେଲା ନାହିଁ। ରିକ୍ସାରୁ ଓହ୍ଲେଇ ସିଡ଼ି ଚଢ଼ି ଏଠି ହାଜର । ମୁଁ ସୁଟ୍‌କେଶଟା କାଢ଼ିବା ପର୍ଯ୍ୟନ୍ତ ଅପେକ୍ଷା କରି ପାରିଲା ନାହିଁ।''

''କାଇଁ, ବାଟବଣା ହୋଇଗଲ କି ?'' ଭିତରୁ ଚଢ଼ା ସ୍ୱରରେ କହି ଉଠିଲା ବିଜୟା।

''ଆରେ ବାପ୍‌ରେ ବାପ୍, ବାଟବଣା ହେବାର ଜୁଃ ଅଛି ? ଶଳାଘର ବୋଲି କଥା। ସାରା ଦୁନିଆ ଯଦି ଗୋଟିଏ ପଟେ ରହେ, ଜୋରୁ କା ଭାଇ ଅନ୍ୟ ପଟେ।''

''ଥାଉ ଥାଉ, ଏତେ ତେଲ ନ ଲଗେଇଲେ ବି ଚଳିବ।... ବୋଉ କାହିଁ ଭାଉଜ? ଭାଇନା କ'ଣ ଅଫିସ୍‌ରେ?''

''ବୋଉଙ୍କୁ ନେଇ ପରା ତୁମ ଭାଇନା ପୁରୀ ଯାଇଛନ୍ତି। ରବି ମଉସାଙ୍କ ଝିଅ ବାହାଘର ଆଜି। କାଲି ସକାଳେ ଝିଅ ବିଦା ପରେ ଫେରିବେ।''

ଏତେଦିନ ପରେ ବାପ ଘରକୁ ଆସି ବୋଉ କି ଭାଇ କାହାକୁ ନ ଦେଖି ବିଜୟାକୁ ଟିକିଏ ଖରାପ ଲାଗୁଥିଲା। ହଉ ହେଲା, ଭାଉଜ ତ ଅଛନ୍ତି!

ମାନସୀ କହି ପକେଇଲା, ''ଚିଠି ନ ଦେଇ, ଫୋନ୍ ନ କରି କିଏ ଏମିତି ଦୁମ୍‌ଦାମ୍ ଏତେ ବାଟ ଆସେ? ଜାଣିଛ, ମୋର ବି ପୁରୀ ଯିବାର ଥିଲା। ଖାଲି ବାପିର ପରୀକ୍ଷା ଅଛି ବୋଲି ରହିଗଲି। ମୁଁ ଯଦି ପଳେଇ ଥାଆନ୍ତି, କି ହଇରାଣ ହୋଇଥାଆନ୍ତ କହିଲ।''

''ହଇରାଣ କ'ଣ? ଭୁବନେଶ୍ୱର କ'ଣ ଅଜଣା ଜାଗା କି ମୋ ପାଇଁ?'' ବିଜୟା ଚଟ୍‌ପଟ୍ ଉତ୍ତର ଦେଲା।

ସୋଫା ଉପରେ ବସିପଡି ମନୋଜ କହିଲା, ''ପାଣି ଗିଲାସେ ଦେବେ ଭାଉଜ?''

''ଦେଉଛି।...ଚାହା ପିଇବ?'' ମାନସୀ ରୋଷେଇ ଘର ଆଡକୁ ଯାଉ ଯାଉ ପଚାରିଦେଲା।

''ନା, ବେଳ ହବନି। ରିକ୍ସାକୁ ଅଟକେଇ ରଖିଛି।''

ଭିତରୁ ପାଣି ଗ୍ଲାସେ ଆଣି ମନୋଜ ହାତରେ ଧରେଇ ଦେଲା ମାନସୀ। ପାଖ ସୋଫାରେ ବସି ପଡି କହିଲା, ''କ'ଣ ତୁମର ଏତେ ତରତର ଶୁଣେ। ଏଇ ତ ଆସିଲ, ପୁଣି ଚାହା ନ ପିଇ ବାହାରୁଛ?''

''ତାଙ୍କୁ କିଛି ପଚାରନି ଭାଉଜ।'' ଘର ଭିତରୁ ପାଟି କରି ଉଠିଲା ବିଜୟା, ''ବ୍ୟସ୍ତ ମଣିଷ ସେ। ଆମ ଭଳି ସାଧାରଣ ମଣିଷମାନଙ୍କ ସାଙ୍ଗରେ କଥା କହିବାକୁ ତାଙ୍କର କ'ଣ ବେଳ ଅଛି?''

ମନୋଜ ଆଡେ ଚାହିଁ ମାନସୀ ହସିଲା, ''ଆଜି ମହାରାଣୀଙ୍କର ମିଜାଜ ତ ଯାଇ କ'ଣ ଆକାଶ ଛୁଇଁଲାଣି।''

''କ'ଣ କରିବି ଭାଉଜ, ବିଜି ତ କିଛି ବୁଝୁନି।'' ସାମାନ୍ୟ ଦୁଃଖିତ ଭାବରେ ମନୋଜ କହିଲା।

ରଣଚଣ୍ଡୀ ରୂପ ଧାରଣ କରି ବିଜୟା ବାହାରି ଆସିଲା, ''ସତେ? ମୁଁ କିଛି ବୁଝୁନି! ଥାଉ ଥାଉ, ଏତେ ଭଲଲୋକୀ ନ ଦେଖେଇଲେ ବି ଚଳିବ। ଭାଉଜ, ମୋ ଠୁଁ ଶୁଣ ସବୁ କଥା। ଆମର ତ ଗୋଆ ଯିବାର ଥିଲା ତୁମକୁ ମୁଁ ଲେଖିଥିଲି। ପଅରଦିନ ହସ୍‌ପିଟାଲ୍‌ରୁ ଫେରି ଯେ ମତେ କହିଲେ ଯେ ସବୁ ପ୍ରୋଗ୍ରାମ ବନ୍ଦ। ତାଙ୍କୁ କଲିକତା ଯିବାକୁ ହେବ। କି ଜାଣ ସେମିନାର ହେଉଛି। ତାଙ୍କ ପ୍ରଫେସରଙ୍କର ଯିବାର ଥିଲା। ସେ ହଠାତ୍ ଅସୁସ୍ଥ ହୋଇ ପଡିଛନ୍ତି, ତେଣୁ ଯେ ବାବୁ ଯିବେ। ଏଣେ ମୋର ପ୍ୟାକିଙ୍ଗ୍ ଶେଷ। ଯିବାର ସବୁ ଆୟୋଜନ ସରିଛି।''

''ଆଃ, ତୁମେ ବୁଝୁନ ବିଜି। ଏଇ ସେମିନାରରେ ବିଦେଶରୁ କେତେ ସିନିୟର୍ ଡାକ୍ତର ଆସୁଛନ୍ତି। ଆଜେଣ୍ଡା କେବେଠାରୁ ଛପା ସରିଛି। ସେ କ୍ଷେତ୍ରରେ ଯଦି ପ୍ରଫେସରଙ୍କର ପେପର୍‌ଟା ପଢା ନ ହୁଏ, ତେବେ କେତେ ବଡ ଅପମାନ କହିଲ!'' ଆଗରୁ ବହୁତଥର ବୁଝେଇ ସାରିଥିଲେ ବି ପୁଣି ମନୋଜ ବୁଝାଇଲା।

''ହଉ, ଆଉ ସଫେଇ ଦିଅ ନାହିଁ। ଗତ ଦୁଇବର୍ଷ ଭିତରେ ମୁଁ ବହୁତ ଦେଖିଲିଣି, ଶୁଣିଲିଣି। ତୁମ ଛଡା ମେଡିକାଲ କଲେଜରେ ଆଉ କେହି ଡାକ୍ତର ନାହାନ୍ତି ଯେମିତି!''

ମାନସୀ ଆଉ ଚୁପ୍ ହୋଇ ରହିପାରିଲା ନାହିଁ। ''ଏଇ ବିଜି, ଗଲ ଭିତରକୁ। ଯାଇ ଆଗ ମୁହଁ ହାତ ଧୋଇ ଆସ। ପରେ ଚାହା ପିଇ ଗାଧୁଆ ପାଧୁଆ କରିବ।''

ବିଜୟା ଭିତରକୁ ଚାଲିଗଲା।

ସେଇ ଆଡକୁ ଚାହିଁ ଦୀର୍ଘନିଶ୍ବାସ ନେଲା ମନୋଜ, ''ଦେଖୁଛନ୍ତି ତ ଭାଉଜ! ଏଇଟା କେତେବଡ ସମ୍ମାନର କଥା ମୋ ପାଇଁ। ଟିକିଏ ହେଲେ ବୁଝନ୍ତା ବିଜି! କେତେ ବୁଝେଇଲିଣି। ମାତ୍ର ତିନିଦିନ କଥା। ଫେରି ଆସିଲେ ଆମେ ନହେଲେ ମହାବଳୀପୁରମ୍, ମାଡ୍ରାସ ଯିବା। ଗୋଆ ତ ଆଉ ସମ୍ଭବ ହେବ ନାହିଁ, ଅଥଚ ତା'ର ଏକା ଜିଦ୍- କୁଆଡେ ଯିବି ନାହିଁ, ମତେ ବୋଉ ପାଖରେ ଛାଡି ଦେଇ ଆସ।''

ବାଥ୍‌ରୁମ୍ ଭିତରେ ଥିଲେ ମଧ୍ୟ ବିଜୟା କାନରେ ଏ କଥା ପଡିଲା। ସାବୁନ ଲଗା ମୁହଁରେ ଧଡ୍ କରି କବାଟ ଖୋଲି ଦେଇ ତିକ୍ତ ଭାବରେ

କହି ପକେଇଲା, "ଥାଉ ଥାଉ, ସେତକ ଦୟା ନ କଲେ ବି ଚଳିବ। ତୁମର ଯଦି କୁଆଡେ ଯିବାର ଇଚ୍ଛା ନ ହେଉଛି ନ ଯାଅ। ସେଇ ହସ୍‌ପିଟାଲ୍, ରୋଗୀ, ଔଷଧ, ଇଂଜେକ୍‌ସନ୍ ନେଇ ପଡିରୁହ। କିନ୍ତୁ ମତେ ଦୟା ଦେଖାଇ କୁଆଡେ ଯେମିତି ନ ନେଇ ଯାଅ।"

ଶଳା ଭାଉଜଙ୍କ ସାମ୍ନାରେ ଏମିତି ପର୍ବ ସୃଷ୍ଟି କରିବାଟା ମନୋଜକୁ ଜମା ଭଲ ଲାଗୁ ନ ଥିଲା। ହେଲେ ନାଚାର ସେ। କରିବାର କିଛି ନାହିଁ। ଚୁପଚାପ୍ ସୋଫାରୁ ଉଠି ଠିଆ ହେଲା, "ମୁଁ ତେବେ ଆସୁଛି ଭାଉଜ। ଫେରୁ ଫେରୁ ଶୁକ୍ରବାର ସନ୍ଧ୍ୟା ହୋଇଯିବ।"

ବିଜି କାନ୍ଧରେ ପଡିଥିବା ତଉଲିଆରେ ସାବୁନ ଟକ ପୋଛି ନେଇ ଅଣ୍ଟାରେ ହାତ ଦେଇ ଠିଆ ହୋଇଥିଲା ସେମିତି।

"ଯାଅ ବିଜି, ମନୋଜଙ୍କୁ ଟିକେ ଛାଡି ଦେଇ ଆସ।"

"ଆଃ, କ'ଣ କହୁଛ ଭାଉଜ? ପାଦର ବେନ୍ଦିକୁ ସେ କୋହଳ କରିବାକୁ ଚେଷ୍ଟା କରୁଛନ୍ତି। ତୁମେ ପୁଣି କଷି ଦେଉଛ?" କଟା କଟା କରି କଥାଟା କହିଲା ସିନା ବିଜୟା, କିନ୍ତୁ ତା' ସ୍ୱରରେ ପୂର୍ବର ଚାପା କ୍ରୋଧ ଆଉ ନ ଥିଲା।

ଅଧିକା ଯୁକ୍ତି ତର୍କ ନ କରି ସେ ମନୋଜ ପଛେ ପଛେ ବାହାରକୁ ଆସିଲା। ତା' ହାତରେ ଟିକିଏ ହାତ ଛୁଆଁଇ ନେଇ ମନୋଜ କହିଲା, "ଆସୁଛି ତେବେ। ଏଥର ପଦେ ଭଲ କଥା କୁହ। କିଛି ନ ହେଲେ ହସିଦିଅ ଟିକିଏ।"

ବିଜୟା ଏତେ ସହଜରେ ମନୋଜକୁ କ୍ଷମା ଦେବା ପାଇଁ ପ୍ରସ୍ତୁତ ନ ଥିଲା। ସେ ହସିଲା ନାହିଁ କି ଭଲରେ ପଦେ କଥା କହିଲା ନାହିଁ। କେବଳ ନୀରବ ଭାବରେ ଗେଟ୍ ପାଖରେ ଠିଆ ହୋଇ ରହିଲା।

ମନୋଜ ଚାଲିଗଲାଣି କେତେବେଳୁ। ବାହାରୁ ଫେରିଆସି ଗୁମ୍ ହୋଇ କିଛିକ୍ଷଣ ବସିବା ପରେ ବିଜୟା ମଧ୍ୟ ଗାଧୁଆ ସାରିଲାଣି। ତଥାପି ତାକୁ କିଛି ଭଲ ଲାଗୁନାହିଁ। ଘରଟା ଅସମ୍ଭବ ଭାବରେ ଶାନ୍ତ। ମାନସୀ ରୋଷେଇ ଘରେ କ'ଣ କରୁଛି। ତାକୁ ସାହାଯ୍ୟ କଲେ ହୁଅନ୍ତା। କିନ୍ତୁ ବିଜୟାର କେଉଁଥିରେ ଆଗ୍ରହ ନଥିଲା। ପଥର ମୂର୍ତ୍ତିଟିଏ ଭଳି ଆଣ୍ଠୁରେ ମୁଣ୍ଡ ଦେଇ ଖଟ ଉପରେ ବସି ରହିଥିଲା କେବଳ। ରହି ରହି ମନ ଭିତରେ ମନୋଜ ପ୍ରତି ଅଭିମାନ

ଗୁଡାକ କୁହୁଳି ଉଠୁଥିଲା ।

କେତେଦିନରୁ ଭାବି ରଖିଥିଲା ସେ। ଗୋଆରେ କ'ଣ ପିନ୍ଧିବ, କ'ଣ କରିବ, କେମିତି ବୁଲିବ। ଅଥଚ ଶେଷ ମୁହୂର୍ତ୍ତରେ ସବୁ ବନ୍ଦ! କାହିଁକି ବିଜୟା ଏତେ ଆଶା ବାନ୍ଧି ବସିଥିଲା ? ଦୁଇବର୍ଷର ବାହାଘର ଭିତରେ କୋଉ ଦିନ, କେଉଁ ଗୋଟାଏ ଦିନ ସେମାନେ ମନଖୁସିରେ ବୁଲି ପାରିଛନ୍ତି ?

ଏଇ ତ ସେଦିନ କଥା। ଦଶହରା ପାଇଁ ବଜାରକୁ ଯାଇ ନୂଆ ଶାଢୀ କିଣିବାର ଥିଲା। କିନ୍ତୁ ମନୋଜ କାହିଁ? ଅପେକ୍ଷା କରି କରି ବିଜୟାର ରାଗ ଚରମ ସୀମାରେ। ମନୋଜ ଯେତେବେଳେ ଘରକୁ ଫେରିଥିଲା, ସେତେବେଳେ ରାତି ସାଢେ ନଅ। ଦୋକାନ ବଜାର ବନ୍ଦ ହୋଇ ସାରିଥିଲା କାହିଁ କେତେବେଳୁ। କ୍ଳାନ୍ତ ଗଳାରେ ମନୋଜ କହିଥିଲା ଯେ କେଉଁ ରୋଗୀର ସର୍ଜରି ହୋଇଛି ଏବଂ ତା'ର ପରିବାରର ଉତ୍କଣ୍ଠା ଦେଖି ବାଧ ହୋଇ ତାକୁ ରହିଯିବାକୁ ହେଲା।

କେମିତି ବିଜୟା ଚୁପ୍‌ଚାପ୍ ସହି ନେଇ ଥାଆନ୍ତା ? ସେ କଠିନ ସ୍ୱରରେ କହିଥିଲା, ''ତୁମେ ସର୍ଜନ୍ ନା କାଉନ୍‌ସେଲର୍ ? ଏଣେ ଅସ୍ତ୍ରୋପଚାର କରିବ, ତେଣେ ରୋଗୀର ଆତ୍ମୀୟମାନଙ୍କୁ ଆଶ୍ୱାସନା ମଧ୍ୟ ଦେବ ? ବାଃ ! ବାଃ !''

ମନୋଜ ନରମ ଭାବରେ ସେଦିନ କହିଥିଲା, ''ଜାଣ ବିଜି, ସ୍କୁଟର୍ ଆକ୍ସିଡେଣ୍ଟରେ ଏ ଲୋକଟିର ଗୋଟିଏ ଗୋଡର ଅବସ୍ଥା ଏମିତି ହୋଇଥିଲା ଯେ କାଟି ଦେବାକୁ ହେଲା। ତା' ଉପରେ ନିର୍ଭର କରି ଚାରିଟା ପିଲା, ଗୋଟିଏ ଅପାଠୋଇ ସ୍ତ୍ରୀ ଆଉ ବୁଢା ବାପା। ସେମାନଙ୍କର ହାତର ଆଶ୍ରାବାଡି ଯେମିତି ହଜିଗଲା। ସେମାନଙ୍କୁ ଟିକିଏ ସାନ୍ତ୍ୱନା ନ ଦେଇଥିଲେ, ଭବିଷ୍ୟତରେ କାଠଗୋଡ ଲଗାଇ ଲୋକଟି ଯେ ସବୁକାମ କରିପାରିବ ସେଇ ବିଶ୍ୱାସ ନ ଦେଇଥିଲେ, କ'ଣ ଭଲ ହୋଇଥାଆନ୍ତା ?''

''ବୁଝାଉଥାଅ ସମସ୍ତଙ୍କୁ। ସମସ୍ତଙ୍କର ମନ ତଳର ଯନ୍ତ୍ରଣା ତୁମେ ବୁଝିପାର ଏକା ମୋତେ ଛାଡି।''

ତା'ପରେ କ'ଣ ହୋଇଥିଲା ? ମନୋଜ ତାକୁ ବୁଝାଇଥିଲେ ? ପରଦିନ ବଜାରକୁ ନେଇଯିବାର ପ୍ରତିଶ୍ରୁତି ଦେଇଥିଲେ ? ନା ସେ ଅଭିମାନରେ କାନ୍ଦି ପକେଇଥିଲା ?

କେଜାଣି, ଏବେ ଆଉ ସେକଥା ମନେ ପଡେନି। ଏଇମିତି ଘଟଣା ସବୁ

ଯଦି ସବୁଦିନିଆ ହୋଇଯାଏ, ତେବେ କେତେ ଆଉ ସେ ମନେ ରଖି ବସିବ ?

ବିଜୟା ଆଖି ଉପରେ ବାଁ ହାତ ପାପୁଲି ମାଡି ଦେଲା ।

ଆଃ, ବାପିଟା ସ୍କୁଲରୁ ଚାଲି ଆସନ୍ତା କି ! ତା'ହେଲେ ତାକୁ ଆଉ ଏତେ ଖରାପ ଲାଗନ୍ତା ନାହିଁ। ଘରେ ଥିଲେ ପିଉସୀ କୋଳରେ ଜମେଇ କରି ବସି ପୃଥିବୀ ଯାକର ଖବର ବଖାଣି ସାରନ୍ତାଣି ।

ମାନସୀ ରୋଷେଇ ସାରି ଆସିଲା, "ଏବେ ଖାଇବ, ବିଜି ?"

"ବାପି ଆସୁ।"

"ବାପି ତ ତିନିଟାବେଳେ ଆସିବ। ଏତେ ସମୟ କ'ଣ ଉପାସରେ ରହିବ ?"

"ଯାଉ ଆଉ ଟିକିଏ ସମୟ। ଭୋକ ନାହିଁ ଏବେ।" ଶୁଖିଲା ଭାବରେ ବିଜୟା କହିଲା।

ଗେଲବସରରେ ବଢିଥିବା ନଣନ୍ଦକୁ ମାନସୀ କିଛି ସମୟ ଦେଖିଲା। ଚାରି ଭାଇରେ ଗୋଟିଏ ବୋଲି ସାନ ଭଉଣୀ। ସେଥିପାଇଁ ସମସ୍ତେ ଗେହ୍ଲେଇ ବେଶୀ ଏକବାଗିଆ କରି ଦେଇଛନ୍ତି। ଆଜି ମନୋଜ ସାଙ୍ଗରେ ସେ ଯେଉଁଭଳି କଥାବାର୍ତ୍ତା କରିଲା, ସେଇଟା କ'ଣ ଭଲ ହେଲା ?

"ବିଜି ଉଠ। ଆଉ ମନ ଖରାପ କରନି। ତୁମେ ଯେଉଁ କଥା ନେଇ ଏତେ ମନ ଖରାପ କରୁଛ, ସେଇଟା ନିହାତି ସାମାନ୍ୟ ଘଟଣାଟାଏ। ଏବେ ସିନା ଏମିତି ବିରାଟ ବୋଲି ମନେ ହେଉଛି।"

"ସାମାନ୍ୟ ଘଟଣା ? କେମିତି ଏ କଥା କହୁଛ ଭାଉଜ ? ଯେଉଁ ମଣିଷଟି ଭାବିପାରୁନି ଯେ ହସ୍‌ପିଟାଲ୍ ଓ ମେଡିକାଲ୍ ସାଇନ୍‌ସ ବାହାରେ ଗୋଟାଏ ପୃଥିବୀ ଅଛି, ସେଭଳି ମଣିଷ ସାଙ୍ଗରେ ଛନ୍ଦି ହୋଇ ମୋର କି ଜୀବନ କହିଲ ?" ବିଜି ଆଖିରେ ଲୁହର ଲହରୀ ଖେଳିଲା।

ମାନସୀ ତା' ଲୁହ ପୋଛିଲା ନାହିଁ। ବରଂ ଅଳ୍ପ ବିରକ୍ତ ହୋଇ କହିଲା, "ମନୋଜ ହସ୍‌ପିଟାଲ୍‌ରେ ବେଶୀ କାମ କରୁଛନ୍ତି ତ ? ରିସର୍ଚ୍ଚ, ସେମିନାରରେ ବ୍ୟସ୍ତ ରହୁଛନ୍ତି ତ ? କ'ଣ ଏମିତି ଫାଶୀ ପାଇବା ଭଳି କାମ ସେ କରିପକେଇଲେ ? ତୁମର ତ ଖୁସି ହେବା କଥା। କେତେ ଭଲ କାମ କରୁଛନ୍ତି ! ଏଣେ ମଦ ନାହିଁ, ସିଗାରେଟ୍ ନାହିଁ, କି କେଉଁ ଆଲତୁ ଫାଲତୁ ସ୍ତ୍ରୀଲୋକ ସାଙ୍ଗରେ ସଂପର୍କ ମଧ୍ୟ ନାହିଁ।"

କାନ୍ଦୁ କାନ୍ଦୁ ବିଜି ଓଠରେ ହସ ଖେଳିଗଲା, ''ଅନ୍ୟ ସ୍ତ୍ରୀଲୋକ ସାଙ୍ଗରେ ସଂପର୍କ! ଯାହାର ନିଜ ନୂଆ ବାହା ହୋଇଥିବା ସ୍ତ୍ରୀ ସାଙ୍ଗରେ ପଦେ ହସିକରି କଥା କହିବାକୁ ବେଳ ହୋଇନାହିଁ, ସେ ପୁଣି ଆଫେଆର୍ ପାଇଁ ସମୟ କାଢ଼ିବ ?''

ମାନସୀ କିଛି କହିଲା ନାହିଁ। ଯିଏ ଅଯଥା ଦୁଃଖ ଅଭିମାନକୁ ଗଳାହାର କରି ରଖିବ, ତାକୁ ବୁଝାଇବାକୁ ତା' ପାଖରେ ଭାଷା ନାହିଁ।

ବାପି ଫେରିଲା ତିନିଟା ବେଳେ। ଘର ଭିତରେ ପାଦ ଦେଇ ପିଉସୀକୁ ଦେଖି ଖୁସିରେ କ'ଣ କରିବ ବୁଝିପାରିଲା ନାହିଁ। ଆଗ ଜୋତା ଦିଇଟା କାଢ଼ି ସୋଫା ଉପରେ ଫୋପାଡ଼ି ଦେଇ ଡେଇଁ ପଡ଼ିଲା ବିଜୟାର କୋଳକୁ।

''ଏ ବାପି, ଜୋତା ସୋଫା ଉପରେ ପକାଉଛି ? ଆଗ ଯା, ଧୁଆଧୁଇ ହୋଇ ଖିଆପିଆ କର। ବିଜି ନାନୀ କୁଆଡେ ପଳଉଛି ନା କ'ଣ ?'' ମାନସୀ ଆକଟିଲା।

ବାପି ମା' କଥା ଆଉ ଶୁଣୁଛି! ''ବିଜି ନାନୀ, ତୁମେ ଆଜି ମତେ ଖୁଆଇ ଦେବ। ତା'ପରେ ଆମେ କ୍ରିକେଟ୍ ଖେଳିବା।...ମୋ ଚକୋଲେଟ୍ କାହିଁ ?''

ବାପ୍‌ରେ ବାପ୍! ଏତିକି ବଦମାସୀ କରିପାରେ ବାପି ? ମାନସୀ ବିରକ୍ତ ହୋଇ ପଡୁଥିଲା। ପରୀକ୍ଷା ଚାଲିଛି। ଅଥଚ ପଢ଼ାପଢ଼ି ନାହିଁ। ଖାଲି କ'ଣ ନା 'ମୁଁ ବିଜିନାନୀ ପାଖରେ ବସିବି', 'ବିଜିନାନୀ ସାଙ୍ଗରେ ଖେଳିବି।'

ବିଜୟା ହସିଲା, ''କ'ଣ ମ ଭାଉଜ, ଷ୍ଟାଣ୍ଡାର୍ଡ ଓ୍ୱାନ୍‌ରେ ଏମିତି କି ପାଠପଢ଼ା ? କୋଉ ବୋର୍ଡ ପରୀକ୍ଷା ହୋଇଛି ?...କିରେ ବାପି, କାଲି ତୋର କି ପରୀକ୍ଷା ?''

''ମ୍ୟାଥ୍‌ସ।''

''ଆରେ ଯାଃ- ଅଙ୍କ ପୁଣି ପଢ଼ିବାର କ'ଣ ଅଛି ? ନାଇଁ ଭାଉଜ ?''

ମାନସୀ ଚିଡ଼ି ଯାଇ ଉଲ୍ ବୁଣା ଧରି ବସିଲା, ''ତୁମର ଯାହା ଇଚ୍ଛା ତା' କର। ହେଲେ ବିଜି, ବାପିକୁ ଟିକିଏ ଶାନ୍ତ କର। ସେ ଯେମିତି ଗୁଣ୍ଡାମି କରୁଛି ନା, ମତେ ଡର ଲାଗୁଛି। ପଡ଼ିଯାଇ ଗୋଡ ହାତ ଭାଙ୍ଗିବ ଏ ପିଲା।''

ତା' ପାଟିରୁ କଥା ନ ସରୁଣୁ ହଠାତ୍ ରୋଷେଇ ଘରୁ ବିରାଟ ଗୋଟିଏ ଶବ୍ଦ ଭାସି ଆସିଲା। ତା' ସାଙ୍ଗେ ସାଙ୍ଗେ ବାପିର ବିକଳ ଚିତ୍କାର।

ମାନସୀ, ବିଜୟା ଧାଇଁ ଗଲେ ରୋଷେଇ ଘରକୁ। ଏଇ ଗୋଟାଏ ମୁହୂର୍ତ୍ତରେ

କ'ଣ ଏମିତି ହୋଇଗଲା ? ବଡ ବଲ୍‌ଟା ଧରି ଖେଳୁ ଖେଳୁ ବାପି ପାଣି ପିଇବାକୁ ତ ରୋଷେଇଘରକୁ ଯାଇଥିଲା !

ରୋଷେଇ ଘରର ଦୃଶ୍ୟ ଦେଖିଦେଇ ଘଟଣାଟା ଅନୁମାନ କରିବାକୁ ବିଜୟାର ବେଶୀ ବେଳ ଲାଗିଲା ନାହିଁ। ବଲ୍‌ଟିକୁ ଜୋରରେ ପକେଇ ପକେଇ ଖେଳୁ ଖେଳୁ ନିଶ୍ଚୟ ହାତରୁ ହଠାତ୍ ଖସିଯାଇଛି। ଆଉ ମାଟିରେ କଚି ନ ହୋଇ ବଲ୍‌ଟି ଯାଇ ବାଜିଛି ଗ୍ୟାସ ଚୁଲୀ ପାଖରେ ଥିବା ବଡ ଡେକଚିରେ। ଅଳ୍ପ ସମୟ ଆଗରୁ ପିଇବା ପାଇଁ ପାଣି ଫୁଟେଇ ଯେଉଁଥିରେ ରଖି ଆସିଥିଲା ମାନସୀ। ଏତେବଡ ବଲ୍‌ର ଆଘାତରେ ଡେକ୍‌ଚି ଢଳି ଯାଇ ଗରମ ପାଣି ଅଧା ଭଡି ହୋଇ ଯାଇଛି ବାପିର ବାଁ ଗୋଡ ଉପରେ।

''ବାପି ବାବା !'' ମାନସୀ ଧାଇଁ ଯାଇ ବାପିକୁ କାଖେଇ ଆଣିଲା।

ହା ହା କରି କାନ୍ଦି ଉଠିଲା ବାପି। ଏ କ'ଣ ? ବାପିର ବାଁ ଗୋଡ ଆଣ୍ଠୁ ତଳକୁ ଏମିତି କ'ଣ ହୋଇଯାଇଛି ? ଫୁଟନ୍ତା ପାଣି ପଡି ଯେ ଚମଡାର ଗୋଟିଏ ଆସ୍ତରଣ ଉଠି ଆସିଛି। ସେଗୁଡିକ ପୁଣି ଗୁଡେଇ ଗାଡେଇ ହୋଇ ଗୋଟିଏ ଜାଗାରେ ରହିଯାଇଛି। ଓଃ, କ'ଣ ଦିଶୁଛି ଜାଗାଟା ! ମାନସୀର ମୁଣ୍ଡ ଘୁରେଇ ଗଲା।

ଏସବୁ ବ୍ୟାପାରରେ ବିଜୟାର ଧୈର୍ଯ୍ୟ ଅଧିକ। ଭାଉଜ କୋଳରୁ ବାପିକୁ ନେଇ ଯାଉ ଯାଉ ଶାନ୍ତ ଭାବରେ କହିଲା, ''ବାପି, ସୁନା ବାବାଟା ପରା। ଏମିତି କାନ୍ଦନ୍ତିନି। ତୁ ତ ଆମର କେତେ ବ୍ରେଭ୍ ! ଚୁପ୍ ହୋଇଯା ବାପା।''

କେମିତି ଚୁପ୍ ହେବ ବାପି ? ଗୋଡଟା ଯେମିତି ଜଳି ଯାଉଛି ତା'ର। ଯନ୍ତ୍ରଣାରେ ଥରି ଉଠୁଛି କୁନି ଦେହଟା। ''ବିଜିନାନୀ, ଗୋଡ ! ମୋ ଗୋଡ...''

''ଆମ ସୁନା ବାପିଟା ପରା, ବ୍ୟସ୍ତ ହୋନା। ସବୁ ଠିକ୍ ହୋଇଯିବ।''

ଥଣ୍ଡା ପାଣିରେ ବାପିର ଗୋଡ ଧୋଇ ଦେଇ ରୋଷେଇ ଘର ଥାକରେ ଥିବା ବର୍ନଲ୍ ବୋଳି ଦେବାବେଳେ ବିଜୟାର ଦେହ ହାତ ଥଣ୍ଡା ହୋଇଗଲା। ହାତରେ ଚାହା ଢାଳିଗଲେ, ତେଲ ଟିକିଏ ଛିଟିକି ପଡିଲେ କି କଷ୍ଟ ! ଆଉ ବାପିର ବାଁ ଗୋଡଟା...। ତାକୁ ଏମିତି ପ୍ରାଥମିକ ଚିକିତ୍ସାରେ ରଖିଦେବା କ'ଣ ଉଚିତ ହେବ ?

ଖଟ ବାଡରେ ଆଉଜି ବସିଥିଲା ମାନସୀ। ତା' ଆଖିରୁ ବହି ଯାଉଥିଲା

ଲୁହ ଧାର। ବାପିର କାନ୍ଦ, ଚିତ୍କାର ତା' ଅନ୍ତରାତ୍ମାକୁ ଯେମିତି ଦୋହଲାଇ ଦେଉଥିଲା।

"ଭାଉଜ", ମାନସୀ କାନ୍ଧକୁ ଆସ୍ତେ ହଲାଇ ଦେଲା ବିଜୟା, "ତୁମର ଏଠି କେହି ଚିହ୍ନା ଡାକ୍ତର ଅଛନ୍ତି ?"

"ଏଠି ତ ଆଖପାଖରେ ଡାକ୍ତର ନାହାନ୍ତି। ଆମେ ତୁମ ଭାଇନାଙ୍କ ସାଙ୍ଗ ରାଜୀବ ମିଶ୍ରଙ୍କ କ୍ଲିନିକ୍‌କୁ ଦରକାର ହେଲେ ଯାଉ। ତାଙ୍କ ଫୋନ୍ ନମ୍ବର ଡାଇରୀରେ ଲେଖା ହୋଇଛି। ତୁମେ ଫୋନ୍ କରି ଦେଖ। କିଏ ଜାଣେ, କ୍ଲିନିକ୍ ବନ୍ଦ କରି ଡାକ୍ତର ଯାଇ ସାରିବେଣି କି କ'ଣ। ନଅଟା ଆସି ବାଜିବ।"

ନା- ବିଜୟାର ଭାଗ୍ୟ ଭଲ। ଡାକ୍ତର ମିଶ୍ର ଠିକ୍ ଘରକୁ ବାହାରିବା ସମୟରେ ହିଁ ସେ ଫୋନ୍ କରିଥିଲା। ଫୋନ୍‌ରେ ନିଜ ପରିଚୟ ଦେଇ ସବୁ ବୁଝେଇ କହିଲା ସେ, "ଡକ୍ଟର୍ ପ୍ଲିଜ୍, ଆପଣ ଯଦି ଟିକିଏ ଘରକୁ ଆସି ବାପିକୁ ଦେଖି ଯାଆନ୍ତେ...। ଘରେ ଭାଇନା ନାହାନ୍ତି। ବାପି ସେତେବେଳଠୁଁ ଖାଲି କାନ୍ଦି ଚାଲିଛି।"

ଡାକ୍ତର ନୀରବ କାହିଁକି ? ବିଜୟା ଅଧୈର୍ଯ୍ୟ ହୋଇ ପଡୁଥିଲା। ଭାଇନାର ସାଙ୍ଗ ହେଲେ ବା କ'ଣ ? ଯଦି ଏତେ ରାତିରେ ଡାକ୍ତର ଘରକୁ ଆସିବାକୁ ମନା କରିଦିଅନ୍ତି ? ଯଦି ପିଲାକୁ ହସ୍‌ପିଟାଲ୍ ନେଇ ଯିବାକୁ କହନ୍ତି ? କେମିତି ସେ କ'ଣ କରିବ ? ପୁଣି ଭାଉଜର ଯେଉଁ ଅବସ୍ଥା !

"ମୁଁ ଆସୁଛି।"

କୋଡ଼ିଏ ମିନିଟ୍ ଭିତରେ ଆସି ପହଞ୍ଚିଲେ ଡକ୍ଟର ମିଶ୍ର।

"କ'ଣ ବାପି, ବଲ୍ ଖେଳୁ ଖେଳୁ ଗରମ ପାଣି ଡେକ୍‌ଚିଟାକୁ ବଲ୍ ବୋଲି ଭାବି ନେଲ କି ?"

"ମୁଁ କିଛି କରିନି। ବଲ୍‌ଟା ତ ନିଜେ ନିଜେ ଯାଇ ଡେକ୍‌ଚିକୁ ଠେଲି ଦେଲା !"

"ବଲ୍‌ଟା ତ ବଡ ବଦ୍‌ମାସ୍ !" ବାପି ଗୋଡରେ ନିଜେ ଆଣିଥିବା ଅଏଣ୍ଟମେଣ୍ଟ ଲଗାଇ ଡ୍ରେସିଙ୍ଗ୍ କରୁ କରୁ ଡାକ୍ତର କହିଲେ। "ଏଥର ଏଇଟା ଶୁଖିବା ପର୍ଯ୍ୟନ୍ତ ଘରେ ଶୋଇ କରି ରହିବ।...ଭାଉଜ, ଭୟ ପାଇବାର କିଛି ନାହିଁ। ଫାଷ୍ଟ ଡିଗ୍ରୀ ବର୍ନ। ରମେଶ କେବେ ଫେରିବ ?"

''କାଲି ।''

''ଆଚ୍ଛା, ତାକୁ କହିବ ଦରକାର ହେଲେ ମତେ ଫୋନ୍ କରିବ। ମୁଁ ପୁଣି ଆସି ଦେଖିଯିବି।''

ମାନସୀକୁ ଏଇତକ କହିଦେଇ ଡାକ୍ତର ହାତ ଧୋଇବାକୁ ବାହାରି ଆସିଲେ। ତାଙ୍କର ଅଭ୍ୟସ୍ତ ଦୃଷ୍ଟି ବୁଝିପାରିଥିଲା ଯେ ମାନସୀ ଏହାଠାରୁ ଅଧିକ କଠିନ ସତ୍ୟକୁ ଗ୍ରହଣ କରିପାରିବ ନାହିଁ। ତେଣୁ ବେସିନ୍‌ରେ ହାତ ଧୋଇବା ବେଳେ ଅସଲ କଥାଟି ବିଜୟାକୁ କହିଲେ, ''ବାପିକୁ ଯେମିତି ହେଲେ ବୁଝେଇ ସୁଝେଇ ଶୁଆଇ ଦିଅ। ବଡ ଡରି ଯାଇଛି। ମୁଁ ଟ୍ରାଙ୍କୁଲାଇଜର୍ ରଖି ଦେଇ ଯାଉଛି। ଯଦି ଆବଶ୍ୟକ ହୁଏ, ତେବେ ଗୋଟିଏ ଟ୍ୟାବ୍‌ଲେଟ୍ ଖୁଆଇ ଦେବ। ଏମିତି କେଶ୍‌ରେ 'ବର୍ନ' ଅପେକ୍ଷା 'ସକ୍' ହିଁ ଅଧିକ କ୍ଷତି କରେ।''

ବିଜୟା ଶୋଇବା ଘର ଭିତରକୁ ଚାହିଁଲା। ବାପି ଯେ ଆଖି ବନ୍ଦ କରିବାକୁ ନାରାଜ ! କେବଳ ବାଁ ଗୋଡଟାକୁ ଟେକି ଧରି ଘୁରେଇ ଘୁରେଇ ଦେଖୁଛି। ଆଗ ଭଳି ଜୋର୍ କାନ୍ଦ ଆଉ ନାହିଁ। କିନ୍ତୁ ଏବେ ବି ରହି ରହି ସଁକ ସକ ହୋଇ କାନ୍ଦି ପକାଉଛି, ''ମା' ଭାରି ପୋଡୁଛି। ଏମିତି କାହିଁକି ହେଲା ମା' ?''

''ମା', ମା', ଦେଖ ଏଠି କେମିତି ପୂରା ଧଳା ହୋଇଯାଇଛି। ଆଉ ଏଠି ଏକଦମ୍ କଳା। ମୋର କ'ଣ ଗୋଡରେ ଦାଗ ରହିଯିବ।''

''ମା', ତୁମେ ବାପାଙ୍କୁ ଫୋନ୍ କରି ଡକାଅ। କାହିଁକି ସେ ପୁରୀ ଗଲେ ? ଉଃ ମୋ ଗୋଡ ପୋଡୁଛି।''

ବାପିର ବାଚାଳାମୀ କେବଳ ବଢି ଚାଲିଥିଲା।

ବିଜୟା ଅନୁରୋଧଭରା ଦୃଷ୍ଟିରେ ଡାକ୍ତର ମିଶ୍ରଙ୍କୁ ଦେଖିଲା, ''ଡକ୍ଟର, ଭାଇନା ନାହିଁ। ଭାଉଜ କେତେ ଅପ୍‌ସେଟ୍ ଦେଖୁଛନ୍ତି ତ। ଯଦି ବାପି ଶୋଇବା ପର୍ଯ୍ୟନ୍ତ ଟିକିଏ ରହି ପାରନ୍ତେ... ସେ ଯେମିତି ବ୍ୟସ୍ତ ହେଉଛି...।''

ଘଣ୍ଟା ଉପରେ ଆଖି ବୁଲେଇ ନେଇ ମୁହୂର୍ତ୍ତେ ଚୁପ୍ ରହିଲେ ଡାକ୍ତର ମିଶ୍ର। ମୁହଁରେ ଚିନ୍ତାର ଛାପ। ଏଇଭଳି ଗୋଟିଏ ଅନୁରୋଧ କରିବା ବିଜୟାର କ'ଣ ଭୁଲ୍ ହେଲା ? ତା' ଆଡେ ଚାହିଁ ହସିଦେଲେ ଡାକ୍ତର ମିଶ୍ର। କହିଲେ, ''ଠିକ୍ ଅଛି।''

ବିଜୟା ମୁଣ୍ଡରୁ ବୋଝତକ କିଏ ଯେମିତି ଓହ୍ଲେଇ ନେଲା ।

ଡାକ୍ତର ଖଟ ପାଖକୁ ଯାଇ ବାପିକୁ କହିଲେ, ''ଏ କ'ଣ ? ଏ ପର୍ଯ୍ୟନ୍ତ ଆଖି ବନ୍ଦ ହୋଇନି ବାପି ? ଆଖି ଜୋରରେ ବନ୍ଦ କରି ଶୀଘ୍ର ଶୋଇପଡ, ନହେଲେ ମତେ ଇଂଜେକ୍ସନ୍ ଦେବାକୁ ହେବ ।''

ଇଂଜେକ୍ସନ୍ ! ଆରେ ବାପ୍‌ରେ !

ଏତେ ସମୟ ମା' ଆଉ ପିଉସୀ କଥାକୁ ବେଖାତିର କରି ଚାଲିଥିଲା ବାପି । କିନ୍ତୁ ଡାକ୍ତରଙ୍କ କଥାର ଅବାଧ ହୋଇ ପାରିଲା ନାହିଁ । ସାଙ୍ଗେ ସାଙ୍ଗେ ମା' କୋଳରେ ମୁଣ୍ଡ ରଖି ଆଖି ବନ୍ଦ କଲା ସେ । ମଶାରୀଟା ଟଙ୍ଗେଇ ବେଡ୍ ଲାଇଟ୍ ଜଳେଇ ବିଜୟା ଦାଣ୍ଡ ଘରକୁ ଆସିଲା । ସେଇଠି ବସି କ'ଣ ଗୋଟାଏ ପତ୍ରିକା ପଢୁଥିଲେ ଡାକ୍ତର ।

''ଆପଣଙ୍କ ପାଇଁ କ'ଣ ଟିକିଏ ଖାଇବାକୁ ଆଣେ । ବହୁତ ଡେରି ହେଲାଣି ।''

''ନା, ଏବେ କିଛି ଖାଇବି ନାହିଁ । ଘରେ ସ୍ତ୍ରୀ ଅପେକ୍ଷା କରିଥିବ ।''

କ୍ଷଣିକ ପାଇଁ ଚୁପ୍ ରହିଲେ ସେ । ତା'ପରେ ହଠାତ୍ କହି ପକେଇଲେ, ''ଆଜି ମୋ ସ୍ତ୍ରୀର ଜନ୍ମଦିନ । ଭାବିଥିଲି ଶୀଘ୍ର କ୍ଲିନିକ୍ ବନ୍ଦ କରି ଘରକୁ ଯିବି । ହେଲେ ଆଜି ଅନେକ ପେସେଣ୍ଟ ।''

ବିଜୟାକୁ ଭାରି ଖରାପ ଲାଗିଲା । ସେ ବି ତ ତାଙ୍କୁ ବସେଇ ରଖିଛି ଏତେ ଗୁଡାଏ ସମୟ ।

ଡାକ୍ତର ବୁଝି ପାରିଲେ କି କ'ଣ । ପରିବେଶକୁ ହାଲୁକା କରିବା ଭଳି କହିଲେ, ''ଏମିତି ତ ସବୁବେଳେ ହୁଏ । ମୁଁ ଯଦି ଘରେ ଶୀଘ୍ର ପହଞ୍ଚିଯାଇ ଥାଆନ୍ତି, ତେବେ ବୋଧହୁଏ ଦୀପା ଅଧିକ ଆଶ୍ଚର୍ଯ୍ୟ ହୋଇଯାଇଥାଆନ୍ତା...ଆଚ୍ଛା ଯଦି ଅସୁବିଧା ନ ହୁଏ, କପେ କଫି ଦେଇ ପାରିବ ?''

''ସାଙ୍ଗେ ସାଙ୍ଗେ ଆଣୁଛି ।''

ରୋଷେଇ ଘରେ କଫି କରୁ କରୁ ବିଜୟା ଆଖିରେ ଲୁହ ଭର୍ତ୍ତି ହୋଇଗଲା । ଡାକ୍ତର ମିଶ୍ର ଆସିଲେ ବୋଲି ସିନା ସେମାନେ ଏତେଟା ନିଶ୍ଚିନ୍ତ ହୋଇ ପାରିଲେ ! ନହେଲେ ଚିନ୍ତାରେ ଚିନ୍ତାରେ ସେମାନଙ୍କର କ'ଣ ଅବସ୍ଥା ହୋଇଥାଆନ୍ତା ?

ତଥାପି ଗୋଟିଏ ଦୋଷୀ ଦୋଷୀ ଭାବ ଜଡେଇ ଧରୁଥିଲା ତାକୁ । କେତେ ଡେରି ହୋଇଗଲାଣି । ଏ ପର୍ଯ୍ୟନ୍ତ ନ ଖାଇ ଘରେ ଅପେକ୍ଷା କରି ରହିଥିବେ

ଡାକ୍ତରଙ୍କ ସ୍ତ୍ରୀ । ତାଙ୍କର କ'ଣ ଡାକ୍ତରଙ୍କ ଉପରେ ରାଗ ହେଉ ନ ଥିବ ? ଏମିତି ଗୋଟାଏ ଦିନରେ ଯଦି ନିଜର ପ୍ରିୟ ମଣିଷଟି ରାତି ଅଧରେ ପହଞ୍ଚେ, ତେବେ କ'ଣ ସେ ତାକୁ କ୍ଷମା କରିଦେଇ ପାରିବେ ?

ବିଜୟା ନିଜେ କେବେ କରିଛି ?

ଚମକି ପଡିଲା ସେ । ଏମିତି ଗୋଟାଏ ସମୟରେ ତା' ନିଜ କଥା କାହିଁକି ମନ ଭିତରକୁ ପଶି ଆସିଲା ?

ଆସିବା କଥା ତ । ସେ ମଧ୍ୟ ଜଣେ ଡାକ୍ତରର ସ୍ତ୍ରୀ । କେବେ ଥରେ ସେ ମନୋଜକୁ ବୁଝିବାର ଚେଷ୍ଟା କରିଛି ? କାହିଁକି ଗୋଟାଏ ବେଳେ କହି ସେ ତିନିଟା ବେଳେ ଘରକୁ ଖାଇବାକୁ ଆସେ ? କାହିଁକି ସିନେମା ଦେଖାଇ ନେବାର ଶତ ପ୍ରତିଜ୍ଞା ଥରେ ବି ସେ ପୂରଣ କରିପାରେ ନାହିଁ ? କାହିଁକି ପୁଣି ଗୋଆର ପ୍ରୋଗ୍ରାମ ଶେଷ ମୁହୂର୍ତ୍ତରେ ବଦଳେଇବାକୁ ହୁଏ ? ଏମିତି ଅନ୍ୟ କେଉଁ ବାପି, ମାନସୀ ବା ବିଜୟା ପାଇଁ ତ !

କଫି ପାଇଁ ଚୁଲିରେ ବସେଇଥିବା କ୍ଷୀର ଓ ପାଣି ଫୁଟି ଆସିଲାଣି । ମେସିନ୍ ପରି ଥାକରୁ କପ୍ ଆଣି ଚିନି, କଫି ପାଉଡର୍ ଦେଲା ବିଜୟା । ଚାମଚରେ ଗୋଳେଇ ନେଇ ଟ୍ରେରେ କପ୍ ପ୍ଲେଟ୍ ରଖି ସେ ଦାଣ୍ଡ ଘରେ ପାଦ ଦେଲା । ଡାକ୍ତର ମିଶ୍ର ଏବେ ମଧ୍ୟ ମନ ଦେଇ ପଢୁଛନ୍ତି ପତ୍ରିକାଟି । ବିଜୟା ତାଙ୍କ ସାମ୍ନାରେ ଯାଇ ଠିଆ ହେଲା । କିନ୍ତୁ କପ୍‌ଟିକୁ ତାଙ୍କ ହାତକୁ ବଢେଇଲା ନାହିଁ । ଟ୍ରେକୁ ସେଇମିତି ହାତରେ ଧରି କହିଲା, ''ବାପି ଶୋଇପଡିଲାଣି ଡ଼କ୍ଟର । ଆଉ ଖାଲି ପେଟରେ କଫି ପିଇବାକୁ ହେବ ନାହିଁ । ଆପଣ ଏଥର ଘରକୁ ଯାଆନ୍ତୁ । ଦୀପା ଭାଉଜ ଯେ ନ ଖାଇ ଅପେକ୍ଷା କରିଥିବେ ।'' □□

# ଘର ବଦଳ

ସବୁ ଯେତେବେଳେ ସୁରୁଖୁରୁରେ ସୁନ୍ଦରଭାବରେ ଚାଲିଥିଲା, ସେତିକିବେଳେ ଏମିତି ଗୋଟିଏ ଅଘଟଣ ଘଟିବାର ଥିଲା। ମୁହଁ ସଞ୍ଜବେଳେ ଘର ମାଲିକ ମିଷ୍ଟର କାମାଥ ଆସି କଲିଂବେଲ୍ ଟିପିବା ଅଘଟଣର ସୂଚନା ଇ ତ। କାମାଥ୍‌ଙ୍କ ଘରର ତଳମହଲାରେ ଭଡ଼ାଟିଆଭାବରେ ଗତ ଚାରିବର୍ଷ ଧରି ରହି ଆସିଛନ୍ତି ପିନାକୀ ଓ ଜ୍ୟୋତି। ଉପର ମହଲାରେ ଘର ମାଲିକ। କେତେଥର ତାଙ୍କ ଚେହେରା ଦେଖିବାକୁ ମିଳେ? ମାସର ପହିଲା ତାରିଖରେ ଉପରକୁ ଯାଇ ଭଡ଼ାର ଚେକ୍‌ଟା ଦେବାବେଳେ ଯାହା। ଅନ୍ୟ ସମୟତକ କ'ଣ କେମିତି କରି କଟାନ୍ତି କେଜାଣି? ଘର ବାହାରେ ପାଦ ହିଁ ରଖନ୍ତି ନାହିଁ।

ତେଣୁ ହଠାତ୍ ତାଙ୍କୁ ଦେଖିଦେଇ ପିନାକୀ ଅଘଟଣର ଆଶଙ୍କା କରିବା ସ୍ୱାଭାବିକ। ପୁଣି ଭଦ୍ରଲୋକ ଏକା ନୁହଁ, ସାଙ୍ଗରେ ଥିଲେ ମିସେସ୍ କାମାଥ୍ ମଧ୍ୟ।

''ଆରେ ଆସନ୍ତୁ, ଭିତରକୁ ଆସନ୍ତୁ।'' ସେମାନଙ୍କୁ ଭିତରକୁ ଡ଼ାକିନେଲା ପିନାକୀ। ହେଲେ ଘରମାଲିକଙ୍କର ମୁହଁ ଦେଖି ତା'ର କାହିଁକି ମନେ ହୋଇଥିଲା ଯେ ସେ ଯେଉଁ ଉଦ୍ଦେଶ୍ୟରେ ଆସିଛନ୍ତି, ତାହା ନିଶ୍ଚୟ ଶୁଣିବାକୁ ଖୁବ୍ ଗୋଟିଏ ସୁଖକର ହେବ ନାହିଁ।

କ'ଣ ଘରଭଡ଼ା ବଢ଼େଇବାକୁ କହିବେ ? ଏହା ଭିତରେ ପିନାକୀର ଅଫିସ୍‌ରେ ପ୍ରମୋସନ୍ ହୋଇଛି। ସେ ଆଉ ଅଳ୍ପ କିଛି ଟଙ୍କା ଘରଭଡ଼ା ବଢ଼େଇପାରେ। କିନ୍ତୁ ସେତିକିରେ କ'ଣ ଭଦ୍ରଲୋକ ସନ୍ତୁଷ୍ଟ ହେବେ ?

''ଆଜି ଏତେଦିନ ପରେ କେମିତି ଆମମାନଙ୍କର କଥା ମନେପଡ଼ିଗଲା ?'' ଡ୍ରଇଂରୁମ୍ ଭିତରେ ପାଦ ଦେଉ ଦେଉ ଜ୍ୟୋତି ପଚାରିଦେଲା।

ମିଷ୍ଟର କାମାଥ୍ ଥରେ ପତ୍ନୀଙ୍କ ମୁହଁକୁ ଚାହିଁ ପୁଣି ମନୋନିବେଶ କଲେ ଦୂର କାନ୍ଥରେ ଥିବା ପଟ୍ଟଚିତ୍ର ଉପରେ। ତା'ପରେ ରହି ରହି କହିଲେ, ''ମତେ ଭାରି ଖରାପ ଲାଗୁଛି ଏମିତି ଗୋଟିଏ କଥା କହିବାକୁ। କିନ୍ତୁ କ'ଣ କରିବି କୁହନ୍ତୁ ? ବାଧ ହୋଇ କହିବାକୁ ହେଉଚି। ମୋ ଝିଅ ମହୀଶୂରରୁ ବଦଳି ହୋଇ ଆସୁଛି। ଜୋଇଁଙ୍କୁ ଏବେ କ୍ୱାଟର୍ ମିଳିବ ନାହିଁ। ତାଙ୍କର ଯାହା ହାଉସ୍ ରେଣ୍ଟ୍ ଆଲାଓ୍ୱାନ୍ସ ସେଥିରେ ବାଙ୍ଗାଲୋର୍ ଭଳି ମହଙ୍ଗା ସହରରେ କି ଘର ମିଳିବ ? ତେଣୁ ଆପଣମାନେ ଯଦି ଦୟାକରି ଘର ଛାଡ଼ିଦିଅନ୍ତେ...।''

ଘର ଛାଡ଼ିବାକୁ ହେବ !

ସେମାନେ ଯିବା ପରେ ଜ୍ୟୋତି ରାଗରେ ଫାଟିପଡ଼ିଲା, ''କ'ଣ ପିଲାଖେଳ ପଡ଼ିଛି ନା କ'ଣ ? ଏଇ ଏବେ ଘରଭଡ଼ା ବଢ଼େଇ ତିନିବର୍ଷ ପାଇଁ ଲିଜ୍ ଏଗ୍ରିମେଣ୍ଟ୍‌ରେ ସାଇନ୍ କଲେ। ଏବେ କ'ଣ ନା ଘର ଛାଡ଼। ତୁମେ ବି କେମିତି ଲୋକ ? ବିନା ପ୍ରତିବାଦରେ ରାଜି ହୋଇଗଲ ?''

''ଆଉ କ'ଣ କେଶ୍ କରିଥାଆନ୍ତି ?'' ପିନାକୀ ଚିଡ଼ିଗଲା, ''ତାଙ୍କ ଘର। ଭଡ଼ା ଦେବା ନ ଦେବା ତାଙ୍କ ଇଚ୍ଛା କଥା। ମିଷ୍ଟର୍ କାମାଥ୍ ତ ଆଉ କାଲି ଘର ଛାଡ଼ି ଚାଲିଯିବା କଥା କହୁନାହାଁନ୍ତି। ଦୁଇମାସ ସମୟ ଦେଇଛନ୍ତି।''

''ଆହା, କେତେ ଦୟା କରିଛନ୍ତି ! ଏଥର ଖୋଜ ଘର। ମୁଁ କହିଦେଉଛି, ମୁଁ ଇନ୍ଦିରାନଗର ଛାଡ଼ି ଆଉ କୁଆଡ଼େ ଯିବି ନାହିଁ। ସାଙ୍ଗସାଥୀ ସବୁ ଏଇଠି। ପୁଣି ରିଙ୍କୁ, ଟିଙ୍କୁଙ୍କର ସ୍କୁଲ ମଧ୍ୟ ଏଇଠି। ଏ ଅଞ୍ଚଳ ଛାଡ଼ି ଯିବ କିଏ ?''

''ମୁଁ ଏବେ ଜୟରାମକୁ ଫୋନ୍ କରି କହୁଛି। ଏଠି ଏତେ ଫ୍ଲାଟ୍ ତିଆରି ହେଉଛି। ଘର ପୁଣି ମିଳିବନି ?'' ପିନାକୀ ପର୍ସନେଲ୍ ଡ଼ିପାର୍ଟମେଣ୍ଟ୍‌ର ଜୟରାମକୁ ସାଙ୍ଗେ ସାଙ୍ଗେ ଫୋନ୍ ଲଗାଇଲା। ଅଫିସରମାନଙ୍କର ବ୍ୟକ୍ତିଗତ ଝାମେଲା ତୁଟାଇବାପାଇଁ ତ ଏ ଲୋକଟି ଅଫିସ୍‌ରେ ପୋଷା ହୋଇଛି।

"ସାର୍, ଘର ତ ଯାହାକୁ ଯେତେ। ମୁଁ ଏବେଠାରୁ ଖୋଜ୍ ନେଉଛି। ସାତଦିନ ଭିତରେ ଆପଣଙ୍କର ମନଲାଖି ଘର ଠିକ୍ କରିଦେବି।" ଜୟରାମ କଥା କହିବାବେଳେ ପାଟିରେ ବାଟୁଳି ବାଜେ ନାହିଁ। ଆଉ ପିନାକୀ ଦାସ ପୁଣି ଯାହିତାହି ଅଫିସର୍ ନୁହଁନ୍ତି, ଆସିଷ୍ଟାଣ୍ଟ୍ ଜେନେରାଲ୍ ମ୍ୟାନେଜର।

ଖାଲି ଫାଙ୍କା କଥା! ସାତଦିନ ଯାଇ ସତରଦିନ ହୋଇଗଲା, ଗୋଟିଏ ମନଲାଖି ଘର ଦେଖାଇପାରିଲା ସେ? କେଉଁ ଘର ଅନ୍ଧାରୁଆ ତ କେଉଁ ଘରର ରୋଷେଇ ଘରେ ଅସରପାମାନଙ୍କର ଉପଦ୍ରବ। ସେଠି ମଣିଷ ରହନ୍ତି?

"ସାର୍, ଏବେ ବାଙ୍ଗାଲୋରରେ ଘରଭଡ଼ା ଯାହା ବଢ଼ିଯାଇଛି ନା ଏଇ ବଜେଟ୍‌ରେ ସୁନ୍ଦର ଘରଟିଏ ପାଇବା ବଡ଼ ମୁସ୍କିଲ୍।" ଜୟରାମ ବାଧ ହୋଇ ହାର୍ ମାନିଲା।

ପିନାକୀ ବିରକ୍ତ ହୋଇ ସାରିଥିଲା। ତା'ଠୁଁ ଅଧିକ ଚିଡ଼ିଯାଇଥିଲା ଜ୍ୟୋତି, "ଏତେ ବର୍ଷ ଏଇ ଘରେ ରହିବା ପରେ ଆପଣ କ'ଣ ଭାବୁଛନ୍ତି ଯେ ଆମେ ଯାଇ କୋଉ ଭଙ୍ଗାଦଦରା ଘରେ ପଶିବୁ?"

"ନାଇଁ ଯେ ମ୍ୟାଡ଼ମ୍, ଆପଣ ଯଦି ଇନ୍ଦିରାନଗର ଛାଡ଼ି ଅନ୍ୟ କେଉଁ ଅଞ୍ଚଳକୁ ଯିବାକୁ ରାଜି ହୁଅନ୍ତି...। 'କୋରମଙ୍ଗଲା'ରେ ଆମ କମ୍ପାନୀର ଲିଜ୍‌ରେ ଭଲ ଘରଟାଏ ଅଛି। ମାର୍କେଟିଙ୍ଗ୍ ମ୍ୟାନେଜର୍ ଦେଶମୁଖ ସାହେବଙ୍କ ପାଇଁ ନିଆ ହୋଇଥିଲା। କିନ୍ତୁ ସେ ନିଜ ଫ୍ଲାଟ୍‌କୁ ଚାଲିଗଲେ। ଏବେ ଘରଟା ଖାଲି ପଡ଼ିଛି।"

"କୋରମଙ୍ଗଲା? ବାବାରେ, ହୋସୁର୍ ରୋଡ୍ ଦେଇ ବଡ଼ ବଡ଼ ଟ୍ରକ୍, ବସ୍ ସାଙ୍ଗରେ ଯୁଦ୍ଧ କରି ସବୁଦିନ ଯିବାଆସିବା କରିବାକୁ ପଡ଼ିବ। ଅସମ୍ଭବ!" ଜ୍ୟୋତି ତା'ର ଶେଷ ନିଷ୍ପତ୍ତି ଶୁଣାଇଦେଲା।

ପିନାକୀ ବୁଝୁଥିଲା, ଇନ୍ଦିରାନଗର ଛାଡ଼ି ଗଲେ ଅସୁବିଧା ଅନେକ। ଏଠୁ ପିଲାଙ୍କ ସ୍କୁଲ ପାଖ, ତା'ର ଅଫିସ୍ ପାଖ। ଚାରିବର୍ଷ ଧରି ଘରେ ଯେଉଁ ବୁଢ଼ୀଟି କାମ କରି ଆସୁଛି, ତା' ଘର ମଧ୍ୟ ଏଇଠି। କିନ୍ତୁ ଗତ ସତରଦିନର ଅଭିଜ୍ଞତା ପରେ ତା'ର ନିଷ୍ପତ୍ତି ଅନେକାଂଶରେ ଦୋହଲି ସାରିଥିଲା। କେତେଦିନ ଏମିତି ଭଡ଼ାଘର , ଖୋଜି ଖୋଜି ବୁଲିବ ସିଏ? ଅଫିସ୍ କାମରେ କେତେ ଯେ କ୍ଷତି ହେଲାଣି, କିଏ ହିସାବ ରଖୁଛି?

''ହେଇଟି ଶୁଣୁଛ...''

ପିନାକୀର ଆଖି ଟିକିଏ ଲାଗି ଆସୁଥିଲା। ଜ୍ୟୋତି ହଲେଇ ଉଠେଇଦେଲା ତାକୁ। ''କ'ଣ ?''

''ଏଠିକାର କେତେଜଣ ବ୍ରୋକର୍‌ଙ୍କୁ କହିଲେ ହୁଅନ୍ତା ନାହିଁ?''

''ବ୍ରୋକର୍! ସେମାନଙ୍କ ସାଙ୍ଗରେ ପାରିବ କିଏ ? ସେମାନେ ତ ଯେଉଁଠି ଦି'ପଇସା ମୁନାଫା ସେଇ ଆଡ଼କୁ ଢଳିବେ। ତୁମକୁ ଘର ଦେଖାଇ ହୁଏତ ଆଉ କାହାକୁ ଦେଇଦେବେ।''

''ଯା'ମ, ସଂସାରଯାକର ଲୋକ ଖରାପ। ଆଉ ତୁମେ ଏକା ଭଲ। ଧର୍ମପ୍ରାଣ ଯୁଧିଷ୍ଠିର! ତୁମେ କର ବା ନ କର ମୁଁ କାଲି ଫୋନ୍ କରି ଗୋଟାଏ ବ୍ରୋକର୍ ସାଙ୍ଗରେ କଥା କହୁଛି।''

ଜ୍ୟୋତିର ଜଣେ ଦୂରସମ୍ପର୍କୀୟ ଆତ୍ମୀୟ କିଛି ମାସ ତଳେ ଗୋଟିଏ ବ୍ରୋକର୍ ସାହାଯ୍ୟରେ ଘରଟିଏ ଭଡ଼ା ନେଇଥିଲେ। ତାଙ୍କୁଇ ଧରିଲା ସେ। ତାଙ୍କଠାରୁ ବ୍ରୋକର୍‌ର ଫୋନ୍ ନମ୍ବର ନେଇ ଫୋନ୍ କରିବାର ଦୁଇଘଣ୍ଟା ଭିତରେ ମଣିଷଟି ଆସି ହାଜର!

''ଗୁଡ୍ ଆଫ୍ଟରନୁନ୍ ମ୍ୟାଡ଼ମ୍। ମୁଁ ଶେଖର୍। ଆପଣଙ୍କ ସାଙ୍ଗରେ କଥାବାର୍ତ୍ତା ହୋଇଥିଲା। ମୁଁ ଏଇପଟକୁ ଆସିଥିଲି, ଭାବିଲି ଯଦି ଆପଣଙ୍କର ଅସୁବିଧା ନ ହୁଏ, ତେବେ ଏଣ୍ଣେ କେ ତଟା ଘର ଦେଖାଇଦେବି।''

ରବିବାରର ଦୁଇ ପହରିଆ ନିଦଟା ଭାଙ୍ଗିଯାଇଥିବାରୁ ଜ୍ୟୋତିକୁ ରାଗ ଲାଗୁଥିଲା। ଅଦ୍ଭୁତ ଲୋକ। ଆସିବା ଆଗରୁ ଫୋନ୍ ଟିକିଏ କରି ଆସିବେ, ଏତିକି ଭଦ୍ରାମି ନାହିଁ? କିନ୍ତୁ ଆବଶ୍ୟକତାଟା ତ ତା'ର। ବାଧ୍ୟ ହୋଇ ମୁହଁରେ ହସ ଫୁଟାଇଲା, ''କେଉଁଠି ଘର ଅଛି? ମୁଁ କେବଳ ଇନ୍ଦିରାନଗରରେ ଘର ଦେଖିବି।''

''ନିଶ୍ଚୟ। ମୁଁ କେବଳ ଇନ୍ଦିରାନଗରରେ ହିଁ କାମ କରେ।'' ଶେଖର ଏପରି ଭାବରେ କହିଲା ଯେମିତି ଇନ୍ଦିରାନଗର ଛଡ଼ା ଅନ୍ୟ କେଉଁଠି ରହିବା ଦୋଷାବହ! ''ଏଇ ତ, ଦୁଇଦିନ ତଳେ ଗୋଟିଏ ବଢ଼ିଆ ଘର ମୁଁ ଫାଇନାଲାଇଜ୍ କରିଛି। ମଲ୍‌ଟିନ୍ୟାସ୍‌ନାଲ୍ କମ୍ପାନୀର ଜଣେ ଏକ୍‌ଜିକ୍ୟୁଟିଭ୍ ନେଲେ। ତିନିଟା ବଡ଼ ବେଡ୍‌ରୁମ୍, ବାଲ୍‌କନି, ବଗିଚା- କୋଡ଼ିଏ ହଜାର ଟଙ୍କା ମାସକୁ ଭଡ଼ା।''

"ସେମିତିଆ ଭଡ଼ା ଆମେ ଦେଇପାରିବୁନି। ଆମ ବଜେଟ୍‌ରେ ଘର ଅଛି ଯଦି ଦେଖାନ୍ତୁ। ନ ହେଲେ ଅଯଥା ଆପଣଙ୍କ ସମୟ ନଷ୍ଟ। ଆମର ମଧ ସମୟ ନଷ୍ଟ।" ସାର୍ଟର ଖୋଲା ବୋତାମ ବନ୍ଦ କରି ଦାଣ୍ଡଘର ଭିତରେ ପଶିବାବେଳେ ସାମାନ୍ୟ ରୂକ୍ଷ ଭାବରେ ପିନାକୀ କହିଲା।

ଶେଖର ବୋଧହୁଏ ବୁଝିଗଲା ଯେ ଆମ୍ବଡ଼ିମା ଏଠି ଚଳିବ ନାହିଁ। "ତା' ତ ନିଶ୍ଚୟ। ଏବେ ଯିବେ ଘର ଦେଖି ?"

"ହଁ।" ପିନାକୀ ଗାଡ଼ି ଚାବି ଧରି ବାହାରିଲା।

ସେଦିନ ଶେଖର ତିନିଟା ଘର ଦେଖାଇଲା ସେମାନଙ୍କୁ। ଘରଗୁଡ଼ିକ ଦେଖି ମିଜାଜ୍ ଥଣ୍ଡା ହେଲା ଜ୍ୟୋତି ଓ ପିନାକୀଙ୍କର। ଲୋକଟା ଫୁଟାଣିଆ ସିନା, କିନ୍ତୁ ତିନିଟାଯାକ ପସନ୍ଦ ମୁତାବକ ଘର ହିଁ ସେମାନଙ୍କ ବଜେଟ୍‌ରେ ଦେଖାଇଦେଲା।

"ଏଥର କୁହନ୍ତୁ, କେଉଁ ଘରଟା ପସନ୍ଦ। କାଲି ଏଗ୍ରିମେଣ୍ଟ୍ କାଗଜରେ ସାଇନ୍ କରିଦେବା।"

ଜ୍ୟୋତିର ଶେଷ ଘରଟି ହିଁ ବେଶୀ ପସନ୍ଦ ହୋଇଥିଲା। ଏତେ ସୁନ୍ଦର ରୋଷେଇ ଘର- କାନ୍ଥରେ ଟାଇଲ୍, ଚଟାଣରେ ମାର୍ବଲ, କାଠର କ୍ୟାବିନେଟ୍। କାହାର ପସନ୍ଦ ନ ହେବ ?

"ଆଉ ସାର୍ ଆପଣଙ୍କର ?"

ଟିକିଏ ଭାବିଦେଲା ପିନାକୀ। ତିନିଟାଯାକ ଘର ହିଁ ତ ଭଲ। ଯଦି ଜ୍ୟୋତିର ଶେଷ ଘରଟି ପସନ୍ଦ ହୋଇଛି, ତେବେ ସେଇଟା ହିଁ ହେଉ।

"ସାର୍, ମତେ ଯଦି ପଚାରିବେ, ତେବେ ମୋର ମଧ ସେଇ ଏକା ମତ। ତା'ହେଲେ ଏୟା ହେଲା ମ୍ୟାଡ଼ମ୍, କାଲି ଆପଣଙ୍କର ଘର ଫାଇନାଲାଇଜ୍ ହୋଇଯିବ।"

ବାଃ ! ଏକା କଥାରେ ଫାଇନାଲାଇଜ୍ ? ଏମିତି ସୁବିଧାରେ କ'ଣ ଘର ମିଳେ ? ଅଥଚ ପିନାକୀ କହୁଥିଲା କ'ଣ ନା ବ୍ରୋକର୍‌ର ସାହାଯ୍ୟ ନେବ ନାହିଁ। ସ୍ୱାମୀକୁ ଚାହିଁ ଟିକିଏ ହସିଦେଲା ଜ୍ୟୋତି।

ପିନାକୀ ଜ୍ୟୋତି ହସର କୌଣସି ଉତ୍ତର ଦେଲା ନାହିଁ। ସିଧାସଳଖ ଶେଖରକୁ କହିଲା, "ଘର ମାଲିକ କିଏ ? କ'ଣ କରନ୍ତି ? ତାଙ୍କ ସାଙ୍ଗରେ କୌଣସି କଥାବାର୍ତ୍ତା ନ କରି ତୁମେ ଫାଇନାଲାଇଜ୍ କରିବ କେମିତି ?"

"ସାର୍, ସେ ବିଷୟରେ ଆପଣ ନିଶ୍ଚିନ୍ତ ରହନ୍ତୁ। ଘର ମାଲିକ ମିଷ୍ଟର ରାମଚନ୍ଦ୍ରନ୍ ବ୍ୟବସାୟୀ ଲୋକ। ତାଙ୍କର ପଇସାର ଅଭାବ ନାହିଁ। ସେ ଚାହାନ୍ତି ତାଙ୍କ ଘରେ ଭଲ କମ୍ପାନୀର ଜଣେ ଭଲ ଲୋକ ଭଡ଼ାରେ ରହନ୍ତୁ।"

"ଆମେ ଭଲ କି ମନ୍ଦ, ତୁମେ ଜାଣିଲ କେମିତି ?" ଶେଖରର ଚାଟୁକାରିତାରେ ଭଳି ନ ଯାଇ ଓଲଟା ପ୍ରଶ୍ନ ପଚାରିଲା ପିନାକୀ।

"ଏ ପ୍ରଫେସନ୍‌ରେ ପନ୍ଦର ବର୍ଷ କଟିଗଲା ଆଜ୍ଞା। ଲୋକ ଦେଖିଲେ ଆମେ ଚିହ୍ନିନେଉ। ତା'ଛଡ଼ା, ମିଷ୍ଟର ରାମଚନ୍ଦ୍ରନ୍‌ଙ୍କ ଶଳା ରଘୁ ମୋର ପର୍ସନାଲ୍ ଫ୍ରେଣ୍ଡ୍। ସେମାନେ ମୋ କଥାରୁ ବାହାର ହେବେ ନାହିଁ। ଆପଣଙ୍କର ଘର ହୋଇଗଲା ବୋଲି ଜାଣନ୍ତୁ।"

ନା- ଶେଷ ପର୍ଯ୍ୟନ୍ତ ଘରଟି ହେଲା ନାହିଁ। ଶେଖରର 'ବ୍ୟକ୍ତିଗତ' ବନ୍ଧୁ ରଘୁର ବ୍ୟବସାୟୀ ଭିଣେଇ କିଛିଦିନ ଆଗରୁ ହିଁ ଭଡ଼ାଟିଆ ଠିକ୍ କରି ସାରିଥିଲେ।

"ଆଉ ଅନ୍ୟ ଘର ଦୁଇଟି ?" ସେମାନଙ୍କର ପ୍ରଥମ ଘର ଦିଇଟା ବି ତ ଅପସନ୍ଦ ହୋଇ ନ ଥିଲା।

ଫୋନ୍‌ରେ ଶେଖରର ଗଳାର ସ୍ୱର କ୍ଷୀଣ ଶୁଣାଯାଉଥିଲା। "ପ୍ରଥମ ଘରର ମାଲିକ ଦୁବାଇ ଯାଇଛନ୍ତି। ସେ ଫେରିଲେ ଯାଇ ଯୋଉ କଥା। ଆଉ ଅନ୍ୟ ଘରଟିର ମାଲିକ ଭଡ଼ା ନ ଦେଇ ବିକ୍ରି କରିଦେବା ଉପରେ ଅଛନ୍ତି। ...ତେବେ ସାର୍, ଆପଣ ଚିନ୍ତା କରିବେ ନାହିଁ। ମୋପାଇଁ ଏଇଟା ଗୋଟିଏ ଆତ୍ମସମ୍ମାନର ବ୍ୟାପାର ହୋଇଯାଇଛି। ମୁଁ ଯେମିତି ହେଲେ ଆପଣଙ୍କ ପାଇଁ ଅତି ସୁନ୍ଦର ଘର ଖୋଜିଦେବି। ଆପଣ ମୋତେ ଦୁଇଦିନ ସମୟ ଦିଅନ୍ତୁ।"

"ବ୍ଲଡ଼ି କ୍ରୁକ୍।" ଫୋନ୍ ରଖିଦେଇ ପିନାକୀ କହିଲା, "କି ଚିକ୍କଣ କଥା ! ଦେଖୁଛ ତ କେମିତିଆ ଲୋକଙ୍କ ପାଲରେ ପଡ଼ିଥିଲ ?"

ଜ୍ୟୋତିର ମନ ଖରାପ ହୋଇ ସାରିଥିଲା ସେତେବେଳକୁ। ସେ ଭାବିନେଇଥିଲା ଯେ ଘରଟି ହୋଇଯିବ। ଏମିତିକି କେଉଁଠି ସୋଫା ପକେଇବ, କେଉଁଠାରେ ଫ୍ରିଜ୍ ରଖିବ, କେଉଁ କାନ୍ଥରେ କି ପେଣ୍ଟିଙ୍ଗ୍ ଲଗେଇବ, ଏ ସବୁର ଗୋଟାଏ ଯୋଜନା ମନେ ମନେ କରି ନେଇଥିଲା ସେ।

ପିନାକୀ ଭୁଲ୍ କହି ନ ଥିଲା। ରବିବାର ଖବରକାଗଜରେ ବିଜ୍ଞାପନ ବାହାରିବା ପରଠାରୁ ସେମାନଙ୍କର ଟେଲିଫୋନ୍‌କୁ ନିଃଶ୍ୱାସ ନେବାର ବେଳ ନାହିଁ। ସକାଳୁ

ତାହା ପିଇ ପିନାକୀ ଟେଲିଫୋନ୍ ପାଖରେ ବସିଛି ଯେ ବସିଛି।

'ଘରଟି କେଉଁଠି', 'କେତେଟା ରୁମ୍', 'ବାଥ୍‌ରୁମ୍ କେତେଟା', 'ସମୁଦାୟ କେତେ ସ୍କୋୟାର୍ ଫୁଟ', 'ଭଡ଼ା କେତେ ଚାହୁଁଛନ୍ତି'- ସମସ୍ତଙ୍କୁ ପିନାକୀର ସେଇ ଏକା ରକମର ପ୍ରଶ୍ନ। ପ୍ରଶ୍ନ ଶୁଣି ଶୁଣି ଜ୍ୟୋତି ବିରକ୍ତ ହୋଇପଡ଼ିଲା, କିନ୍ତୁ ପିନାକୀର କ୍ଳାନ୍ତି ନାହିଁ। ସବୁ କଥାବାର୍ତ୍ତା କରିସାରି କାହାକୁ କହୁଥିଲା, ''ଆମେ ଅମୁକ ସମୟରେ ଆସି ଘରଟି ଦେଖିଯିବୁ।'' ବା ଆଉ କାହାକୁ କହୁଥିଲା, ''ସରି, ଘରଟି ଆମପାଇଁ ଛୋଟ ପଡ଼ିବ।''

ଦି'ପହର ଖିଆପିଆ ପରେ ବାହାରି ପଡ଼ିଲେ ସ୍ୱାମୀସ୍ତ୍ରୀ ଦୁଇଜଣ। ପିନାକୀ ହାତରେ କାଗଜ। ସେଥିରେ ଛଅଜଣ ଘର ମାଲିକଙ୍କର ନାଁ ଓ ଠିକଣା।

''ବୁଝିଲ ଜ୍ୟୋତି, ଏଇ ଛଅଟିରୁ ନିଶ୍ଚୟ ଗୋଟାଏ ପସନ୍ଦ ହୋଇଯିବ। ଆଉ ଘର ପସନ୍ଦ ହେବା ମାତ୍ରକେ ମୁଁ ଅଫିସ୍‌ରେ କହି ଏଗ୍ରିମେଣ୍ଟ୍ ସାଇନ୍ କରେଇଦେବି। ଆମେ ଯେତେ ଶୀଘ୍ର ହେଉ ଘର ବଦଳେଇଦେବା।''

''ହଉ, ଘର ଆଗେ ପସନ୍ଦ ହେଉ।'' ଖାଇକରି ଉଠି ସାଙ୍ଗେ ସାଙ୍ଗେ ଘର ଦେଖି ବାହାରିଥିବାରୁ କି କ'ଣ ଜ୍ୟୋତି ସ୍ୱରରେ ବେଶୀ ଆଗ୍ରହ ନ ଥିଲା।

''ଠିକ୍ ପସନ୍ଦ ହେବ।'' ଦୃଢ଼ତାର ସହିତ ପିନାକୀ ଉତ୍ତର ଦେଇଥିଲା।

କିନ୍ତୁ ଚାରୋଟି ଘର ଦେଖିସାରିବା ପରେ ପିନାକୀର ସ୍ୱରରେ ସେ ଦୃଢ଼ତା ଆଉ ନ ଥିଲା। ଫୋନ୍‌ରେ ଏତେ ବଡ଼ ବଡ଼ କଥା ସବୁ କହିଲେ ଘରମାଲିକମାନେ, ଅଥଚ ଦେଖିବାବେଳକୁ ଏଭଳି କିମ୍ଭୂତକିମାକାର ଘରମାନ। କେଉଁଟା ଜାହାଜର କ୍ୟାବିନ୍ ଷ୍ଟାଇଲ୍‌ରେ ତିଆରି ହୋଇଛି ଯେ ନିଃଶ୍ୱାସ ଚଳପ୍ରଚଳର ବ୍ୟବସ୍ଥା ନାହିଁ। ପୋର୍ଟହୋଲ୍ ଭଳି ଛୋଟ ଛୋଟ ଗୋଲ୍ ଝରକା। ଆଉ କେଉଁଟା ରହିଛି ସନ୍ତସନ୍ତିଆ ଅପରିଷ୍କାର ଜାଗା ଉପରେ। ରାସ୍ତାରେ ଗଲାବେଳେ ନାକରେ ଲୁଗା ଦେବାକୁ ହୁଏ। ବେଶୀ ଭଡ଼ା ଦେଇପାରିବେନି ବୋଲି କ'ଣ ଶେଷରେ ନିଜ ରୁଚିକୁ ଜଳାଞ୍ଜଳି ଦେଇଦେବେ ?

''ଚାଲ ଫେରିଯିବା।''

''ଆଉ ତ ଦିଇଟା ମାତ୍ର ଘର ବାକି। ଦେଖିନେଲେ କଥା ଛିଣ୍ଡିବ।'' ଜ୍ୟୋତି କହିଲା।

ପିନାକୀ ନୀରବ ଭାବରେ କାଗଜରେ ଲେଖାଥିବା ପଞ୍ଚମ ଘରର ଠିକଣା ଉପରେ ଆଖି ବୁଲେଇ ନେଇ ଗାଡ଼ି ଷ୍ଟାର୍ଟ କଲା।

ଇନ୍ଦିରାନଗରର ଏପାଖ ଅଞ୍ଚଳକୁ ଆଗରୁ ଜ୍ୟୋତି ଆସି ନ ଥିଲା। କିଏ କିଏ କହିଥିଲେ ଯେ ଏ ପାଖର ଘରଭଡ଼ା ବହୁତ ବେଶୀ। ତା'ହେଲେ କେମିତି...? ଦେଖାଯାଉ।

ବେଶୀ ଚଉଡ଼ା ରାସ୍ତା ନୁହେଁ। କିନ୍ତୁ ଦୁଇ ପାଖରେ ରହିଥିବା ଫୁଲଭର୍ତ୍ତି କୃଷ୍ଣଚୂଡ଼ା ଗଛଗୁଡ଼ିକ ଉପରକୁ ଉଠି ପୁଣି ମେଳେଇ ହୋଇ ମଝିରେ ଆସି ମିଶିଯାଇଛନ୍ତି। ସବୁଜ ଓ ନାଲି ରଙ୍ଗର ଛାପିଛାପିକା ତୋରଣଟିଏ କିଏ ଯେମିତି ତିଆରି କରିଦେଇଛି। ଗଛରୁ ଝଡ଼ି ରାସ୍ତାଯାକ ବିଛେଇ ହୋଇଯାଇଛି କୃଷ୍ଣଚୂଡ଼ା ଫୁଲ।

ନାଲି ଫୁଲ ଗାଲିଚାର ରାସ୍ତାଟି ସରିଛି ଯେଉଁଠି, ସେଇଠି ଗାଡ଼ି ଅଟକେଇଲା ପିନାକୀ। କାଗଜ ଉପରେ ଆଖି ବୁଲେଇ ନେଇ ଡ଼ାହାଣ ପାଖ ଗେଟ୍‌କୁ ଚାହିଁଲା ସେ। "୧୩୨ ନମ୍ବର। ହଁ ସେଇଟା। ହେଇ ତ, ପ୍ରଫେସର୍ ଦିନକର ରାଓଙ୍କ ନାଁ ଲେଖା ହୋଇଛି।"

ଝୁଙ୍କିପଡ଼ି ଚାହିଁଲା ଜ୍ୟୋତି। "ଏଇ ଘର?" ସ୍ୱରରେ କିଛିଟା ଅବିଶ୍ୱାସ।

ପୁରୁଣା ଷ୍ଟାଇଲ୍‌ରେ ତିଆରି ବଡ଼ ଧଳା ଘରଟିଏ। ସାମ୍ନାରେ ଫୁଲବଗିଚା। କଡ଼ରେ ଦୁଇଟା ନଡ଼ିଆ ଗଛ। ଠିକ୍ ସାମ୍ନାକୁ ରହିଛି ଚମ୍ପାଗଛଟିଏ। ଉପର ବାଲ୍‌କନି ପର୍ଯ୍ୟନ୍ତ ଉଠିଯାଇଛି ବୁଗେନ୍‌ଭିଲିଆ। ଫୁଲରେ ଲଦି ହୋଇ ପତ୍ର ଦେଖାଯାଉ ନାହିଁ। କାହାଣୀର ଛବିଟିଏ ଭଳି ଘରଟି।

ଏମିତି ଘର କିଏ ଭଡ଼ା ଦିଏ? ପୁଣି ଏତେ କମ୍ ଭଡ଼ାରେ?

ପିନାକୀର ହାତ ଚାପି ଧରିଲା ଜ୍ୟୋତି, "କି ସୁନ୍ଦର ଘର। ଯେମିତି ହେଲେ କଥାବାର୍ତ୍ତା କରି ଭଦ୍ରଲୋକଙ୍କୁ ରାଜି କରେଇବ। ସେ ନିଜେ ଯେତେବେଳେ ଆଗ୍ରହ ଦେଖାଇଛନ୍ତି..."

"ଦେଖାଯାଉ।"

ପିନାକୀ ଗେଟ୍ ଖୋଲୁ ଖୋଲୁ ବାହାରକୁ ବାହାରି ଆସିଲେ ସତୁରି ପଞ୍ଚସ୍ତରି ବୟସର ଜଣେ ବୃଦ୍ଧ। ପାଖରେ ନୀଳ ରଙ୍ଗର ମଦ୍ରାସୀ କଟନ୍ ଶାଢ଼ି ପିନ୍ଧା ଜଣେ ବୃଦ୍ଧା। ପ୍ରଫେସର୍ ରାଓଙ୍କ ସ୍ତ୍ରୀ ନିଶ୍ଚୟ।

"ଆଜ୍ଞା ନମସ୍କାର। ମୁଁ ପିନାକୀ ଦାସ।"

"ଆସନ୍ତୁ। ଆପଣଙ୍କ ପାଇଁ ତ ଅପେକ୍ଷା କରିଛୁ ଆମେମାନେ।"

"ଆପଣଙ୍କୁ ଦି'ପହରେ ବିରକ୍ତ କଲୁ।"

"ନା- ଦିପହରେ ଶୋଇବାର ଅଭ୍ୟାସ ମୋର ନାହିଁ। ମୋ ସ୍ତ୍ରୀଙ୍କର ଥିଲା ଯେ ହେଲେ ଟି.ଭି.ରେ 'ଶାନ୍ତି' ସିରିୟାଲ୍ ଆରମ୍ଭ ହେବା ପରଠାରୁ ତା' ବନ୍ଦ ହୋଇ ସାରିଲାଣି। ଏବେ ଦି'ପହର ହେଲେ ମୋ ଘରେ ଅଶାନ୍ତି ଆରମ୍ଭ ହୋଇଯାଏ।"

"କାହିଁକି ଶୁଣୁଛ ଯା'ଙ୍କ କଥା। ଭିତରକୁ ଆସ। ...ତୁମେମାନେ ମୋ ପିଲାଙ୍କର ବୟସ ହେବ। 'ତୁମେ' ବୋଲି ହିଁ କହୁଛି।" ପରମ ଆତ୍ମୀୟତାର ସହିତ ଭିତରକୁ ଡ଼ାକିନେଲେ ପ୍ରଫେସର୍ଙ୍କ ସ୍ତ୍ରୀ।

ସଜଡ଼ା ଡ୍ରଇଂରୁମ୍‌ରେ ବସାଇ ସାଙ୍ଗେ ସାଙ୍ଗେ କଫି କରି ଆଣିଲେ ସେ। ସାଙ୍ଗରେ ବିସ୍କୁଟ। ଘରଭଡ଼ା ଉଦ୍ଦେଶ୍ୟରେ ଆସିଥିବା ମଣିଷମାନଙ୍କୁ କ'ଣ କଫି ବିସ୍କୁଟ୍ ଦେଇ ଏମିତି ଅଭ୍ୟର୍ଥନା କରାଯାଏ ?

ପିନାକୀ ଓ ଜ୍ୟୋତିକୁ ଘର ବୁଲେଇ ଆଣିଲେ ପ୍ରଫେସର୍ ନିଜେ। ବାରିବା ଭଳି କିଛି ନାହିଁ। ବହୁତ ଚିନ୍ତା କରି ଘରଟି କରିଛନ୍ତି ନିଶ୍ଚୟ। ସୁନ୍ଦର ଭାବରେ ଯେମିତି ଜଣେ ଚଳିଯାଇପାରେ ଠିକ୍ ସେମିତି।

ଆର୍କିଟେକ୍ଟ ଡ଼ିଜାଇନ୍‌କରା ଅତ୍ୟାଧୁନିକ ଘର ନୁହଁ, କିନ୍ତୁ ଜୀବନର ବହୁ ସୁଖଦୁଃଖ ଦେଖି ଅଚଳମେରୁ ଭଳି ଠିଆ ହୋଇ ରହିଥିବା ଘରଟିଏ। ପିନାକୀ ହୃଦୟର କେଉଁ କୋଣକୁ ସ୍ପର୍ଶ କରି ଯାଉଥିଲା। ବୋଧହୁଏ ମନେ ପକେଇଦେଉଥିଲା କାହିଁ ଦୂରରେ ଛାଡ଼ି ଆସିଥିବା ବାପା ମା'ଙ୍କର ଘରଟି କଥା।

"ଚାକିରି ଜୀବନର ସମସ୍ତ ସଞ୍ଚିତ ଅର୍ଥ ଦେଇ ଘରଟି ତିଆରି କରିଥିଲି। ସେତେବେଳେ ଭାବିଥିଲି ଦୁଇ ପୁଅ, ବୋହୂ ପାଖରେ ରହିବେ। ହେଲେ ବଡ଼ ପୁଅର ଚାକିରି ଯାଇ ଦିଲ୍ଲୀରେ। ସାନ କାନାଡ଼ାରେ। ଆମେ ଦୁଇ ବୁଢ଼ାବୁଢ଼ୀ ଏତେ ବଡ଼ ଘର ଆଉ ସମ୍ଭାଳିପାରୁନୁ। ସେଥିପାଇଁ ଭଡ଼ା ଦେଇ ଛୋଟ ଫ୍ଲାଟ୍‌କୁ ଉଠିଯିବୁ।"

"କେତେ ଭଡ଼ା...?" ସାମାନ୍ୟ ଇତସ୍ତତଃ ହୋଇ ପଚାରିଲା ପିନାକୀ। ଫୋନ୍‌ରେ ପ୍ରଫେସର୍ଙ୍କ କଥା କ'ଣ ସେ ଭୁଲ୍ ଶୁଣିଥିଲା କି ?

"ଭଡ଼ା ? କହିଥିଲି ତ ଫୋନ୍‌ରେ।" ହସିଲେ ସେ। "ମୁଁ କ'ଣ ଟଙ୍କା ପାଇବା ଉଦ୍ଦେଶ୍ୟରେ ଘରଭଡ଼ା ଦେଉଛି ? ମୋର ଏତେ ଯତ୍ନରେ ତିଆରି ଘର। ପିଲାଙ୍କ ପାଇଁ ଏତିକି ଛଡ଼ା ଆଉ କିଛି ନାହିଁ। ଯିଏ ନିଜର ଭାବି ଦେଖାଶୁଣା କରିବ, ସେଇଭଳି ଭଡ଼ାଟିଆଟିଏ ଖୋଜୁଛୁ।"

"ଘରର ଯତ୍ନ ନେବା ବିଷୟ ନେଇ ଆପଣ ଚିନ୍ତା କରନ୍ତୁ ନାହିଁ। ଏଇଟି ସବୁବେଳେ ଆପଣଙ୍କ ଘର ହୋଇ ରହିବ। ଆମେ କେବଳ ତା'ର କେଆର ଟେକର୍।"

ପ୍ରଫେସର୍‌ଙ୍କ ସ୍ତ୍ରୀଙ୍କର ଆଖି ଉଜ୍ଜଳି ଉଠିଲା। କିନ୍ତୁ ସେଇ ଝଲକ କାହିଁକି ପ୍ରଫେସର ରାଓଙ୍କ ମୁହଁରେ ନାହିଁ ? ଏବେ ମଧ୍ୟ ନିଶ୍ଚିନ୍ତ ହୋଇପାରୁ ନାହାନ୍ତି ସେ। ଘରଭଡ଼ା ଦେବା ମାମଲାରେ ସେ ଅନଭିଜ୍ଞ। କେଉଁଠି କିଛି ଭୁଲ୍ ରହିଯାଇଛି କି ? ଭୁଲ୍ ନିଷ୍ପତ୍ତିରେ ଘର ହାତଛଡ଼ା ହେବାର ଦୃଷ୍ଟାନ୍ତ ବାଙ୍ଗାଲୋର୍‌ରେ ତ କମ୍ ନାହିଁ।

"ମୁଁ କିନ୍ତୁ କମ୍ପାନୀ ଲିଜ୍‌ରେ ଘର ଦେବି।"

"ନିଶ୍ଚୟ। ଆପଣ ଯଦି ଚାହାନ୍ତି ମୁଁ ଆମ ଆଡ୍‌ମିନିଷ୍ଟ୍ରେଟିଭ୍ ଅଫିସର୍‌ଙ୍କୁ ନେଇ ଆସିବି। ଆପଣ ତାଙ୍କ ସାଙ୍ଗରେ କଥା କହିପାରନ୍ତି।"

"ନା, ତା'ର କୌଣସି ଆବଶ୍ୟକତା ନାହିଁ। ତୁମ କମ୍ପାନୀର ତ ବହୁତ ସୁନାମ ଅଛି। ଆଚ୍ଛା..."

ଏ 'ଆଚ୍ଛା'ର ଅର୍ଥ କ'ଣ ? ଭଦ୍ରଲୋକ ଘରଭଡ଼ା ଦେବେ ନା ନାହିଁ ?

ଜ୍ୟୋତି ବ୍ୟସ୍ତ ଆଖିରେ ପିନାକୀକୁ ଚାହିଁଲା। ଘରଟି କ'ଣ ହାତଛଡ଼ା ହୋଇଯିବ ?

ନା- ପିନାକୀ ଏତେ ସହଜରେ ଛାଡ଼ି ଦେବ ନାହିଁ। କିନ୍ତୁ କେମିତି ଏଇ ପ୍ରଫେସର୍‌ଙ୍କୁ ପଟେଇବ ସେ ?

ତାକୁ ସାହାଯ୍ୟ କଲାଭଳି ପ୍ରଫେସର୍‌ଙ୍କ ସ୍ତ୍ରୀ ପଚାରିଲେ, "ଆଉ କପେ କଫି ପିଇବ ?"

ପିନାକୀକୁ କଥା ବୁଲେଇବାର ଗୋଟିଏ ସୁଯୋଗ ମିଳିଗଲା।

"ଆପଣଙ୍କର ଯଦି ଅସୁବିଧା ନ ହୁଏ, ତେବେ ନିଶ୍ଚୟ ପିଇବି। ଏତେ

ଭଲ କଫି... ଆପଣ କି କଫି ପାଉଡ଼ର ବ୍ୟବହାର କରନ୍ତି ?''

ହସିଲେ ପ୍ରଫେସର୍, ''ମୋ ଶଳାଙ୍କର କଫି ଇଷ୍ଟେଟ୍ ଅଛି। ସେଇଠୁ ଆସେ କଫି ମଞ୍ଜି। ତାକୁ ପାଉଡ଼ର କରିବା ଦାୟିତ୍ୱ ମୋ ସ୍ତ୍ରୀଙ୍କର। ବାହାଘରରେ ଯୌତୁକ ଯାହା ମିଳୁ ନ ମିଳୁ, ଆଜିଯାଏ ଭଲ କଫି ପିଇବାର ସୌଭାଗ୍ୟ ମିଳିଲା। କଫି ପ୍ୟାକେଟ୍ ଠିକ୍ ସମୟରେ ଆମ ପାଖରେ ପହଞ୍ଚିଯାଏ। ଏମିତିକି ଅକ୍ସଫୋର୍ଡ଼ରେ ଥିବାବେଳେ ମଧ୍ୟ ଏଥିରେ ବ୍ୟତିକ୍ରମ ହୋଇ ନାହିଁ।''

''ଆପଣ ଅକ୍ସଫୋର୍ଡ଼ରେ ଥିଲେ ?''

''ହଁ କେଉଁ ଯୁଗ ତଳ କଥା ହେଲାଣି। ପି.ଏଚ୍.ଡ଼ି. କରୁଥିଲି।''

''କୋଉ ସବ୍‌ଜେକ୍ଟରେ ?''

''ସେକ୍ସପିଅରଙ୍କ ଟ୍ରାଜେଡ଼ି।''

''ଆଃ, ସେକ୍ସପିଅର।'' ଏତେ ସମୟ ଧରି ଭିତରେ ଭିତରେ ଖୋଜି ବୁଲୁଥିବା ସୂତାର ଖିଅଟା ଯେମିତି ପିନାକୀର ହାତରେ ପଡ଼ିଗଲା। ନାଟକୀୟ ଭାବରେ ସେ ଆବୃତ୍ତି କରି ଉଠିଲା,

''ସି ହାଓ ସି ଲିନ୍ସ ହର୍ ଚିକ୍ ଅପନ୍ ହର୍ ହ୍ୟାଣ୍ଡ

ଓ, ଦ୍ୟାଟ୍ ଆଇ ୱେର୍ ଏ ଗ୍ଲୋଭ୍ ଅପନ୍ ଦ୍ୟାଟ୍ ହ୍ୟାଣ୍ଡ,

ଦ୍ୟାଟ୍ ଆଇ ମାଇଟ୍ ଟଚ୍ ଦ୍ୟାଟ୍ ଚିକ୍।''

''ରୋମିଓ ଅ୍ୟାଣ୍ଡ ଜୁଲିଏଟ୍!!'' ପ୍ରଫେସର୍ ଆଶ୍ଚର୍ଯ୍ୟରେ ପଚାରିଲେ, ''ତୁମେ ତ ଇଞ୍ଜିନିଅର୍ ଲୋକ। ସେକ୍ସପିଅର ପଢ଼ିଲ କେମିତି ?''

''ମୋର ଜଣେ ମାମୁଁ ଦିଲ୍ଲୀ ବିଶ୍ୱବିଦ୍ୟାଳୟରେ ଇଂଲିଶ୍ ପ୍ରଫେସର୍। ତାଙ୍କ ପାଖରେ ମୋର ସବୁ ଛୁଟି କଟେ। ସେଥିପାଇଁ ଇଂରାଜୀ ସାହିତ୍ୟ ପ୍ରତି ଦୁର୍ବଳତା ରହିଯାଇଛି। ବିଶେଷ କରି ସେକ୍ସପିଅର୍।''

''କିଏ ତୁମ ମାମୁଁ କୁହ ତ ?''

''ଡ଼କ୍ଟର ଶିବପ୍ରସାଦ ଦାସ। ସେ ମାଡ୍ରାସ୍‌ରୁ ପି.ଏଚ୍.ଡ଼ି. କରି...''

''ତୁମେ ଶିବପ୍ରସାଦର ଭଣଜା ? ନିଜ ଭଣଜା ?''

''ଆଜ୍ଞା ହଁ। ଆପଣ ତାଙ୍କୁ ଜାଣିଛନ୍ତି ?''

''ଆରେ, ଶିବପ୍ରସାଦ ପରା ମୋ ଷ୍ଟୁଡ଼େଣ୍ଟ୍। ମୋ ପାଖରେ ଡ଼କ୍ଟରେଟ୍ କରିଛି।'' ଏତେବେଳକେ ପ୍ରଫେସର୍ ରାଓଙ୍କ ମୁହଁ ଉପରେ ଘୋଡ଼େଇ ହୋଇ

ରହିଥିବା ଆଶଙ୍କାର୍ ପରଦାଟି ଉଠିଗଲା । "ତୁମେ ଶିବପ୍ରସାଦର ଭଣଜା ଜାଣିଥିଲେ... ଆଚ୍ଛା, କେବେ ଏ ଘରକୁ ଆସିବାକୁ ଚାହୁଁଛ ?"

"ଆଜ୍ଞା ?" ପିନାକୀ ମୁହୂର୍ତ୍ତକ ପାଇଁ ସ୍ତମ୍ଭୀଭୂତ ହୋଇଗଲା । ବଡ଼ ଖାମଖିଆଲୀ ଲୋକ ତ । "ଆସନ୍ତା ପହିଲାରେ..."

"ଠିକ୍ ଅଛି । କାଲି ଏଗ୍ରିମେଣ୍ଟ୍ ପେପର୍ ନେଇ ଆସ । ଦସ୍ତଖତ କରିଦେଇ ସବୁ ଫାଇନାଲାଇଜ୍ କରିଦେବା ।"

ଜ୍ୟୋତି ନିଜର ଖୁସି ଭାବକୁ ଧରି ରଖିପାରୁ ନ ଥିଲା । ଏତେ ସହଜରେ ଯେ ଏମିତି ଅପୂର୍ବ ଘରଟିଏ ମିଳିଯିବ, ସେ କଥା ସେ ବିଶ୍ୱାସ କରିପାରୁ ନ ଥିଲା ।

"ବୁଝିଲ, ବାଲ୍‌କନି ସାଙ୍ଗରେ ଲାଗିକରି ଯେଉଁ ବେଡ୍‌ରୁମ୍ ଅଛି, ସେଇଟା ଆମର । ଆଚ୍ଛା, ତିନିଟା ତ ବେଡ୍‌ରୁମ୍ । ରିଙ୍କୁ, ଟିଙ୍କୁଙ୍କର ଅଲଗା ଅଲଗା ବେଡ୍‌ରୁମ୍ କଲେ କେମିତି ହୁଅନ୍ତା ? କମ୍ କଳି କରନ୍ତେ ।"

"ତୁମେ ଏବେଠାରୁ ଏତେ ସ୍ୱପ୍ନ ଦେଖନି, ଜ୍ୟୋତି ।"

"ସ୍ୱପ୍ନ କ'ଣ ? ସେ ତ କହିଲେ ଘର ଦେବେ ବୋଲି ।"

ଅଳ୍ପ ହସିଲା ପିନାକୀ, "ଏମିତି ଅନେକ ଲୋକ ଅନେକ କଥା କହନ୍ତି । କିନ୍ତୁ ସମସ୍ତେ କ'ଣ ନିଜ ନିଜ କଥା ରଖନ୍ତି ?"

"ଅନ୍ୟ ଲୋକଙ୍କ କଥା ଅଲଗା । ୟେ ଜଣେ ପ୍ରଫେସର ଲୋକ । ପୁଣି ମାମୁଁଙ୍କ ଶିକ୍ଷକ ।"

"ତୁମ ପୃଥିବୀଟା ବଡ଼ ସରଳ, ଜ୍ୟୋତି । ବାସ୍ତବ ପୃଥିବୀ ଏତେ ସରଳ ନୁହଁ । ପୁଣି ନଗଦ ନାରାୟଣ ସାମ୍ନାରେ ପ୍ରଫେସର୍, ବ୍ୟବସାୟୀ- ସମସ୍ତେ ଏକ ହୋଇଯାଆନ୍ତି ।"

"ଯା'ମ, ତୁମର ଖାଲି ସବୁଥିରେ ଅବିଶ୍ୱାସ ।"

ପିନାକୀ ଜ୍ୟୋତି କଥାରେ କୌଣସି ଉତ୍ତର ଦେଇ ନ ଥିଲା । କିନ୍ତୁ ଯେତେ ପର୍ଯ୍ୟନ୍ତ ଏଗ୍ରିମେଣ୍ଟ ପେପର୍‌ରେ ସାଇନ୍ ନ ହୋଇଛି, ସେତେବେଳେ ପର୍ଯ୍ୟନ୍ତ ଖାଲି କଥାର କି ମୂଲ୍ୟ ?

ପିନାକୀର ଅବିଶ୍ୱାସକୁ ଆଉ ଟିକିଏ ବଢ଼େଇଦେଇ ପରଦିନ ସକାଳୁ ପ୍ରଫେସର୍ ରାଓଙ୍କର ଫୋନ୍ ଆସିଗଲା ।

''ପିନାକୀ, କାଲି ଗୋଟାଏ କଥା ତୁମକୁ କହିବାକୁ ଭୁଲିଯାଇଥିଲି। ଘରର ରଙ୍ଗ ବିଷୟରେ।''

ଘର ରଙ୍ଗ ନ କରାଇବା ଉପରେ ଅଛନ୍ତି କି?

''ତୁମେ ତ ଜାଣିଛ ଘରଭଡ଼ା ଦେବାବେଳେ ରଙ୍ଗ କରିବା କଥା। କିନ୍ତୁ ମୁଁ ଆଉ ଠିଆ ହୋଇ ଏସବୁ କାମ କରେଇ ପାରିବିନି। କଣ୍ଟ୍ରାକ୍ଟର୍ ଉପରେ ଛାଡ଼ିଦେଲେ ଯାହା ହେବ ତ ଜାଣିଛ। ତୁମ ଅଫିସ୍ ତରଫରୁ କରେଇ ହୁଅନ୍ତା ନାହିଁ?''

ଆଉ ଟଙ୍କାଟା କିଏ ଦେବ? ଘର ରଙ୍ଗ ଖର୍ଚ୍ଚ କ'ଣ କମ୍?

''ମୁଁ ଅଫିସ୍‌ରେ କଥାବାର୍ତ୍ତା କରିବି। ବୋଧହୁଏ କରି ହେବ। କିନ୍ତୁ ଟଙ୍କାଟା ଭଡ଼ାରୁ...''

''ହଁ ହଁ ନିଶ୍ଚୟ। ତେବେ ସବୁତକ ଏକାଠି ନ କାଟି ଯଦି ଭଡ଼ାରୁ ଅଳ୍ପ ଅଳ୍ପ କରି କାଟି ହୁଅନ୍ତା-''

''ମୁଁ କଥାବାର୍ତ୍ତା କରି ଦେଖିବି।'' ପିନାକୀ ରିସିଭର୍ ରଖିଲା।

ପୁଣି ଦୁଇଘଣ୍ଟା ପରେ ଫୋନ୍। ଏଥର ମିସେସ୍ ରାଓ।

''ଆଚ୍ଛା ଜ୍ୟୋତି, ରୋଷେଇଘର ପାଖ ଷ୍ଟୋର୍ ଘରେ ମୁଁ ଯଦି କିଛି ଜିନିଷ ରଖି ବନ୍ଦ କରିଦିଏ, ତେବେ ତୁମର କ'ଣ କିଛି ଅସୁବିଧା ହେବ? ଆମର ଏ ଘରେ ଏତେ ଜିନିଷ, ଫ୍ଲାଟ୍‌ରେ ତ ସବୁ ରଖିବାକୁ ଜାଗା ହେବ ନାହିଁ।''

ଷ୍ଟୋର୍ ଘରେ ଠାକୁର ରଖିବାର କେତେ ଯୋଜନା କରିଥିଲା ଜ୍ୟୋତି, ପୁରା ରୁମ୍‌ଟା ହିଁ ଛାଡ଼ିଦେବାକୁ ହେବ? ହଉ ପଛକେ-

''ନା- ଅସୁବିଧା ପୁଣି କ'ଣ?''

ସନ୍ଧ୍ୟାବେଳେ ଏଗ୍ରିମେଣ୍ଟର କାଗଜପତ୍ର ନେଇ ପ୍ରଫେସର୍ ରାଓଙ୍କ ଘରେ ପହଞ୍ଚିଲା ପିନାକୀ। କିଛି ସମୟ କାଗଜଟିକୁ ଓଲଟପାଲଟ କରି ପଢ଼ିବାର ଚେଷ୍ଟା କଲେ ପ୍ରଫେସର୍। ଆଇନ୍‌ର ଭାଷା ନିଶ୍ଚିତ ଭାବରେ ଇଂରାଜୀ ପ୍ରଫେସର୍‌ଙ୍କୁ ପଢ଼ିବାକୁ ସୁଖକର ମନେହେଲା ନାହିଁ।

''ମୁଁ ଭାବୁଛି, ଥରେ ଆମ ଓକିଲଙ୍କୁ ଏଇଟା ଦେଖାଇଦେବି। ପରେ

ଆଉ କେଁ ନ ଥିବ। ଗତକାଲି ବଡ଼ପୁଅ ଫୋନ୍ କରିଥିଲା, ସେ ମଧ୍ୟ ସେଇ କଥା କହୁଥିଲା। ତୁମେ ବୁଧବାରଦିନ ସନ୍ଧ୍ୟାରେ ଆସିପାରିବ ?''

ଆସିପାରିବ ପୁଣି କ'ଣ, ଆସିବାକୁ ତ ହେବ ଯେମିତି ହେଲେ। ଘରର ପ୍ରୟୋଜନ ସେମାନଙ୍କର। ଭଲ ହେଲା, ଓକିଲକୁ ଥରେ ଦେଖାଇଦେଲେ ପ୍ରଫେସରଙ୍କର ଦୁଷ୍ଚିନ୍ତା ଟିକିଏ କମିବ। ଏତେ ବେଶୀ ଡ଼ରୁଛନ୍ତି ? ସେ କ'ଣ ଆଉ ଜାଣିଛନ୍ତି ଏ ସବୁ ଘରଭଡ଼ା ମାମଲାରେ ତା' କମ୍ପାନୀର ଏ ସହରରେ କି ସୁନାମ ଅଛି ? ଆଜିଯାଏ କମ୍ପାନୀକୁ କାହା ବିରୁଦ୍ଧରେ ମକଦ୍ଦମା କରିବାକୁ ପଡ଼ିନି; ବା ଆଉ କେହି କମ୍ପାନୀ ବିରୁଦ୍ଧରେ ମକଦ୍ଦମା କରି ନାହିଁ। ସେଇ କଥାଟା ଓକିଲ ମୁହଁରୁ ଥରେ ଶୁଣିନିଅନ୍ତୁ ପ୍ରଫେସର୍ ରାଓ।

ବୁଧବାରଦିନ ନିଶ୍ଚିନ୍ତ ମନରେ ପିନାକୀ ଓ ଜ୍ୟୋତି ପ୍ରଫେସର୍ ରାଓଙ୍କ ଘରେ ପହଞ୍ଚିଲେ। କିନ୍ତୁ ସେଇ ନିଶ୍ଚିନ୍ତ ଭାବର ଝଲକ ପ୍ରଫେସର୍ ବା ତାଙ୍କ ସ୍ତ୍ରୀଙ୍କ ମୁହଁ ଉପରେ ନ ଥିଲା।

ପୁଣି କ'ଣ ହେଲା ?

ଏଥର ବିନା ଉପକ୍ରମଣିକାରେ, ପୁଣି କଫି, ବିସ୍କୁଟ୍ ଆପ୍ୟାୟନ ବିନା ପ୍ରଫେସର୍ କହିଲେ, ''ଓକିଲଙ୍କୁ ଏ ସବୁ କାଗଜ ଦେଖାଇଲି। ସବୁ ବୁଝାଇ କହିଲେ ସେ। ତୁମ କମ୍ପାନୀ ତ ପରିଷ୍କାର ଭାବରେ ଲେଖିଦେଇଛି ଏଥିରେ। ପୁରାଟା ଭଡ଼ା ଟଙ୍କା ଚେକ୍‌ରେ ଦିଆ ହେବ। ନୁହଁ କି ?''

ଏଭଳି ସଚ୍ଚୋଟ କମ୍ପାନୀ କ'ଣ ଲୁଚେଇ ଚୋରେଇ ଟେବୁଲ ତଳବାଟେ କ୍ୟାସ୍ ଗୁଞ୍ଜିଥାଆନ୍ତା ?

ପିନାକୀ ଭଦ୍ରଭାବରେ କହିଲା, ''ପ୍ରତି ମାସ ଚାରି ତାରିଖ ଭିତରେ ଆପଣ ଚେକ୍‌ରେ ଘରଭଡ଼ା ପାଇଯିବେ।''

''ସେଇଠି ହିଁ ତ ଝାମେଲା। ଚେକ୍ ମାନେ ମୋ ଆୟରେ ଏ ଟଙ୍କା ଯୋଡ଼ା ହୋଇଯିବ। ତା'ମାନେ ଚାଳିଶ ପର୍ସେଣ୍ଟ ଇନ୍‌କମ୍ ଟ୍ୟାକ୍ସରେ ଚାଲିଯିବ। ଆଉ ରହିବ କ'ଣ ?''

ଆଚ୍ଛା କଥା ! ଇନ୍‌କମ୍ କରିବ କିନ୍ତୁ ଇନ୍‌କମ୍ ଟ୍ୟାକ୍ସ ଦେବନି ?

ଏଥର ପ୍ରଫେସରଙ୍କ ସ୍ତ୍ରୀ କହିଲେ, ''କାଲି ଆଉ ଜଣେ ଘରଭଡ଼ା ପାଇଁ ଆସିଥିଲେ। ସେ ଅଧା ଭଡ଼ା ଚେକ୍‌ରେ ଓ ଅଧା କ୍ୟାସ୍‌ରେ ଦେବେ ବୋଲି

ରାଜି ହୋଇଛନ୍ତି। କିନ୍ତୁ ତୁମେ ଯେତେବେଳେ ୟାଙ୍କ ଷ୍ଟୁଡ଼େଣ୍ଟଙ୍କ ଆତ୍ମୀୟ...''

''ଆଚ୍ଛା, ତୁମ କମ୍ପାନୀ ଏଭଳି କିଛି କରିବ ନାହିଁ?'' ପ୍ରଫେସର୍ ମଝିରୁ ପଚାରିଦେଲେ।

''ନାଇଁ ଆଜ୍ଞା, ନଗଦ କାରବାରର ତ ପ୍ରଶ୍ନ ଉଠୁ ନାହିଁ। ଏତିକି ପାଇଁ କମ୍ପାନୀ ହଇରାଣରେ ପଡ଼ିଯିବ।''

''ନଗଦ ନ ହେଲେ ନ ହେଉ। ଦୁଇଟା ଚେକ୍‌ରେ ଯଦି ଦେଇ ହୁଅନ୍ତା... ଅଧା ଭଡ଼ା ମୋ ନାଁରେ, ଅଧା ସ୍ତ୍ରୀଙ୍କ ନାଁରେ।''

''କିନ୍ତୁ ମାଲିକାନା ସ୍ୱତ୍ୱରେ ତ କେବଳ ଆପଣଙ୍କ ନାଁ ଅଛି। କେମିତି ଭଡ଼ାକୁ ଭାଗ କରିଦେବ କମ୍ପାନୀ ?''

''ତୁମେ ପାରିବନି ?''

''ନାଇଁ ଆଜ୍ଞା। ଏଭଳି କିଛି କରିବାକୁ ମୁଁ କହିବି କେମିତି ? ଏଇଟା ସମ୍ପୂର୍ଣ୍ଣଭାବରେ ଯେ ଅନୀତିମୂଳକ କାମ।''

''ତା'ହେଲେ ଭଡ଼ା ଦେଇପାରିବିନି, ପିନାକୀ। ଆଇ ଆମ୍ ସରି।''

ଏ ପର୍ଯ୍ୟନ୍ତ ରାଗକୁ ନିୟନ୍ତ୍ରଣରେ ରଖିଥିଲା ପିନାକୀ। ଗାଡ଼ିରେ ବସି ଗଳିରୁ ବାହାରିଯିବା କ୍ଷଣି ସବୁ ବାହାରିପଡ଼ିଲା, ''ଦେଖୁଛ ଜ୍ୟୋତି, କେତେ ରକମର ମଣିଷ ଅଛନ୍ତି? ଶଳା ବୁଢ଼ା! ଏତେ ଆଶା ଦେଲା। ପାଞ୍ଚଥର ଦୌଡ଼େଇଲା। ତା'ପରେ ଏୟା! ବୁଢ଼ାର ଇନ୍‌କମ୍ ଟ୍ୟାକ୍ସ ସମସ୍ୟାର ସମାଧାନ କରିବି ମୁଁ? ଏ ପୁଣି ପ୍ରଫେସର୍! ଠଣ୍ ଠଣ୍ ଗୋପାଳ ବେଳକୁ ଧଳାକଳା ରଙ୍ଗ ଦିଶୁ ନାହିଁ, କି ଶିକ୍ଷା ଦେଇଥିବ ତା' ଛାତ୍ରମାନଙ୍କୁ? ଠକ କୋଉଠିକାର। ଚୋର ଶଳା!''

''ଏ ବୁଢ଼ା କାହିଁକି ମୋ ଭାଇ ହେବ ମ।'' ଜ୍ୟୋତି ମୁରୁକି ମୁରୁକି ହସିଲା।

''ତୁମକୁ ହସ ଲାଗୁଛି? ମୁଁ କହି ନ ଥିଲି ଆଜିକାଲି ମଣିଷଙ୍କର ଚରିତ୍ର ନଷ୍ଟ ହୋଇଗଲାଣି। ନ ହେଲେ ସତୁରି ବର୍ଷ ବୟସରେ ଏମିତି ଲୋଭ! କଥାର କୌଣସି ମୂଲ୍ୟ ନାହିଁ।...ଆରେ ତୁମେ ଏମିତି ହସୁଛ କାହିଁକି?''

ଜ୍ୟୋତି ହସ ବନ୍ଦ କରିବାକୁ ବହୁତ ଚେଷ୍ଟା କଲା, କିନ୍ତୁ ସଫଳ ହେଲା ନାହିଁ। ''ସତରେ ଘରଟା ପାଇବାପାଇଁ ବହୁତ ଚେଷ୍ଟା କରିଥିଲି। କଫିର ଇତିହାସଠାରୁ

ସେକ୍ସପିଅରଙ୍କ କବିତା ! ଆଃ ସେକ୍ସପିଅର୍ ! ଟୁ ବି ଅର୍ ନଟ୍ ଟୁ ବି- ଦ୍ୟାଟ୍ ଇଜ୍ ଦି କ୍ୱେଶ୍ଚିନ୍ !'' ଜୋର୍‌ରେ ହସିବାକୁ ଲାଗିଲା ସେ।

ପିନାକୀ ଗାରଡ଼େଇ ଚାହିଁଲା, ''ହେଇଟି, ମତେ ଥଟ୍ଟା କରନି କହୁଛି। ତୁମରି ପାଇଁ ଏତକ ଅଭିନୟ କରିବାକୁ ହେଲା।'' ତା' ସ୍ୱରରେ କିନ୍ତୁ ରାଗ ବା ବିରକ୍ତି ନ ଥିଲା।

''ଅଭିନୟ ତ ବେଶ୍ କଲ। କିନ୍ତୁ ନ୍ୟାସ୍‌ନାଲ୍ ଆୱାର୍ଡ଼ଟା ହାତ ମୁଠାରୁ ଖସିଗଲା।''

ଏଥର ପିନାକୀ ଜ୍ୟୋତି ସାଙ୍ଗରେ ତାଳଦେଇ ହସିଲା। ଥଟ୍ଟାରେ ଥଟ୍ଟାରେ ସିନା ମନ ଖରାପ ହେବା ଭଳି ଘଟଣାଟିକୁ ଆଡ଼େଇଦେଲା ଜ୍ୟୋତି, କିନ୍ତୁ ସତରେ କ'ଣ ପରିସ୍ଥିତିର ଗମ୍ଭୀରତାକୁ ସେ ଅସ୍ୱୀକାର କରିପାରିଲା ? ଆଉ ଯେ ଅଳ୍ପ କେତେଦିନ ବାକି। ଆସନ୍ତା ପହିଲାରେ ଯେମିତି ହେଲେ ଘର ଛାଡ଼ିବାକୁ ହେବ।

''ଏଃ ଶୋଇପଡ଼ିଲଣି କି ?'' ଜ୍ୟୋତି ପିନାକୀକୁ ହଲେଇଦେଇ ପଚାରିଲା।

''ନା, ନିଦ ହେଉନି।''

''ଗୋଟିଏ କଥା କହିବି ?''

''କ'ଣ ?''

''ଇନ୍ଦିରାନଗରରେ ତ ଘର ସହଜରେ ମିଳୁନି। ତୁମେ ବରଂ ଜୟରାମକୁ କୁହ। କାଲି ଯାଇ ସେଇ 'କୋରମଙ୍ଗଲା'ର ଘରଟିକୁ ଦେଖି ଆସିବା। ମୋଟାମୋଟି ଭଲ ହୋଇଥିଲେ ସେଠିକି ଉଠିଯିବା। ହେଲା ଏବେ, ପିଲାମାନେ ସ୍କୁଲ୍ ବସ୍‌ରେ ଯିବାଆସିବା କରିବେ।'' ଜ୍ୟୋତି କଣ୍ଠରେ ସାଲିସ୍ କରିନେବାର ସ୍ୱର।

ପୁଣି ଜୟରାମ ! ପୁଣି ସେଇ ତେଲିଆ କଥା ! କିନ୍ତୁ ସହିବାକୁ ହେବ, ଉପାୟ ନାହିଁ।

ଆରମ୍ଭ ହେଲା ଆଉ ଥରେ ଘରଦେଖା ପର୍ବ। ନୂଆ ଅଞ୍ଚଳ, ନୂଆ ନୂଆ ମୁହଁ, କିନ୍ତୁ ସେଇ ଏକା ସୁରରେ କଥା।

କିଛି କେଉଁଠି ହୋଇପାରୁ ନ ଥିଲା।

''ସାର୍, ମୋର ଜଣେ ସାଙ୍ଗ ଏଆର୍‌ଲାଇନ୍ସରେ କାମ କରେ। ତା'

ବାପାଙ୍କର ଘରଟିଏ ଅଛି। ବଡ଼ ଖୋଲା ମେଲା ଘର। ସାମ୍ନାରେ ବଗିଚା, ବଡ଼ ଛାତ। ଠିକ୍ ମ୍ୟାଡ଼ମ୍ ଯେମିତି ଚାହିଁଛନ୍ତି। ଘରଟା ଷାଠିଏରେ ଅଶୀ ପ୍ଲଟ୍ ଉପରେ। ନଡ଼ିଆ ଗଛ, ଆମ୍ବଗଛ ସବୁ ରହିଛି। କେବଳ ଘରଟା ଟିକିଏ ଦୂରରେ। 'ବନଶଙ୍କରୀ' ଅଞ୍ଚଳରେ।''

ପିନାକୀ ଜ୍ୟୋତି ମୁହଁକୁ ଚାହିଁଲା। ଛୋଟକାଟିଆ ବିସ୍ଫୋରଣଟିଏର ଆଶା କରୁଥିଲା ସେ।

''ଚାଲନ୍ତୁ ଦେଖି ଆସିବା। ଘରୁ ବାହାରିଛନ୍ତି ଯେତେବେଳେ ଦେଖିନେଲେ କ୍ଷତି କ'ଣ ?'' ଜ୍ୟୋତି ଥଣ୍ଡା ଗଳାରେ କହିଲା।

ଇନ୍ଦିରାନଗରରୁ ଏମ୍.ଜି. ରୋଡ୍। ସେଇଠୁ ଜେ.ସି. ରୋଡ୍ ଦେଇଁ ବସ୍‌ଭନ୍‌ଗୁଡ଼ି। ବସ୍‌ଭନ୍‌ଗୁଡ଼ିରୁ ଜୟନଗର। ତା'ପରେ ଯାଇ ବନଶଙ୍କରୀ। ଘରଟି ପୁଣି ବନଶଙ୍କରୀର ପ୍ରଥମ ଷ୍ଟେଜ୍‌ରେ ନୁହଁ, ଦ୍ୱିତୀୟ ଷ୍ଟେଜ୍‌ର ଶେଷ ଆଡ଼କୁ।

ବଡ଼ ଘର ତ ନିଶ୍ଚୟ। କିନ୍ତୁ ପୁରୁଣା। ଭଦ୍ରଲୋକ ଘରଟିର ଭଲ ଯତ୍ନ ନେଇଛନ୍ତି। ଘରର ବୟସକୁ ନୂଆ ରଙ୍ଗ ତଳେ ଲୁଚେଇ ରଖିବାର ଚେଷ୍ଟା କରିଛନ୍ତି। ହେଲେ ମଳି ବସି ଆସିଥିବା କମକୁଟ କରା କାଠକାମ, ପୁରୁଣାକାଳିଆ କବାଟଝରକା ଘରର ବୟସକୁ ଘୋଡ଼େଇ ରଖିପାରୁ ନାହିଁ। ଯେତେ ପରସ୍ତ ମେକ୍‌ଅପ୍ ଲଗାଇଲେ ବି ବୟସ୍କ ମୁହଁଟିଏର ବଳିରେଖାକୁ କ'ଣ ଲୁଚେଇ ଦେଇ ହୁଏ ?

ପିନାକୀ ଘର ଦେଖି କିଛି କହିଲା ନାହିଁ। ଏତେଟା ରାସ୍ତା ଗାଡ଼ି ଚଲାଇବା ପରେ ଯେମିତି କୌଣସି ମନ୍ତବ୍ୟ ଦେବାର ଆବଶ୍ୟକତା ନ ଥିଲା। ତଥାପି ସ୍ତ୍ରୀ ସାଙ୍ଗରେ ଘର ଭିତର ବୁଲି ଦେଖିଲା ସେ।

''ବେଶ୍ ଭଲ ତ। ଆପଣ ଏଇ ଘରଟି କଥା ବୁଝନ୍ତୁ,'' ପୂର୍ବର ଥଣ୍ଡା ସ୍ୱରରେ ଜ୍ୟୋତି କହିଲା।

ଅବାକ୍ ହେଲା ପିନାକୀ, ''ପାଗଳ ହେଲ, ଏତେ ଦୂରରେ ରହିବ ?''

ପିନାକୀ ଆଖିରେ ଆଖି ରଖି ଜ୍ୟୋତି ଶାଣିତ ସ୍ୱରରେ କହିଲା, ''ଅନ୍ୟ କିଛି ଉପାୟ ଅଛି ? ବେଗର୍‌ସ କ୍ୟାନ୍‌ନଟ୍ ବି ଚୁଜର୍‌ସ୍।''

''ସାର୍, ମୁଁ ତା'ହେଲେ ଲକ୍ଷ୍ମୀକାନ୍ତକୁ କହୁଛି ଆପଣଙ୍କୁ ଆସି ଅଫିସ୍‌ରେ ଦେଖା କରିବ। ତା' ସାଙ୍ଗରେ ସବୁ କଥା ସେଇଠି ଆଲୋଚନା ହେଉ।''

ତେଲ ଲଗାଇ ଚିକ୍କଣ କରି ବାଳ କୁଣ୍ଡାହୋଇଛି। ମଝି ସୂଛା, ତା' ସାଙ୍ଗରେ ଚଉଡ଼ା ମୋଟା ନିଶ। କପାଳରେ ବିଭୂତି। ଯେ ହେଉଛନ୍ତି ଲକ୍ଷ୍ମୀକାନ୍ତ। ଘରମାଲିକଙ୍କ ପୁଅ। ଠିକ୍ ସାଢ଼େ ଦଶଟା ବେଳକୁ ତାକୁ ଧରି ଜୟରାମ ପିନାକୀର ଅଫିସ୍ ରୁମ୍‌ରେ ପହଞ୍ଚିଲା।

''ସାର୍, ଆପଣଙ୍କ ଭଳି ସିନିଅର୍ ଲୋକ ଘରଟି ନେଲେ ମୋର ସବୁ ଚିନ୍ତା ଯିବ। ସାତମାସ ଧରି ଘରଟି ଖାଲି ପଡ଼ିଛି। ବାପା କହିଯାଇଛନ୍ତି ଯେ ଘରଟି ପଛକେ ଖାଲି ପଡ଼ିବ, କିନ୍ତୁ ଆଜେବାଜେ ଲୋକ ବା ଅଜଣାଅଶୁଣା କମ୍ପାନୀକୁ ଯେମିତି ଦିଆ ନ ହୁଏ।''

ଯେ ତ ଆଉ ଗୋଟିଏ ତେଲିଆ। ଜୟରାମର ବନ୍ଧୁ ହେବାର ଠିକ୍ ଯୋଗ୍ୟ।

''ଆମ ବଜେଟ୍ କଥା ଜାଣନ୍ତି ତ?'' ପେପରୱେଟ୍‌ଟା ଘୂରାଉ ଘୂରାଉ ପିନାକୀ ପଚାରିଲା।

''ସାର୍, ଚିନ୍ତା କରିବେନି ସାର୍। ଜୟରାମ ମତେ ସବୁ କହିଛି। ଆପଣ ଘରଟି ନିଅନ୍ତୁ। ଯେତେ ବର୍ଷ ଇଚ୍ଛା ଆଜ୍ଞା ରହନ୍ତୁ। ମୁଁ ତ କ୍ୱାଟର୍‌ରେ ରହେ। ଏ ଘରେ ରହିବାର ପ୍ରଶ୍ନ ନାହିଁ। ଅନ୍ୟ ଭାଇଭଉଣୀମାନେ ବାଙ୍ଗାଲୋର ବାହାରେ ଘର କରି ରହିଯାଇଛନ୍ତି। ମା', ବାପା ମଧ ଗାଁକୁ ଚାଲିଗଲେ ସବୁଦିନ ପାଇଁ।''

''ଏଗ୍ରିମେଣ୍ଟ କିଏ ସାଇନ୍ କରିବ? ଆପଣ ନା ଆପଣଙ୍କର ବାପା?''

''ନାଇଁ ସାର୍, ମୋର ପାୱାର ଅଫ୍ ଆଟର୍ଣ୍ଣି ଅଛି। ମୁଁ ସାଇନ୍ କରିବି। ହେଲେ ଭଡ଼ାଟା ବାପାଙ୍କ ନାଁରେ ଯିବ।''

''ଠିକ୍ ଅଛି। ଆପଣ ଏଗ୍ରିମେଣ୍ଟ କାଗଜଟା ଭଲକରି ପଢ଼ିନିଅନ୍ତୁ। ତା'ପରେ ସାଇନ୍ କରିବା। ଜୟରାମ, ଏଗ୍ରିମେଣ୍ଟର ଗୋଟିଏ କପି...''

କାନ କୁଣ୍ଡାଇ ହେଲା ଲକ୍ଷ୍ମୀକାନ୍ତ, ''ସାର୍ ଗୋଟିଏ କଥା ଥିଲା... ମାସକର ଭଡ଼ା ବ୍ରୋକରେଜ୍ ଖର୍ଚ୍ଚ ହିସାବରେ ମିଳେ। ସେଇଟା ଯଦି...''

ସାମାନ୍ୟ ଆଶ୍ଚର୍ଯ୍ୟ ହେଲା ପିନାକୀ। ''ବ୍ରୋକରେଜ୍? କିନ୍ତୁ ବ୍ରୋକର୍ ତ ନାହିଁ କେହି।''

''ନାଇଁ ମୁଁ କ'ଣ କହୁଥିଲି କି, ଭଡ଼ାଟା ତ ଯିବ ମୋ ବାପାଙ୍କ ପାଖକୁ। ମୁଁ ଯେହେତୁ ଘର କଥା ବୁଝାବୁଝି କରୁଛି, ତେଣୁ ବ୍ରୋକରେଜ୍ ଚାର୍ଜଟା ଯଦି

ମତେ ଦେଇଦିଅନ୍ତେ। ...ଜୟରାମ ମତେ ସବୁ କହିଛି। ଚାର୍ଜଟା ତ ଆପଣଙ୍କୁ ଦେବାକୁ ହେବନି। ଅଫିସ୍ ଦେବ। ଆପଣଙ୍କୁ କେବଳ ସେଇ କଥା ଲେଖିକରି ଦେବାକୁ ହେବ।''

ବିରକ୍ତି ନୁହଁ ନିଛକ ବିସ୍ମୟରେ ପିନାକୀର ଭ୍ରୁ ଦୁଇଟି କୁଞ୍ଚେଇଗଲା।

ଏମିତି ପୁଅ ପୁଣି ସଂସାରରେ ଅଛନ୍ତି? ବାପାର ଘରଟି ଭଡ଼ା ଲଗେଇବାକୁ ଯାଇ ଯିଏ କିଛି ଟଙ୍କା ହାତେଇବାର ଚେଷ୍ଟା କରେ? ଲୋକଟାର ଆସ୍ପର୍ଦ୍ଧା ତ କମ୍ ନୁହଁ। ଜୟରାମଠାରୁ ଭିତିରିଆ ଖବର ଯୋଗାଡ଼ କରି କେମିତି ସିଧାସଳଖ କହିଦଉଛି ଯେ ପିନାକୀ ମିଛ କଥା ଲେଖି ଦସ୍ତଖତ କରିଦେଉ। ଏଭଳି ଗୋଟିଏ ଲୋକ ସହିତ ମାସ ପରେ ମାସ ସମ୍ପର୍କ ରଖିପାରିବ ପିନାକୀ? ଭଡ଼ାଟିଆ, ଘର ମାଲିକର ସମ୍ପର୍କ ହେଉ ପଛକେ।

''ପ୍ଲିଜ୍ ଲିଭ୍ ମାଇଁ ଅଫିସ୍।'' ଶାନ୍ତ ସ୍ୱରରେ ସେ କହିଲା।

''ସାର୍, ବେଶୀ ହୋଇଗଲା କି? ...ଯଦି ମାସକର ବ୍ରୋକରେଜ୍ ନ ଦେବେ ତେବେ ପନ୍ଦର ଦିନର ଦେଲେ ମଧ୍ୟ...''

''ଆଇ ସେ ଗେଟ୍ ଆଉଟ୍।'' ଚାପା କ୍ରୋଧ ଛିଟିକିପଡ଼ିଲା ପିନାକୀ ମୁହଁରୁ। ଦପ୍ ଦପ୍ କରି ଜଳି ଉଠିଲା ତା'ର ଆଖି ଦିଓଟି। ସେ ନିଆଁର ଧାସ ସହିବା ସହଜ ନୁହେଁ। ଅଧିକା ପଦଟିଏ କଥା ନ କହି ଚୁପ୍‌ଚାପ୍ ଉଠି ବାହାରିଗଲା ଲକ୍ଷ୍ମୀକାନ୍ତ ଏବଂ ପଛେ ପଛେ ପ୍ରାୟ ମୁହଁ ଲୁଚାଇ ଜୟରାମ।

ସନ୍ଧ୍ୟାବେଳେ ଜ୍ୟୋତି ସବୁ ଶୁଣିଲା। ''ବ୍ରୋକରେଜ୍‌ଟା ଦେଇ ଦେଇଥିଲେ ତୁମର କି କ୍ଷତି ହୋଇଥାଆନ୍ତା ଶୁଣେ? ପକେଟ୍‌ରୁ ତ ଯାଇ ନ ଥାଆନ୍ତା।''

''ଏକଥା ତୁମେ କହୁଛ, ଜ୍ୟୋତି? ମୋ ପକେଟ୍‌ରୁ ଯାଉ କି ଅଫିସ୍ ଆକାଉଣ୍ଟରୁ- ଏଇଟା ଗୋଟିଏ ବେଇମାନୀ କାମ ନୁହଁ?''

''ତୁମେ ବସିଥା ନୀତିବାଦୀ ହରିଶ୍ଚନ୍ଦ୍ର ହୋଇ।''

''ତା' ବୋଲି ଚୋରିକୁ ପ୍ରଶ୍ରୟ ଦେବି?''

''କି ଚୋରି?'' ତାତିଉଠିଲା ଜ୍ୟୋତି, ''ସତରେ ଯଦି ବ୍ରୋକରଟିଏ ଘର ଦେଖାଇଥାଆନ୍ତା ତେବେ ତାକୁ ତ ସେଇ ଟଙ୍କା ଦେବାକୁ ପଡ଼ିଥାଆନ୍ତା। ପୁଅ ଯଦି ବାପର ବ୍ରୋକର୍ ହେଲା କ'ଣଟା ହୋଇଗଲା ସେଇଠୁ?''

''ନା- ମାଧ୍ୟାଚ କିଛି ହେବ ନାହିଁ। ମତେ ବି ଅଫିସ୍‌ରେ କେହି କୌଣସି

ପ୍ରଶ୍ନ କରିବେ ନାହିଁ। କିନ୍ତୁ ଯେଉଁ କାମ କରିବାକୁ ମୋ ବିବେକ ବାଧା ଦେଉଛି, ସେ କାମ ମୁଁ ଆଦୌ କରିବି ନାହିଁ।''

''ନ କର। ନ କର।'' ଜ୍ୟୋତି ସେଇମିତି ଉତ୍ତପ୍ତ ସ୍ୱରରେ କହିଚାଲିଲା, ''ହେଲେ ଆମମାନଙ୍କୁ ଯେମିତି ନେଇ ରାସ୍ତାରେ ବସେଇ ନ ଦିଅ।''

''କେବେ ବସେଇଛି ରାସ୍ତାରେ ? ଏଇଟା ମୋ ଦାୟିତ୍ୱ, ମୁଁ ସମ୍ଭାଳିବି। ତୁମେ ଅଯଥା ମୁଣ୍ଡ ଖେଳାଅନି। ଯଦି ସମୟ ଅନୁସାରେ ଘର ନ ମିଳେ, ହୋଟେଲ୍‌କୁ ଉଠିଯିବା। ଅଫିସ୍ ବୁଝିବ ସେ କଥା।''

''ଅଫିସ୍!'' ଚିଗୁଲାଇଲା ଜ୍ୟୋତି, ''ତୁମ ଅଫିସ୍ କଥା ଆଉ କୁହନି ମତେ। ଜଣେ ସିନିଅର୍ ଲୋକର ରହିବାପାଇଁ ଘର ବ୍ୟବସ୍ଥା କରିପାରୁନି, ସେ ପୁଣି ହୋଟେଲ୍ ବିଲ୍ ଦେବ! ଯେତେବେଳେ ଆଗର ଚାକିରି ଛାଡ଼ି ଏ କମ୍ପାନୀରେ ପଶିଥିଲ, ସେତେବେଳେ କେତେ ମୁଁ କହିଥିଲି। ସେ ଚାକିରିରେ ସୁବିଧା ବେଶୀ। ଛାଡ଼ ନାହିଁ। ତୁମେ ଶୁଣିଥିଲ ? କ'ଣ ନା ଦରମା ଭଲ, ଜବ୍ ସ୍ୟାଟିସ୍‌ଫ୍ୟାକ୍ସନ୍ ରହିବ। କାହା ସାମ୍ନାରେ ଆଣ୍ଠୁମାଡ଼ି ମୁଣ୍ଡ ନୁଆଁଇ ଠିଆ ହେବାକୁ ପଡ଼ିବ ନାହିଁ। ଏବେ ସମ୍ଭାଳ। ମୁଁ କିଛି କରିପାରିବିନି।''

''ତୁମକୁ କିଏ କିଛି କରିବାକୁ କହୁଛି ?''

ଜ୍ୟୋତି ଓ ପିନାକୀ ପରସ୍ପରକୁ ଗାରଡ଼େଇ ଚାହିଁଲେ। ଘର ଭିତରେ ଦୁଃସହ ନୀରବତା। ଫୁଲଟିଏ ପଡ଼ିଗଲେ ଶବ୍ଦ ହେବ। କୁଆଡ଼େ ଯାଇଛନ୍ତି ରିଙ୍କୁ, ଟିଙ୍କୁ ? ମା'ବାପାଙ୍କ ଭିତରେ କେବେ ପ୍ରାୟ ଦେଖିଶୁଣି ନ ଥିବା ଝଗଡ଼ାର ଆରମ୍ଭରେ ଡ଼ରିଯାଇ ନିଜ କୋରଡ଼ ଭିତରେ ପଶିସାରିଲେଣି ବୋଧହୁଏ।

ହଠାତ୍ ସମସ୍ତଙ୍କୁ ଚମକେଇଦେଇ ବାଜିଉଠିଲା କଲିଂବେଲ୍। ଏତେ ରାତିରେ କିଏ ?

''ହେଇଟି, ଦୁମ୍‌ଦାମ୍ ହୋଇ କବାଟ ଖୋଲି ପକେଇବ ନାହିଁ। ତୁମର ଯେଉଁସବୁ ଗୁଣ ନା... ଆଗ ଝର୍କାବାଟେ ଦେଖ।'' ରାଗ ଓ ଆଶଙ୍କା ଗୋଳେଇ ହୋଇ ଜ୍ୟୋତିର ସ୍ୱର କେମିତି ଅନ୍ୟ ରକମ ଶୁଣାଯାଉଥିଲା।

ସ୍ତ୍ରୀ କଥାର ପଦେ ଉତ୍ତର ନ ଦେଇ ଝର୍କାବାଟେ ନ ଦେଖି ଧଡ଼୍ କରି କବାଟ ଖୋଲିପକେଇଲା ପିନାକୀ।

''ନମସ୍କାର, ଶୋଇପଡ଼ିଥିଲେ କି ?''

ନା- ଚୋର ଖଣ୍ଡ ନୁହଁ। ଘରମାଲିକ ମିଷ୍ଟର କାମାଥ୍। ହେଲେ ଏତେ ରାତିରେ ?

''ସନ୍ଧ୍ୟାବେଳେ ଆସିବାକୁ ବାହାରିଥିଲି। କିନ୍ତୁ ଘରକୁ କେତେଜଣ ଅତିଥି ଆସିଗଲେ। ଡେ଼ରି ହୋଇଗଲା। ସରି।''

''ଘର ଠିକ୍ ସମୟରେ ଛାଡ଼ିଦେବୁ। ଆପଣ ବ୍ୟସ୍ତ ହେବେ ନାହିଁ।'' ପିନାକୀ ନିଜ ସ୍ୱରରେ ଦୃଢ଼ତା ଆଣିଲା, ''ଆପଣ କହୁଥିଲେ ପାଞ୍ଚ ତାରିଖ ଦିନ ଘର ରଙ୍ଗ ଆରମ୍ଭ କରିବେ ବୋଲି। ଦୁଇ ତାରିଖ ସୁଦ୍ଧା ଘର ଖାଲି କରିଦେବି।''

''ନାଇଁ ନାଇଁ। ସେଇକଥା ଇ ତ କହିବାକୁ ଆସିଛି।''

ତା'ମାନେ ଆଉରି ଶୀଘ୍ର ଛାଡ଼ିବାକୁ ହେବ ? କେତେଟା ଦିନ ବାକି ରହିଲା ? ପିନାକୀ କ'ଣ ଏକତିରିଶ ତାରିଖ ଭିତରେ ଘରଟିଏ ଯୋଗାଡ଼ କରିପାରିବ ?

ଚୁପ୍‌ଚାପ୍ ଆସି ସ୍ୱାମୀ ପଛପଟେ ଠିଆ ହେଲା ଜ୍ୟୋତି।

ଦୁଇଜଣଙ୍କ ମୁହଁ ଉପରେ ଆଖି ବୁଲେଇନେଇ ଗଳା ଝାଡ଼ିଲେ ମିଷ୍ଟର କାମାଥ୍। କେମିତି ଗୋଟିଏ ଇଚ୍ଛାଜଡ଼ିତ ସ୍ୱରରେ କହିଲେ, ''ସନ୍ଧ୍ୟାବେଳେ ମୁଁ ଫୋନ୍ କରିଥିଲେ, ତାଙ୍କର ବଦଳି ଅର୍ଡ଼ର କ୍ୟାନ୍‌ସଲ୍ ହୋଇଯାଇଛି। ତିନି ବର୍ଷପାଇଁ ସିମୋଗା ଯିବାକୁ ହେବ। ପ୍ରମୋସନ୍ କଥା ତ...। ମୁଁ ଜାଣିଛି ଆପଣମାନେ ଅନ୍ୟ କେଉଁଠି ଘର ଠିକ୍ କରିସାରିବେଣି। ହେଲେ ଯଦି ଦୟା କରି ଘର ନ ଛାଡ଼ନ୍ତେ... ଏ ବୟସରେ କେଉଁଠି ଖୋଜିବି ଆପଣଙ୍କ ଭଳି ଭଡ଼ାଟିଆ।''

ପିନାକୀର କାନ୍ଧ ଉପରେ ଉହୁଙ୍କି ଆସି ଜ୍ୟୋତି ନିର୍ବାକ୍ ଭାବରେ ମିଷ୍ଟର କାମାଥ୍‌ଙ୍କୁ ଦେଖୁଥିଲା। □□



# ସୁସ୍ମିତା ବାଗ୍‌ଚୀ

ଜନ୍ମ : ୨୫ ସେପ୍ଟେମ୍ବର, ୧୯୬୦

ଶିକ୍ଷାଗତ ଯୋଗ୍ୟତା : ଦିଲ୍ଲୀ ବିଶ୍ୱବିଦ୍ୟାଳୟରୁ ସ୍ନାତକୋତ୍ତର ଉପାଧିପ୍ରାପ୍ତ ।

ଅଭିଜ୍ଞତା : ଦିଲ୍ଲୀ ବିଶ୍ୱବିଦ୍ୟାଳୟ ଅଧୀନରେ ଅଧ୍ୟାପିକା ଭାବେ କର୍ମଜୀବନ ଆରମ୍ଭ । ଅଧୁନା ଭୁବନେଶ୍ୱରରୁ ପ୍ରକାଶିତ ମାସିକ ପାରିବାରିକ ପତ୍ରିକା 'ସୁଚରିତା'ର ସହଯୋଗୀ ସଂପାଦିକା ।

ପ୍ରକାଶନ : ଗଳ୍ପ ସଂକଳନ 'ଆକାଶ ଯେଉଁଠି କଥା କହେ' (୧୯୯୦), ଗଳ୍ପ ସଂକଳନ 'ଛାଇ ସେପାଖ ମଣିଷ' (୧୯୯୧), ଭ୍ରମଣ କାହାଣୀ 'ମୋ ଝର୍କାରୁ ପୃଥିବୀ' (୧୯୯୫) ଏବଂ ଗଳ୍ପ ସଂକଳନ 'ନୈବେଦ୍ୟ' (୧୯୯୬) । ପୁସ୍ତକପାଠ ଓ ଲେଖାଲେଖି ପ୍ରତି ବାଲ୍ୟାବସ୍ଥାରୁ ଗଭୀର ଅନୁରକ୍ତି । ଓଡ଼ିଶାର ବିଭିନ୍ନ ପତ୍ରପତ୍ରିକାରେ ତାଙ୍କର ବହୁ ଗଳ୍ପ ପ୍ରକାଶିତ ଓ ଉଚ୍ଚ ପ୍ରଶଂସିତ ।

ପୁରସ୍କାର : ୧୯୯୪ରେ ତାଙ୍କର ଗଳ୍ପ ସଂକଳନ 'ଆକାଶ ଯେଉଁଠି କଥା କହେ' ପାଇଁ ଓଡ଼ିଶା ରାଜ୍ୟ ସାହିତ୍ୟ ଏକାଡ଼େମୀ ପୁରସ୍କାର ପ୍ରାପ୍ତ ।